# ସାରଳା ରତ୍ନ ଭଣ୍ଡାର
# ରସ ସାଗର

୪

(ଓଡିଆ ପ୍ରବାଦ ଓ ଢଗ ଢମାଳି)



ବିନୋଦ ବିହାରୀ ଦାସ

# ମତାମତ

***ଶ୍ରୀ ଦୁର୍ଗା ପ୍ରସାଦ କର,*** ଆଇ.ଆର.ଏସ୍.

ଆୟକର କମିସନର, ଟିକସ ଆଇନ ଗ୍ରନ୍ଥକାର, ସମ୍ବଲପୁର

'ସାରଳା ରତ୍ନଭଣ୍ଡାର ରସସାଗର' ପଢ଼ି ଯେତିକି ଆନନ୍ଦିତ ହେଲି, ଆମର ଭାରତୀୟ ସଂସ୍କୃତିର ପରମ୍ପରା ଏବଂ ଜ୍ଞାନ ଭଣ୍ଡାରର ଉତ୍କର୍ଷତା ହୃଦୟଙ୍ଗମ କରି ସେତିକି ଗର୍ବୀତ ହେଲି ।

ମା'ସାରଳା ସଙ୍କଳୟିତାଙ୍କର ଏହି ଉଦ୍ୟମରେ ସହାୟ ହୁଅନ୍ତୁ । ସଙ୍କଳକାରୀଙ୍କ ଜିଜ୍ଞାସା ଓ ଜ୍ଞାନ ପିପାସା ବଳବତ୍ତର ରହୁ ।

***ଶ୍ରୀ ଚନ୍ଦ୍ରଶେଖର ଦାଶ,*** ଆଇ.ଆର.ଏସ୍.

ଆୟକର କମିସନର, ରାଉରକେଲା

'ସାରଳା ରତ୍ନଭଣ୍ଡାର ରସସାଗର' ଏକ ଏକ୍ସପ୍ରେସ ଟ୍ରେନ ଭଳି ଅତୀତକୁ ଦୌଡ଼ାଇ ନେଉଛି ଓ କ୍ଷିପ୍ର ଗତିରେ କିଛି ସ୍ମୃତିବିସ୍ମୃତି ଚଳଚିତ୍ର ଭଳି ପ୍ରତୀୟମାନ ହେଉଛି ।

ଶୃତି (ବେଦ) ଯେପରି ପରବର୍ତ୍ତୀ କାଳରେ ଲିପିବଦ୍ଧ ହୋଇ ଆଧ୍ୟାତ୍ମବାଦର ଉତ୍କର୍ଷ ସାଧନରେ ସହାୟକ ହୋଇଛି । ସଙ୍କଳୟିତାଙ୍କର ସେହିପରି ଭାବରେ ଲୋକୋକ୍ତି କଲମ ବଦ୍ଧ ହୋଇ ଯୁଗଜ୍ଞାନ ଓ ସମାଜ ଜ୍ଞାନର ପ୍ରଚାର ପାଇଁ ଏକ ସଫଳ ଉଦ୍ୟମ ଓ ଓଡ଼ିଆ ସାହିତ୍ୟକୁ ଏକ ଅମୂଲ୍ୟ ଅବଦାନ ।

***= ଦୈନିକ ସମାଜ =***

ଲେଖକ ହଜାର ହଜାର ବର୍ଷ ପୂର୍ବର ଅଭିଜ୍ଞ ବିଦ୍ୱାନମାନଙ୍କ ଦ୍ୱାରା ପ୍ରଚଳିତ ହୋଇଥିବା ନୀତି ଏବଂ ଭଣିତା ତଥା ପ୍ରଣୀତ ହୋଇଥିବା ବଚନ ଗୁଡ଼ିକର ଉପକାରିତାକୁ ଉପଲବ୍ଧି କରି ସମ୍ପ୍ରତିକ ସମାଜରେ ଜନମାନସର କଲ୍ୟାଣ ନିମନ୍ତେ ପୁସ୍ତକଟିର ପରିପ୍ରକାଶ କରିଛନ୍ତି ।

***- ଦୈନିକ ପ୍ରଜାତନ୍ତ୍ର-***

ଢ଼ଗଢ଼ମାଳି, ପ୍ରବାଦ, ବଚନ, ପ୍ରଭୃତି ଅମୂଲ୍ୟ ରତ୍ନ ଯାହା ଲୋକମାନଙ୍କ ଅଗୋଚରରେ ଲୁପ୍ତ ହେବାକୁ ଯାଉଛି, ତାକୁ ପୁଣି ଲୋକଙ୍କ ପାଖରେ ପହଞ୍ଚାଇବାର ସାଧୁ ଉଦ୍ୟମ କରିଛନ୍ତି ସଙ୍କଳୟିତା ।

ରୁଚିବନ୍ତ ଭାଷାର ପ୍ରୟୋଗ, ଭାବଗର୍ଭକ ବିଶ୍ଳେଷଣାତ୍ମକ ସମୀକ୍ଷଣ ଓ ତାତ୍ପର୍ଯ୍ୟ ନିର୍ଦ୍ଧାରଣ କରି ଲୋକକଥା ଗୁଡ଼ିକର ବ୍ୟୁତ୍ପତ୍ତି କରାଯାଇ ଥିବାରୁ ପାଠକୀୟ ଚିତ୍ତ ବୃତ୍ତିକୁ ଧରିରଖି ପାରୁଛି ।

# ସାରଳା ରତ୍ନଭଣ୍ଡାର
# ରସସାଗର
## (ପଞ୍ଚମ ଖଣ୍ଡ)

ଟେକାଟେକି ନାଇଁ
ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି
ସାଧାରଣ ସମ୍ପାଦକ
କଳା ବିକାଶ କେନ୍ଦ୍ର, କଟକ

ସଙ୍କଳୟିତା
ବିନୋଦବିହାରୀ ଦାସ

# ସାରଳା ରତ୍ନଭଣ୍ଡାର ରସସାଗର (୫ମ ଖଣ୍ଡ)
# सारला रत्नभण्डार रससागर (५म खण्ड)
## SARALA RATNABHANDAR RASASAGAR (5th. Volume)

ଉପଦେଷ୍ଟା, ପୃଷ୍ଠପୋଷକ, ସ୍ମାରକ ଓ ନିର୍ଦ୍ଦେଶକ

## ମା' ସାରଳା


| | |
|---|---|
| ସଙ୍କଳୟିତା | ଶ୍ରୀ ବିନୋଦବିହାରୀ ଦାସ |
| ପ୍ରକାଶକ,ସର୍ବ. ସତ୍ତ୍ୱାଧିକାରୀ | ବିପିନବିହାରୀ ଏଜୁକେସନାଲ ଆଣ୍ଡ ପବ୍ଲିକ ଚେରିଟେବୁଲ ଟ୍ରଷ୍ଟ, ବାଗଲପୁର ପୋଷ୍ଟ-ଅଠାନ୍ତର - ୭୫୨୧୦୨ |
| ଡି.ଟି.ପି. | ଦତ୍ତ କମ୍ପ୍ୟୁଟର୍ସ ପ୍ରୁଫରୋଡ଼, ବାଲେଶ୍ୱର-୭୫୬୦୦୧ |
| ମୁଦ୍ରାକର | ରାମକୃଷ୍ଣ ପ୍ରିଣ୍ଟର୍ସ ୬/ବି. ରମାନାଥ ମଜୁମଦାର ଷ୍ଟ୍ରିଟ୍ କଲିକତା - ୯ |
| ପ୍ରଚ୍ଛଦ ଶିଳ୍ପୀ | ଅଧ୍ୟାପକ ଶିବ ପାଣିଗ୍ରାହୀ ବିଡ଼ାନାସି, କଟକ |
| ପ୍ରଥମ ପ୍ରକାଶନ | ୧୪.୦୧.୨୦୦୩ : ମକର ସଙ୍କ୍ରାନ୍ତି |

**ମୁଖ୍ୟ ବିତରକ**

ପଦ୍ମାଳୟ
୩୧/ଏ, ଜନପଥ,ୟୁନିଟ-୩
ଭୁବନେଶ୍ୱ (ଫୋନ - ୨୫୩୧୦୧୫)

(The Law)
ନିମଚଉଡ଼ି, କଟକ-୨
ଫୋନ : ୨୬୨୦୭୬୮

ମୂଲ୍ୟ - ଟ. ୧୨୦/- (ଶହେ କୋଡ଼ିଏ ଟଙ୍କା)



## ଉତ୍ସର୍ଗ

୧୯୫୪ ମସିହାରେ ମୋ ଭଳି ପିତୃହୀନ, ଅର୍ଥହୀନ, ସମ୍ବଳହୀନ, ଅରକ୍ଷୀତ, ଅନାଥ, ୨୩ ବର୍ଷର ଅଭାଗା ବାଳକ ଯେତେବେଳେ ଦ୍ୱୀତିୟ ଭାଗ (ଫାଇନାଲ୍) ଆଇନ ପରୀକ୍ଷାର ଫିସ ଯୋଗାଡ଼ରେ କଟକ ସହର ଏ ମୁଣ୍ଡର ସେ ମୁଣ୍ଡ ପର୍ଯ୍ୟନ୍ତ ଦରାଣ୍ଡି ଦରାଣ୍ଡି ହଂସା ଉଡ଼ିଯାଉଥିଲା, ସେତିକିବେଳେ ସ୍ୱର୍ଗତ ବିରେନ୍ଦ୍ର ମୋହନ ପଟ୍ଟନାୟକ ବରିଷ୍ଟାରଙ୍କର ସୁପାରିସ କ୍ରମେ ଯେଉଁ ଦିପ୍ତିମାନ ବିରାଟ ବ୍ୟକ୍ତିତ୍ୱର ମଣିଷ ମୋତେ କେବଳ ଆର୍ଥିକ ଦାନ କଲେ ତାହା ନୁହେଁ ବଜ୍ର ଗମ୍ଭିର ସ୍ୱରରେ କହିଥିଲେ - ''ଚାକିରୀ କରିବୁନି, ଗୋଲାମ ହବୁନି, ଓଡ଼ିଆ ହୋଇ ରହିବୁ । ଯା, ପରୀକ୍ଷାଦେଇ ପାସ କର ଈଶ୍ୱର ମଙ୍ଗଳ କରିବେ । ତାଙ୍କର ଦାନ ବଳରେ ମୁଁ ସେଇବର୍ଷ ଆଇନ ପରୀକ୍ଷାରେ ଉତ୍ତିର୍ଣ୍ଣ ହେଲି । ସଂସାର କ୍ଷେତ୍ରରେ ପ୍ରବେଶ କରି ଅସମ୍ଭବ ଅଭାବ ଅନଟନ ମଧ୍ୟରେ ଗତି କଲାବେଳେ ତାଙ୍କରି ବାଣୀରେ ଅନୁପ୍ରାଣିତ ହୋଇ ନାନା ବାଧା ବିଘ୍ନ, ଘାତ ପ୍ରତିଘାତ , ଆଶାନିରାଶାକୁ ପରବାୟେ କରିନି । ତାଙ୍କରି ଆସିଶରୁ ମୁଁ ମୋର ଭବିଷ୍ୟତ ଗଢ଼ିବାରେ ସମର୍ଥ ଓ ଅନ୍ୟମାନଙ୍କ ସହିତ ସମକକ୍ଷ ହୋଇ ପାରିଛି ।

ସେଇ ମହାନ ଆତ୍ମା ଓଡ଼ିଶାର ବରପୁତ୍ର ତଥା ଭାରତରେ ମଉଡ଼ମଣୀ ବିଜୟାନନ୍ଦ ପଟ୍ଟନାୟକ (ବିଜୁ ପଟ୍ଟନାୟକ) ଓଡ଼ିଆ ଜାତି ତଥା ସମଗ୍ର ଭାରତର ଶହେ କୋଟି ଲୋକଙ୍କର ଆଶା ଓ ଆକାଂକ୍ଷାର ନରରୂପି ନାରାୟଣ ।

ସେଇ ଈଶ୍ୱର ପ୍ରତିମ ପିତୃତୁଲ୍ୟ ମହାନୁଭବଙ୍କ ଐଶ୍ୱରୀକ ଅନୁକମ୍ପାରେ ଉଦ୍‌ବୁଦ୍ଧ ହୋଇ ଓଡ଼ିଆ ଜାତିର ଐତିହ ସମ୍ପର୍କିତ ଏହି ଗ୍ରନ୍ଥର ପଞ୍ଚମ ଖଣ୍ଡକୁ ପରିଣତ ବୟଶରେ ସଙ୍କଳନ କରିଛି ଏବଂ ତାଙ୍କରି ପାଦପଦ୍ମରେ ଏହାକୁ ବିନମ୍ରତାର ସହିତ ଉତ୍ସର୍ଗ କରି ଦଣ୍ଡବତ କରୁଛି ।

ସଙ୍କଳୟିତା

## ପ୍ରଫେସର ଡଃ ଆର୍ତ୍ତବଲ୍ଲଭ ସ୍ମୃତି ସଂସଦ, କଟକ

ଓଡ଼ିଶା

ସାରସ୍ୱତ ସାଧକ, ବରିଷ୍ଠ ଆଇନ ଜୀବୀ

# ଶ୍ରୀଯୁକ୍ତ ବିନୋଦ ବିହାରୀ ଦାସ

**ମହୋଦୟେଷୁ,**

ମହାଶୟ,

ଆଇନଜ୍ଞଭାବେ ଦେଶରେ ପ୍ରତିଷ୍ଠିତ ହୋଇ ଆନ୍ତର୍ଜାତିକ ସମ୍ମିଳନୀରେ, ଆଇନଜ୍ଞମାନଙ୍କ ନେତା ଭାବରେ ବିଦେଶରେ ଭାରତର ପ୍ରତିନିଧିତ୍ୱ କରି ଉତ୍କଳ ଜନନୀର ଗୌରବ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ମାତା ସାରଦା-ସରସ୍ୱତୀଙ୍କ କରୁଣା ଓ ଆଶୀର୍ବାଦ ପାଇ ବୃତ୍ତିରୁ ପ୍ରବୃତ୍ତିରେ ପ୍ରବୃତ୍ତ ହୋଇ ସାରସ୍ୱତ ସାଧନାରେ ଜୀବନକୁ ଉତ୍ସର୍ଗ କରିଛନ୍ତି ଆପଣ ।

ଆପଣଙ୍କ ପ୍ରତିଷ୍ଠିତ **ବାଗଲପୁର ବିପିନ ବିହାରୀ ନ୍ୟାସ ଓ ବାଲେଶ୍ୱର ଗୋବିନ୍ଦ ନାରାୟଣ ଦାତବ୍ୟ ନ୍ୟାସ ଦ୍ୱାରା ବାଗଲପୁର ବିପିନ ବିହାରୀ ହାଇସ୍କୁଲ ଓ ବାରିପଦା ତ୍ରିଭାଷୀ ଏକତା ସ୍କୁଲ** ପରିଚାଳିତ । ଏହା ଆପଣଙ୍କ ଶିକ୍ଷାପ୍ରେମର ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

କାଳର କରାଳ ଗର୍ଭରେ ଲୁପ୍ତ ପ୍ରାୟ ଲୌକିକ ସଂସ୍କୃତିର ପୁନରୁଦ୍ଧାର କଳ୍ପେ ଲୋକମୁଖ ନିଃସୃତ ସମାଜରେ ପ୍ରଚଳିତ ଢଗଢମାଳି, ପ୍ରବାଦ, ପ୍ରବଚନ ଆଦିର ସଂଗ୍ରହ **'ଶାରଳାରତ୍ନ ଭଣ୍ଡାର ରସ ସାଗର'** ସଙ୍କଳନ କରି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ କରିଛନ୍ତି ବୃଦ୍ଧିମନ୍ତ । ପୃଥିବୀର ବିଭିନ୍ନ ଭାଷାରୁ ଆହରିତ ଅନେକ ହଜାର ପ୍ରବଚନ ସମ୍ବଳିତ **"ସାଇଁତା ମଣି ମାଣିକ୍ୟ"** ଓ ସ୍ୱରଚିତ ଉପନ୍ୟାସ **"ସହ-ବାସ"** ଏବଂ ଇଂରାଜୀରେ ପ୍ରଣୀତ ଅଭିଧାନ **"A Dictionary of Legal Maxim and Hymn"** ଓଡ଼ିଶାର ସାରସ୍ୱତ କ୍ଷେତ୍ରକୁ ଆପଣଙ୍କର ଅବିସ୍ମରଣୀୟ ଦାନ ।

**ହେ ବାକ୍‌ଦେବୀ ବରପୁତ୍ର !**

ଆଜିର ଏ ଶୁଭ ଅବସରରେ ଆପଣଙ୍କ ଲେଖନୀର ଜୟଗାନ କରି ଆପଣଙ୍କ ଦୀର୍ଘ ନିରାମୟ ଜୀବନ କାମନା କରୁଛି,

ଆପଣଙ୍କର

ପ୍ରୀତିସ୍ନିଗ୍ଧ

ପ୍ରଫେସର ଆର୍ତ୍ତବଲ୍ଲଭ ସ୍ମୃତି ସଂସଦ,

କଟକ

ତା ୩୦ ସେପ୍ଟେମ୍ବର ୨୦୦୨ ଖ୍ରିଷ୍ଟ

ବାଣୀପୀଠ

ଶ୍ରୀରାମଚନ୍ଦ୍ର ଭବନ, କଟକ



# ସୂଚୀପତ୍ର



**ମୋଟ ପୃଷ୍ଠା ସଂଖ୍ୟା - ୩୨୦ (୩୧୦+ ୧୦)**



# ଲେଖକଙ୍କର ଅନ୍ୟାନ୍ୟ ଗ୍ରନ୍ଥ

## = ପ୍ରକାଶିତ =

## ସାରଳା ରତ୍ନଭଣ୍ଡାର ରସସାଗର

୧ମ, ୨ୟ, ୩ୟ, ୪ର୍ଥ ଖଣ୍ଡ

(ଓଡ଼ିଆ ଢ଼ଗ ଢ଼ମାଳି, ପ୍ରବାଦ, ବଚନ ଇତ୍ୟାଦିର ଅସୁମାରୀ ସଂଗ୍ରହ ଏବଂ ଐତିହ୍ୟ ସମ୍ପର୍କରେ ବିସ୍ତାରିତ ଆଲୋଚନା)

## ସାଉଁଟା ମଣି ମାଣିକ୍ୟ

(ପୃଥିବୀ ବିଖ୍ୟାତ ପ୍ରବଚନ ସଂଗ୍ରହ)

## ସହ-ବାସ

(ଧନ, ମନ, ଯୌନ, ଯୌବନ ଓ ଜୀବନ ସମ୍ବଳିତ ଏକ ଚୂଡ଼ାନ୍ତ ସାମାଜିକ ଶୃଙ୍ଗାରରସ ପରିପୂର୍ଣ୍ଣ ଉଚ୍ଛ୍ବସିତ ଅତ୍ୟାଧୁନିକ ମର୍ମ୍ମସ୍ପର୍ଶୀ ଅଚିନ୍ତ୍ୟ ଅବିନବାଭିନବ ଓଡ଼ିଆ ଉପନ୍ୟାସ)

## = ପ୍ରସ୍ତୁତି ପଥେ =

**ସାରଳା ରତ୍ନଭଣ୍ଡାର ରସସାଗର** - ୬ଷ୍ଠ, ୭ମ ଓ ଅନ୍ୟାନ୍ୟ ଖଣ୍ଡମାନ ।

## (୧) ପୁନିଆ ଗୁଣ୍ଡା (୨) ନୃତ୍ୟାଙ୍ଗନା ବିନୋଦିନୀ

(ଉପନ୍ୟାସ)

## ଶିଶୁଝରା ଓ ଶିଶୁ କାହାଣୀ ସଞ୍ଚୟନ

## ସାନ୍ତାଳୀ ଲୋକ କଥା

**A Dictionary of Legal Maxim & Hymns.** (ଇଂରାଜୀ)



# ମଙ୍ଗଳା ଚରଣ

## -ଓଁ ଶ୍ରୀ ଗଣେଶାୟ ନମଃ-

ମଙ୍ଗଳଂ ଭଗବାନ ବିଷ୍ଣୁ, ମଙ୍ଗଳଂ ମଧୁସୂଦନଃ ।
ମଙ୍ଗଳଂ ପୁଣ୍ଡରିକାକ୍ଷ, ମଙ୍ଗଳଂ ଗରୁଡ଼ଧ୍ୱଜାଃ ।
ଶ୍ରୀ ଗୁରବେ ନମଃ, ଶ୍ରୀ ପରମଗୁରବେ ନମଃ ।

## (୧)

## ମା' ସାରଳାଙ୍କୁ ବନ୍ଦନା

ସାରଳା ମାଆଙ୍କ ମହିମା ରସ
କେ ବର୍ଣ୍ଣିବ ତାହା କେଉଁଠୁ କିସ ।
ପୋଡ଼ିଯାଉ ମୋର ଧନ ସମ୍ପତ୍ତି,
ଆସୁ ପଛେ ମୋର ଯେତେ ବିପତ୍ତି,
ମାଆଙ୍କ ଚରଣେ ଥାଉ ମୋ ମତି ।
ଭାବ ଫୁଟାଇବୁ କାନେ କହିବୁ,
ବିନୋଦ ମନରେ ଲେଖିବ ତାକୁ ।
କ୍ଷୀଣ ଦେହି ତୋର ଅଜ୍ଞାନ ପୁତ୍ର
କେମିତି ଟେକିବ ତୋ ଥାଟ-ଛତ୍ର ।

## (୨)

## ମହାଲକ୍ଷ୍ମୀଙ୍କୁ ବନ୍ଦନା

ନମସ୍ତେ ବିଷ୍ଣୁ ପାଟରାଣୀ
ନମସ୍ତେ ଦାରିଦ୍ର୍ୟ ଭଞ୍ଜନୀ ।
ନମସ୍ତେ କମଳା ଆସନୀ
ବୈକୁଣ୍ଠପୁର ଅଧିଷ୍ଠାନୀ ।
କମଳାସନେ ଶୋଭା ପାଇ
ବିପୁଳ କୋଟି ଯା ଅଟଇ ।

ପଦ୍ମପୁଷ୍ପ ଆଖି ଯାହାର
ଗଭୀର ନାଭି ଶୋଭାକାର ।
ସ୍ତନ ଯଉବନ ସୁନ୍ଦରୀ
ଶୁକ୍ଳ ବସନେ ମନୋହାରୀ ।
ଦିବ୍ୟ ଗନ୍ଧେନ୍ଦ୍ର ଯେ ଧାରିଣୀ
ମଣିଗଣରେ ସୁଶୋଭନୀ ।
ହେମ କୁମ୍ଭରେ ସ୍ନାନ କରି
ସଦା କମଳ କରେ ଧରି ।
ପରମ ଲକ୍ଷ୍ମୀ ଏ ରୂପରେ
ନିତ୍ୟରେ ବସେ ମୋର ଘରେ ।
ସର୍ବ ମଙ୍ଗଳ ମୋତେ କର
ନମଇଁ ଚରଣେ ତୁମ୍ଭର ।
ହେ ମାତ ତୁମ୍ଭ ପରସାଦେ
ଏହା କହିବି ଅପ୍ରମାଦେ ।
ମତେ କିଞ୍ଚିତେ କୃପା କର
ମୋ ହୃଦ-ପଦ୍ମେ ବିଜେ କର ।
ସ୍ୱଚିତ୍ତେ ପ୍ରସନ୍ନ ହୋଇବ
ମତେ ଯେ ପଦ କହିଦେବ ।
ଅବିଘ୍ନେ ଯେହ୍ନେ କଥା ହୋଉ
ସଂସାରରେ ତୁମ୍ଭ ଯଶ ରହୁ ।

## (୩)

## ଦେବୀ ସରସ୍ୱତୀଙ୍କ ବନ୍ଦନା

ବନ୍ଦଇ ଦେବୀ ସରସ୍ୱତୀ,
ମାତା ଅଭୟ ଜଗଦ୍ଧାତ୍ରୀ ।
କୃପା କଟାକ୍ଷେ କୃଷ୍ଣପ୍ରିୟା,
ଶଙ୍ଖ ଗୋକ୍ଷୀର କାନ୍ତା ପ୍ରିୟା ।
ବାକ୍ୟ କାରକ ବାଣୀ ମୂର୍ତ୍ତି,
ବିଦ୍ୟାର ଅଟ ଅଧିପତି ।

ତୁମ୍ଭ ଅନୁଗ୍ରହ ଯାହାକୁ ନାହିଁ,
ପାଠ-ଶାସ୍ତ୍ର ତାହାକୁ କାହିଁ ।
ଯାହାକୁ କରୁ ତୁ କରୁଣା,
କେବେ ତା ବୁଦ୍ଧି ନୋହେ ବଣା ।
ତେଣୁ ପ୍ରଣାମ ତୋ ପୟରେ,
ଜଣାଉଅଛି ତୋ ଛାମୁରେ ।
ଦୟା ତୁ କର ଦେଇ ବର,
ଝରୁଛି ଅଶ୍ରୁ ଝରଝର ।

## (୪)

## ଶ୍ରୀ ଗଣେଶଙ୍କୁ ବନ୍ଦନା

ବନ୍ଦଇ ପ୍ରଭୁ ଗଣନାଥ
କୁମାର ଦେବଙ୍କର ଭ୍ରାତ ।
ପ୍ରଭୁ ଯେ ବିଘ୍ନ ବିନାଶନ
କର ହେ ଗଉରୀ ନନ୍ଦନ ।
ଜଗତୀ କାରଣ ଠାକୁର
ନମଇଁ ତୁମ୍ଭର ପୟର ।
ହେ ନାରାୟଣ ଦାମୋଦର
ବିଶେଷ ବ୍ରହ୍ମାଣ୍ଡ ଈଶ୍ୱର ।
କୋଟି କୋଟିୟେ ନମସ୍କାର
କରଇଁ ତୁମ୍ଭର ପୟର ।
ଲାଗୁ ତୋ ପଦ୍ମପାଦେ ଯାଇ
ଭବୁଁ ଉଦ୍ଧର ଭାବଗ୍ରାହୀ ।
ତୋ ମାୟା ବଡ଼ଇ ପ୍ରଖର
ଡାକ ପଡ଼ିଛି ତିନିପୁର ।
ତହିଁରେ ପଡ଼ି ସର୍ବ ନର
ବୋଲନ୍ତି ଆମ୍ଭ ଦେହ ଘର ।

ବନ୍ଧୁ ବାନ୍ଧବ ପୁତ୍ର ଜାୟା
ଘୋଟିଣ ଥାୟେ ତୋର ମାୟା ।
ଅନ୍ଧ ହୋଇଣ ଘୁରୁଥାନ୍ତି
ସଂସାର ଭିତରେ ପଡ଼ନ୍ତି ।
ତୁମ୍ଭର ଦୟା ଯାକୁ ହୋୟେ
ସେ ସର୍ବମଣେ ମିଥ୍ୟାମୟେ ।
ଜ୍ଞାନ ଯେ ହୋଅଇ ତାହାର
ତା ମାୟା ବନ୍ଧୁ ହୋୟେ ପାର ।
ସଂସାର ଭିତରେ ଯେ ମୁହିଁ
ଅଜ୍ଞାନେ ଭ୍ରମଣ କରଇ ।
ମୋତେ ହେ ପ୍ରଭୁ କର ଦୟା
କଟାଇ ପ୍ରଭୁ ତୋର ମାୟା ।
ମୁଁ ବୈଶ୍ୟକୁଳେ ଜାତ ହୋଇ
ଧର୍ମ ଅଧର୍ମ ନ ଜାଣଇ ।
ଭକ୍ତି ତୁମ୍ଭର ମୋତେ ଦିଅ
ତୋ ପଦ୍ମପାଦେ ମୋର ସ୍ନେହ ।

## (୫)
## ସମୂହ ପ୍ରାର୍ଥନା

ଜୟ ଜୟ ବିମଳା ଗୋ ଜୟ ମହା ଦେଈ,
ପ୍ରସନ୍ନ ହୋଇଣ ମୋତେ ପଦ ଦେବୁ କହି ।
ଜୟ ଜୟ ଜଗନ୍ନାଥ ସାହା ହୁଅ ମୋତେ,
ହୃଦପଦ୍ମେ ରହି ପଦ କହିଦେବ ମୋତେ ।

□□□

ସାରଳା ରତ୍ନଭଣ୍ଡାର ରସସାଗର (ପଞ୍ଚମ ଖଣ୍ଡ)

ଉତ୍କଳ ବାଚସ୍ପତି

**ପ୍ରଫେସର ଗୌରୀକୁମାର ବ୍ରହ୍ମା,**

ମାଉସୀ ମା ମନ୍ଦିର ନିକଟ,

ଭୂବନେଶ୍ୱର - ୨.

# ଭୂମିକା

ଶ୍ରୀଯୁକ୍ତ ବିନୋଦବିହାରୀ ଦାସ **'ସାରଳା ରତ୍ନଭଣ୍ଡାର ରସସାଗର'** ଗ୍ରନ୍ଥ ସଂକଳନ କରିବାରେ ଯେଭଳି ପ୍ରଶଂସନୀୟ ହୋଇ ଉଠିଛନ୍ତି, ତାଙ୍କୁ ସାଧୁବାଦ ଜ୍ଞାପନ ନ କଲେ ଗୋଟାଏ ସାରସ୍ୱତ ଅପରାଧ କରାଗଲା ପରି ଅନୁଭୂତ ହେବ । ଏଥି ପୂର୍ବରୁ ପ୍ରକାଶ ପାଇଥିବା ଏହାର ଚାରିଗୋଟି ଖଣ୍ଡ ଉପରେ ବିହଙ୍ଗମ ଦୃଷ୍ଟି ନିକ୍ଷେପକରି ମୁଁ ପରମ ସନ୍ତୋଷ ଲାଭ କରିଅଛି । ଏ ସଂପର୍କରେ ମୋ ଭଳି ବୟସ୍କ ସାହିତ୍ୟସେବୀଙ୍କ ମତରେ, ଗବେଷକ ବା ଅଧ୍ୟାପକ ନହୋଇ ଜଣେ ସାଧାରଣ ଲେଖକ ଭାବରେ ପରିଚିତହେବାର ବାସନା ନ ଥାଇ ମଧ ବିନୋଦବିହାରୀ ବାବୁ ଯେଉଁ କୃତବିଦ୍ୟତା ପ୍ରଦର୍ଶନ କରିଛନ୍ତି, ତାହାକୁ ଉତ୍କଳ ଭାରତୀଙ୍କର ସେବା ମନ୍ଦିରରେ ଏକ ଜାଜ୍ୱଲ୍ୟମାନ ଦୃଷ୍ଟାନ୍ତ ବୋଲି କୁହାଯିବ ଏବଂ ଏ କଥା ମଧ୍ୟ ସୁସଙ୍ଗତ ଭାବରେ କୁହାଯାଇ ପାରିବ ଯେ, ବିନୋଦ ବିହାରୀ ବାବୁ ଅସୀମ ଶକ୍ତିଶାଳିନୀ ଦେବୀଙ୍କର କୃପାବଳରେ ହିଁ ଏଭଳି ଦୁରୂହ କାର୍ଯ୍ୟ ସମ୍ପାଦନ ପାଇଁ ଅନୁପ୍ରେରିତ ହୋଇଛନ୍ତି । ତାଙ୍କର ଓକିଲାତି ଜୀବନ ସହିତ ଏଭଳି ଏକ ବିରାଟ ସାରସ୍ୱତ ସେବାବ୍ରତର ବିଶେଷ କିଛି ସଂପର୍କ ଥିଲାପରି ଜଣାଯାଉ ନଥିଲେ ମଧ, କାର୍ଯ୍ୟତଃ ତାଙ୍କର ଏହି କୃତି ଆମ ପାଇଁ ଏକ ଅସାଧାରଣ ସୃଷ୍ଟି ଭଳି ଉପଲବ୍‌ଧ ହେଉଅଛି । ସେଦିନ ତାଙ୍କ ସହିତ ଯେଉଁ ସାମାନ୍ୟ ଆଳାପ ହୋଇଥିଲା, ତହିଁରୁ ମୁଁ ଅନୁଭବ କଲି ଯେ ନିଶ୍ଚିତ ଭାବରେ ମା' ସାରଳାଙ୍କର କୃପାଲାଭ କରିବା ଦ୍ୱାରା ହିଁ ତାଙ୍କଠାରେ ଏପରି ମନସ୍ୱିତା ଏବଂ ସଂକଳ୍ପର ଦୃଢ଼ତା ବଳେ ବଳେ ଉନ୍ମେଷିତ ହୋଇଅଛି । ନିଜରବୋଲି କିଛି ନ ଥିଲେ ମଧ୍ୟ ସେ ଚିନ୍ତାରାଜ୍ୟରେ ଯେଉଁ **'ରତ୍ନଭଣ୍ଡାର'** ଗଠନ କରିବା ପାଇଁ ସମୁଦ୍ୟତ ହୋଇଅଛନ୍ତି ଏବଂ ଜ୍ଞାନବିଜ୍ଞାନର **'ରସ ସାଗର'** ମଧରେ ପ୍ରବେଶ କରିବାପାଇଁ ଯେଉଁ ସତ୍‌ସାହସ ପ୍ରଦର୍ଶନ କରିଅଛନ୍ତି, ତାହା ବଡ଼ ଅଦ୍‌ଭୁତ ଏବଂ ଅଲୌକିକ ଭାବରେ ପ୍ରତିଭାତ ହେଉଅଛି ।

ଆଜିକାଲି ମୁଦ୍ରାଯନ୍ତ୍ରର ବିକାଶ ହେତୁ ପୁସ୍ତକ ପ୍ରକାଶନର ବହୁଳତା ଏବଂ ବ୍ୟାପକତା, ପୂର୍ବ ଯୁଗମାନଙ୍କ ତୁଳନାରେ ବର୍ତ୍ତମାନ ଯୁଗକୁ ଜ୍ଞାନ ବିସ୍ତାର ପାଇଁ, ନାନାବିଧ ଜ୍ଞାନର ଏକ ସମୃଦ୍ଧ ବିପଣୀ ସଂସ୍ଥାପିତ କରିଦେଇଛି । ତେଣୁ ଯେ କୌଣସି ଉଚ୍ଚ ଶିକ୍ଷିତ ବ୍ୟକ୍ତି ନିଷ୍ଠାର ସହିତ ଚେଷ୍ଟାକଲେ କଳନାତୀତ ଜ୍ଞାନରତ୍ନ-ଖଣ୍ଡମାନଙ୍କୁ ସଂକଳନ କରି ଏକ ବିସ୍ମୟକର ଭଣ୍ଡାର ଗଠନ କରିବାରେ ସମର୍ଥ ହୋଇ ପାରିବ ।

ଯାହାଙ୍କଠାରେ ସ୍ୱତଃ ପ୍ରବୃତ୍ତ ଭାବରେ ଏବଂ ସ୍ୱାଭାବିକ ଭଙ୍ଗୀରେ ଏଭଳି ଜ୍ଞାନ ଓ ଚେତନାର ଅଭ୍ୟୁଦୟ ହେବାର ସମ୍ଭାବନା ରହିଛି, ସେ ଯଦି କୌଣସି ଅଜ୍ଞାତ ସୁକୃତ ବଳରେ ନିଜର ଗୋଟିଏ ସମୁଜ୍ଜ୍ୱଳ ରତ୍ନଭଣ୍ଡାର ନିର୍ମାଣ କରିବାପାଇଁ ଉଦ୍ୟମ କରନ୍ତି, ତାହାହେଲେ, ସୌଭାଗ୍ୟବଶତଃ ନିଜର ମନୋରାଜ୍ୟରେ ସଞ୍ଚାରିତ ଦୈବୀକୃପାଦ୍ୱାରା ଅପୂର୍ବ ସିଦ୍ଧିଲାଭ କରିବାରେ ସେ ସଫଳକାମ ହୋଇ ଥାଆନ୍ତି । ପୃଥିବୀର ବଡ଼ ବଡ଼ ଲେଖକମାନଙ୍କ ଜୀବନରେ ଏହାହିଁ ଘଟିଛି । ବିଶେଷତଃ, ଭାରତରେ ତଥା ଓଡ଼ିଶାରେ ମୂର୍ତ୍ତିପୂଜା ଭିତ୍ତିକ ଦେବମନ୍ଦିରମାଳା ଏବଂ ଶକ୍ତିପୀଠ ମାନଙ୍କରେ ଉପାସନା କରି ଅନେକେ ଅଦ୍‌ଭୁତ କୃତିତ୍ୱ ପ୍ରଦର୍ଶନ କରିଥିବାର ପ୍ରମାଣସିଦ୍ଧ ନିଦର୍ଶନ ହଜାର ହଜାର ବର୍ଷ ଧରି ସ୍ୱୀକୃତ ହୋଇଆସିଛି । ସେଥିପାଇଁ ବଡ଼ ବଡ଼ ସାଧକମାନେ ପୂର୍ବଜନ୍ମାର୍ଜିତ ମନୋବଳ ବା ସାଧନା ମାଧ୍ୟମରେ ଅଦ୍‌ଭୁତ ଶକ୍ତିର ଅଧିକାରୀ ରୂପେ ସ୍ୱୀକୃତ ହୋଇଛନ୍ତି । ମାନବ ଶରୀରରେ ମଧ ଦେବଦେବୀଙ୍କର ଶକ୍ତିର ପ୍ରକାଶ ସମ୍ଭବପର ହୋଇଥାଏ ବୋଲି ପୃଥିବୀର ସବୁଦେଶର ଚିନ୍ତାଶୀଳ ଲୋକେ ଅନୁଭବ କରି ଆସି ଅଛନ୍ତି ।

ମନୁଷ୍ୟ ସମାଜ ଠିକ୍ କେତେବର୍ଷତଳେ ଗୋଟିଏ ବିରାଟ ମାନବ ଜାତିରୂପେ ସଂଗଠିତ ବା ପ୍ରତିଷ୍ଠିତ ହୋଇପାରିଥିଲା, ତାହା ଏ ପର୍ଯ୍ୟନ୍ତ ଅଭ୍ରାନ୍ତ ଭାବରେ ସ୍ଥିର କରାଯାଇ ପାରି ନାହିଁ । ତଥାପି, ପୃଥିବୀର ଶତ ଶତ ଜ୍ଞାନ ସାଧକ ଏକଥା ଅନୁଭବ କରିଅଛନ୍ତି ଯେ, କ୍ଷୁଦ୍ରବୁଦ୍ଧି ସମ୍ପନ୍ନ ମାନବ ଅପେକ୍ଷା ସେମାନଙ୍କର ଅଗୋଚରରେ ଅନ୍ୟ ଗୋଟିଏ ଅଚିନ୍ତନୀୟ ଶକ୍ତି ମଧ୍ୟ ବିଚିତ୍ର ଲୀଳା ବିଳାସରେ ନିତ୍ୟ କ୍ରିୟାଶୀଳ ହୋଇ ରହିଅଛି । ସେଥିପାଇଁ ସାରସ୍ୱତ ସୃଷ୍ଟିମାଧ୍ୟମରେ ଏବଂ ଚିନ୍ତାର ବିଭିନ୍ନ ରୂପ ସମ୍ଭାର ମାଧମରେ ଜାତିର ପ୍ରାଣ କିପରି ଉଲ୍ଲସିତ ହୋଇଉଠେ ଏବଂ ଜାତିର ନରନାରୀମାନଙ୍କୁ ପ୍ରାଣପ୍ରାଚୁର୍ଯ୍ୟରେ ମହିମାମୟ କରାଇ ଥାଏ । ବିନୋଦ ବିହାରୀ ବାବୁଙ୍କର ଏହି ବିଲକ୍ଷଣ ସଂକଳନ ଭିତ୍ତିକ ସୃଷ୍ଟି ସମ୍ଭାର ଏକ ଅପୂର୍ବ ସିଦ୍ଧିର ଦୃଷ୍ଟାନ୍ତ ରୂପେ ବିଜ୍ଞ ବ୍ୟକ୍ତିମାନଙ୍କୁ ପ୍ରତିଭାତ କରୁଥିବ ।

ଏହି ବରେଣ୍ୟ ସଂଗ୍ରାହକ ଯେଭଳି ବିଶାଳ ଚିନ୍ତାତ୍ମକ ପରିବେଶ ମଧ୍ୟରୁ ଲୋକ ସାହିତ୍ୟ, ଗଣସାହିତ୍ୟ, ଜନସାହିତ୍ୟ ବା ଅଯତ୍ନ ବର୍ଦ୍ଧିତ ଜାତୀୟ ସାହିତ୍ୟର ସଂକଳନ କରିବାକୁ ପ୍ରଚେଷ୍ଟା କରିଅଛନ୍ତି, ତାହାର ମୂଳଦେଶରେ ତାଙ୍କର କଳ୍ପନା କୌଶଳ ସ୍ପଷ୍ଟଭାବରେ ରହିଅଛି । ବ୍ୟାପକ ଭାବରେ ଢ଼ଗ, ଢ଼ମାଳି, ଲୋକକଥା ଏବଂ ବିଭିନ୍ନ ପ୍ରକାରର ସ୍ୱତଃସ୍ଫୂର୍ତ୍ତ ଭାବବିଳାସ ଯେ କୌଣସି ଭାଷାର ଦୃଢ଼ତା, କମନୀୟତା ମହନୀୟତା ଏବଂ ସ୍ୱକୀୟତାକୁ ସଂପ୍ରସାରିତ କରିବାରେ ସହାୟକ ହୋଇଥାଏ । ପ୍ରଖ୍ୟାତ ଆଇନଜୀବୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କଠାରୁ ଆରମ୍ଭକରି ଚକ୍ରଧର ମହାପାତ୍ର, ଡ଼କ୍ଟର କୁଞ୍ଜବିହାରୀ ଦାଶ ପ୍ରମୁଖ ସଂଗ୍ରାହକ ମାନେ ବିଭିନ୍ନ ପ୍ରବାଦ ଏବଂ ଢ଼ଗ ଢ଼ମାଳିର ସଂକଳନ ତଥା ପ୍ରକାଶନ କରି ଓଡ଼ିଶାର ଜନ ସାହିତ୍ୟକୁ

ବା ଗଣ ସାହିତ୍ୟକୁ ସୁପ୍ରତିଷ୍ଠିତ କରି ଯାଇଛନ୍ତି । ସେମାନଙ୍କର ସାଧନା ଶତ ମୁଖରେ ପ୍ରଶଂସିତ ହେଲେ ମଧ୍ୟ, ସେଭଳି ସଂକଳନର ପ୍ରୟୋଜନୀୟତା ଏବଂ ଜନପ୍ରିୟତା ପତି ଲକ୍ଷ୍ୟକରି ସାଧକ ପ୍ରବର ବିନୋଦବିହାରୀ ବାବୁ ବର୍ତ୍ତମାନ ଏହି 'ରତ୍ନଭଣ୍ଡାର ରସ ସାଗର'ରେ ଯେଉଁ ନୂତନତା ବିଶାଳତା ପ୍ରଦର୍ଶନ କରିବାକୁ ଉଦ୍ୟମ କରିଅଛନ୍ତି, ତାହା ଓଡ଼ିଆ ସାହିତ୍ୟର ପ୍ରୀତି ପ୍ରବଣ ପାଠକମାନଙ୍କୁ ନିଶ୍ଚିତ ଭାବରେ ତାଙ୍କ ପ୍ରତି ପ୍ରଶଂସା ପ୍ରବଣ କରିଦେଉଥିବ । ଏଭଳି ସଂକଳନ ଗ୍ରନ୍ଥ ବିଶ୍ୱଜ୍ଞାନ ଭଣ୍ଡାରର ଏକତ୍ର ସଂଗଠନ ପାଇଁ ଆମ୍ଭମାନଙ୍କୁ ଅନ୍ୟ ଏକ ନୂତନ ପଦ୍ଧତିର ବିଶେଷତ୍ୱ ସଂପର୍କରେ ଯେ ସଚେତନ କରି ଦେଉଛି । ଏହିକଥାପ୍ରତି ଅଧିକାଂଶ ଲେଖକ ସମୁଚିତ ଦୃଷ୍ଟି ପ୍ରଦାନ କରି ନଥାନ୍ତି । ମାନବ ଜୀବନର ଅନୁଭୂତି ଏବଂ ଚିନ୍ତା ରାଜ୍ୟରେ ଏଭଳି କୌଣସି ଦିଗ ବା ମନନଶୀଳତା ନାହିଁ, ଯାହାକି ବିନୋଦ ବିହାରୀ ବାବୁଙ୍କ **'ରତ୍ନ ଭଣ୍ଡାର ରସସାଗର'** ମଧରେ ସମୁଚିତ ସ୍ଥାନ ଲାଭ କରିବାପାଇଁ ଉଚିତ ନୁହେଁ ବୋଲି କେହି କହି ପାରିବେ ନାହିଁ । ଏଭଳି ଏକ ବିଶାଳ, ବିରାଟ, ବ୍ୟାପକ ଏବଂ ବହୁମୁଖ ସମୁଦ୍‌ଭୂତ ବାକ୍ୟମାନଙ୍କରୁ ଦିନେ ସମଗ୍ର ମାନବଜାତିର ଜ୍ଞାନସାଗର ସଂପର୍କରେ ବିସ୍ମୟକର ଜ୍ଞାନଗର୍ଭକତା ପ୍ରମାଣ ଫୁଟି ଉଠିବ ନାହିଁ ବୋଲି କୁହାଯାଇ ପାରିବ ନାହିଁ । ସୁତରାଂ, ଓଡ଼ିଆ ସାହିତ୍ୟରେ ଯାହାଙ୍କୁ ହୁଏତ ଜଣେ ଅଲେଖକ ବା ଅସ୍ରଷ୍ଟାବୋଲି କହିଦେବା ପାଇଁ କେହିଅବା କେତେବେଳେ ଆଗେଇ ଆସିବ, ତାଙ୍କୁ କେବେଳ ବିନୋଦବିହାରୀ ବାବୁଙ୍କ ଏହି ସୃଷ୍ଟିର ଅକଳନୀୟ ବୁଦ୍ଧିମତ୍ତା ଓ ଜ୍ଞାନଭିତ୍ତିକତା ସଂପର୍କରେ ବୁଝାଇଦେଲେ ଯଥେଷ୍ଟ ହେବ ।

ଆଜିକାଲି ଇଂରାଜୀରେ, ହିନ୍ଦିରେ, ବଙ୍ଗଳାରେ, ଏବଂ ଅନ୍ୟ ଅନେକ ଭାରତୀୟ ପ୍ରାଦେଶିକ ଭାଷାରେ ସଂକଳନମୂକ ଓ ବହୁବିଷୟ ଭିତ୍ତିକ ବୃହତ ଗ୍ରନ୍ଥମାନ ପ୍ରକାଶିତ ହେଉଛି, ଓଡ଼ିଆ ଭାଷାରେ ସେହିପରି ମହାନ ଓ ମହନୀୟ ଗ୍ରନ୍ଥର ସଂକଳନ ''ସାରଳା ରତ୍ନଭଣ୍ଡାର ରସସଗାର'' ଗ୍ରନ୍ଥ ପୂର୍ବରୁ ପ୍ରକାଶିତ ହୋଇଥିବାର ଦୃଷ୍ଟାନ୍ତ ଦେଖାଯାଏ ନାହିଁ ।

ସଂସ୍କୃତ ଭାଷାର ଅସଂଖ୍ୟ ଶ୍ଳୋକ ରତ୍ନ ମଧରେ ମନୀଷୀ ଭର୍ତ୍ତୃହରିଙ୍କ ''ଶକେତ୍ରୟ'' ସମଗ୍ର ମାନବ ଜାତି ପାଇଁ ଏକାନ୍ତ କଲ୍ୟାଣ କର ଏକ ସାରସ୍ୱତ ରତ୍ନ ଭଣ୍ଡାର ବା ମାନବିକ ପ୍ରଜ୍ଞାର ଏକ ମହାସାଗର ରୂପେ ସମ୍ମାନିତ ହୋଇ ଆସିଛି । ସେହିପରି ବିଶ୍ୱସାହିତ୍ୟର ଅନ୍ୟଏକ ସୁବିଖ୍ୟାତ ଗ୍ରନ୍ଥ ହେଉଛି ''ପଞ୍ଚତନ୍ତ୍ର'' । ଏହି ବିଶ୍ୱପ୍ରସିଦ୍ଧ ସଂସ୍କୃତ କଥା-ସାହିତ୍ୟର ଲେଖକ ଭାରତର କେଉଁ ପ୍ରଦେଶର ଲୋକ ସେ ସମ୍ପର୍କରେ ମତଭେଦ ଥାଇ ପାରେ । କିନ୍ତୁ, ସମଗ୍ର ଭାରତର କୋଟି କୋଟି ଲୋକ ଗତ ବହୁ ଶତାବ୍ଦୀଧରି ଏହାକୁ ସମଗ୍ର ଭାରତର ଏକ ବିଲକ୍ଷଣ ସଂସ୍କୃତ ରଚନା ବୋଲି ସ୍ୱୀକାର କରିଛନ୍ତି, ଏଥିରେ ମତ ଦ୍ୱୈଧ ନାହିଁ, ଏହି ଗ୍ରନ୍ଥର କଥା ମାନଙ୍କରେ ମାନବ-ବୁଦ୍ଧିର ଉତ୍କର୍ଷଦ୍ୟୋତକ କେତେ ଯେ ମିଷ୍ଟ ବଚନ ଓ ଶିଷ୍ଟ ବଚନ ରହିଅଛି ତାହା ବିଶ୍ୱର ଚିନ୍ତାଶୀଳ ପାଠକ ମାନଙ୍କୁ ଭୁଲଭାବରେ ଜଣା ।

ସେହିପରି ବିନୋଦବିହାରୀ ବାବୁଙ୍କ ଓଡ଼ିଆ ଢ଼ଗଢ଼ମାଳି, ପ୍ରବାଦ, ଲୋକବାଣୀ

ପ୍ରଭୃତିର ସଂକଳନର ତତ୍ତ୍ୱରତ୍ନ ଭଣ୍ଡାର ଓ ଜ୍ଞାନ ସାଗର ମଧ୍ୟ ବିଦଗ୍ଧ ପାଠକ ମାନଙ୍କୁ ଆକର୍ଷଣ କରୁଛି ଓ କରୁଥିବ । ଏହି ଗ୍ରନ୍ଥ ପତ୍ରେ ପତ୍ରେ ଇଂରାଜୀ, ହୀନ୍ଦି ଓ ଅନ୍ୟାନ୍ୟ ଭାଷାରେ ଅନୁବାଦିତ ହେଲେ ଓଡ଼ିଆଙ୍କର ମନନଶୀଳତା ସାରା ବିଶ୍ୱ ଦରବାରରେ ପ୍ରକାଶିତ ଓ ପ୍ରତିପାଦିତ ହୋଇ ପାରନ୍ତା ।

ଇଂରାଜୀ ସାହିତ୍ୟରଭୂୟୋବିକାଶ ହେବା ପୂର୍ବରୁ ମଧ୍ୟ ସଂସ୍କୃତ ପଣ୍ଡିତ ମାନେ ସଂସ୍କୃତ ସାହିତ୍ୟର ବଛା ବଛା ଅଂଶମାନଙ୍କୁ ନେଇ "ସଂଗ୍ରହ" ଗ୍ରନ୍ଥ ସଂକଳନ କରୁଥିଲେ । "ସୁଭାଷିତ ସୁଧାରତ୍ନ ଭାଣ୍ଡାଗାର" ଗ୍ରନ୍ଥ ତନ୍ମଧ୍ୟରୁ ଏକ ଦୃଷ୍ଟାନ୍ତ ଗ୍ରନ୍ଥ ଅଟେ । ବିନୋଦ ବିହାରୀ ବାବୁ ତାଙ୍କର ଏହି ଓଡ଼ିଆ ସଂଗ୍ରହ ଗ୍ରନ୍ଥକୁ ଯେଉଁ ମନୋରମ କାମ ପ୍ରଦାନ କରିଛନ୍ତି, ତାହା ହୁଏତ ଶହ ଶହ ବର୍ଷ ପୂର୍ବରୁ ସମଭାବନା ଶାଳୀ ଜଣେ ପ୍ରବୀଣ ପଣ୍ଡିତଙ୍କୁ ମଧ୍ୟ ପ୍ରଚୋଦିତ କରିଥିଲା । ସୁଭାଷିତ, ସୁଧାରତ୍ନ ଏବଂ ଭଣ୍ଡାଗାର (ଭଣ୍ଡାର) ଏହି ତିନୋଟି ଯାକ ଶବ୍ଦର ଅର୍ଥ ବ୍ୟଞ୍ଜନା, ମୋର ଏଭଳି ମତ ପ୍ରକାଶର ସମର୍ଥକ ।

ଆଜିର ଜଡ଼ବିଜ୍ଞାନ- ଗର୍ଭିତ ପୁସ୍ତକମାଳା ପୂର୍ବକାଳର ଲେଖକ ମାନଙ୍କ ତୁଳନାରେ ନିଜର ମୌଳିକତା, ନବୀନତା ଓ ଅଲୌକିକତା ଦ୍ୱାରା ଧରାପୃଷ୍ଠରେ ପ୍ରବଳ କମ୍ପନ ସୃଷ୍ଟି କରୁଅଛି । ଯେଉଁ ଦିଗରେ ବୁଦ୍ଧିମନବ ତାର କର ପ୍ରସାରଣ କଲେ ମଧ୍ୟ, ପ୍ରାଣୀ-ଜଗତରେ ରସାୟନ-ଜଗତର ଏବଂ ଭୂଗର୍ଭର ବିବିଧ - ତତ୍ତ୍ୱ-ବିତ୍ତିକ ଜ୍ଞାନ କୋଷର ନବନବ ଆବିଷ୍କାର ମଧ୍ୟରୁ ବହୁମୂଲ୍ୟର ମଣି ମାଣିକ୍ୟ ସଂଚୟନ କରିବାକୁ ସମର୍ଥ ହେବ । ଏସବୁ ହେବ ଆମର ଏହି ମହନୀୟ ଗ୍ରନ୍ଥର ଅସୀମ-ଗୌରବ ବର୍ଦ୍ଧକ । ଆବଶ୍ୟକ ହେଉଛି ସାରସ୍ୱତ ରତ୍ନଭଣ୍ଡାର ସଂଗ୍ରହର ପିପାସା ଓ ଦିଦୃକ୍ଷା, ବିନୋଦବିହାରୀ ବାବୁ ଯେ ଏଥିପାଇଁ ସୁସମର୍ଥ, ଏହା ବର୍ତ୍ତମାନ ସୁଦ୍ଧା ପ୍ରମାଣିତ ହୋଇ ଯାଇଛି ।

ଏହି ବରେଣ୍ୟ ସଙ୍କଳୟିତାଙ୍କୁ ତାଙ୍କର ସଂକଳନର ଶେଷ ସ୍ତରରେ ଉପନୀତ ହେବାପାଇଁ ପର୍ଯ୍ୟାପ୍ତ ପରିମାଣରେ ଆର୍ଥିକ ସହାୟତା, ସୁଦକ୍ଷ ସହୋଯୋଗୀ ଓ ସହାୟକ ମାନଙ୍କର ସାହାଚାର୍ଯ୍ୟ, ସରକାରୀ ପୃଷ୍ଠପୋଷକତା ଏବଂ ସର୍ବୋପରି, ପୁସ୍ତକ ବିକ୍ରେତା ମାନଙ୍କର ଅକୁଣ୍ଠ ଆଗ୍ରହ ଶାଳିତା ସଦାସର୍ବଦା ଦେବ ଦେବ ଜଗନ୍ନାଥଙ୍କ କୃପାରୁ ମିଳୁଥାଉ ବୋଲି ପ୍ରାର୍ଥନା କରୁଛି ।

ପରିଶେଷରେ, ମୁଁ ବିନୋଦବିହାରୀ ବାବୁଙ୍କୁ ମୋର ଶୁଭଆଶୀର୍ବାଦର ରତ୍ନ ମୁକୁଟରେ ମଣ୍ଡିତକରି, ତାଙ୍କର ଉଦ୍ୟମକୁ ବିଜୟଶ୍ରୀ ମଣ୍ଡିତ କରିବା ପାଇଁ, ଉତ୍କଳଭାରତୀ ରୂପେ ଚିର ପରିଚିତା ମା' ସାରଳା ଚଣ୍ଡୀଙ୍କୁ, ପ୍ରଣତି ପୂର୍ବକ ପ୍ରାର୍ଥନା କରିବି ଯେ, ତାଙ୍କର ଏହି ସେବକ ପ୍ରବର, ତାଙ୍କ କୃପା ବଳରେ ଯଶସ୍ୱୀ ହୁଅନ୍ତୁ । ସୃଷ୍ଟି ସମ୍ଭାରରେ ଉତ୍କଳଭୂମିକୁ ଗୌରବମୟୀ କରନ୍ତୁ ଏବଂ ଯୁଗ ଯୁଗ ଧରି ଯଶୋବନ୍ତହୋଇ ଓଡ଼ିଆଭାଷା ଏବଂ ଓଡ଼ିଆ ଜାତିକୁ ବହୁଜନ ବନ୍ଦିତ କରି ରଖିବା ପାଇଁ ଆଜୀବନ କର୍ମମୁଖର ହୋଇ ରହନ୍ତୁ । ଅଳମତିବିସ୍ତରେଣ ।

**ଗୌରୀ କୁମାର ବ୍ରହ୍ମା**

**ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି**
ସାଧାରଣ ସମ୍ପାଦକ,
କଳା ବିକାଶ କେନ୍ଦ୍ର, କଟକ

# ଟେକା ଟେକି ନାଇଁ

ପଚାଶ ବର୍ଷରୁ ବହକା କାଳରୁ ମୁଁ ତାକୁ ଜାଣେ । ମନ ପେଟରାରେ ଗୁଡ଼ାଏ ଥୁଆ ସାଇତା ପୁଟୁଳି ଭିତରୁ 'ବିନୋଦ ପୋଥି' ଟି ଓଜନିଆ । 'ବିନୋଦ' ବୋଲି କହୁଛି କାରଣ ଆମେ ନାଗ-ପାଟ ବଅସିଆ । କଲେଜ ପଢ଼ାବେଳେ ସମସ୍ତେ ଆମକୁ ଯୋଡ଼ି ନାଆଁରେ ଡାକୁଥିଲେ 'କ୍ଷୀରୋଦ-ବିନୋଦ' ନହେଲେ 'ବିନୋଦ-କ୍ଷୀରୋଦ' । ଯାଉଁଳି ନାଆଁରେ ଆଜିଯାଏ ବି ପୁରୁଣା ସାଥୀମାନେ ଡାକନ୍ତି ।

ଦିହିଁଙ୍କର ମନମୁନ ଏକାଠେଇଁ । ମୁଁ ଥେଟର କରୁଥିଲି ଏଣୁ ସିଏବି ଆରମ୍ଭ କରିଦେଲା ଥେଟର-ଭଲ ପାଟିୟର ହୋଇପାରିଲା । ଦରକାରୀ ଅଦରକାରୀ ଭାବେ ଘରୋଇ ମାଷ୍ଟର ସେ ଥିବାର ଦେଖି ମୁଁ ବି ଗୁଡ଼ାଏ ଅଦରକାରୀ ଘରକୁ ଯାଇ ପଢ଼ଉଥାଏ । ସିଏ ଆଉ ମୁଁ ଗୋଟିଏ ବିଡ଼ିକୁ ଟାଣୁ । ବାରିପଦାରୁ ଫେରିଲେ ଛୋଟ ବିଡ଼ି ସିଏ ଆଣିଥାଏ କିଛିଦିନ ଚଳିଯାଏ କିନ୍ତୁ ଏହାତ ସେହାତ ହୁଏ ନାହିଁ । କେତେବେଳେ ସିଏ ଆମ ଘରେ ତ ଅନ୍ୟକେତେବେଳେ ମୁଁ ତା' ମେସ୍‌ରେ ଏବଂ ଶେଷବେଳକୁ ରେଭେନ୍ସା କଲେଜ ମଧ୍ୟରେ ଥିବା ଓଡ଼ିଶା ବିଧାନସଭା କକ୍ଷ କଡ଼ରେ 'ଗଣିତ ସେମିନାର' ରେ ରହିଲୁ । ରାତି ଖାଇସାରିବା ପରେ ଷ୍ଟେସନକୁ ଯିବା ମୁକର, ଓଲମ ବିଲମ ନଥାଏ । ବିପଦ ଆପଦ ବେଳେ ଜଣେ ଆଉଜଣକୁ ସାହା । ଅକାଳେ ସକାଳେ କେବେ କାହା ସହ ପାଟିତୁଣ୍ଡ ହେଲେ ଆଉଜଣେ ଉହୁଙ୍କି ଆସିବ । କେଡ଼େ ବଡ଼ ବଳ- କେତେ ଶରଧା ।

କେତେ ଗାଥା, ଗୁଡ଼ାଏ କଥା ମନରେ ଗୁଛାହୋଇ ରହିଛି । ସବୁ ଗାଇଲେ ବୁକେଇ ଯିବ । ତା' ବାଦ ଥାନ, ଅଥାନ ବୁଝି ସମଝି ବେଳକାଳକୁ ସୁହାଇଲା ଭଳି କିଛି କହିଲେ ଭଲ । ଲ'କଲେଜରେ ପଢିଲା ବେଳକୁ ବିନୋଦ ରାଣୀହାଟ ହିନ୍ଦ୍‌ସିନେମା ପାଖ କେନାଲ କଡ଼ର ସେତେବେଳର ''ପାରାଡ଼ାଇଜ ହଲ''ରେ ରହୁଥାଏ । ଏହି

ଆସ୍ଥାନର ମହିମା ଥିଲା । ସାଙ୍ଗ ସାଥିଙ୍କର ଭିଡ଼ ସବୁବେଳେ । ସତେ ଅବା ଆଖଡ଼ା ଘର । ଏହି ଆଖଡ଼ା ଘରୁ ଓଡ଼ିଶାର ବହୁ କୃତିବିଦ୍ ସନ୍ତାନ ଯଥା:- ୰ ନିଳକଣ୍ଠ ରଥ, ଓରଫ କଣ୍ଠ ଭାଇନା, ଓଡ଼ିଶା ଆସେ ମବିଲ ସେକ୍ରେଟାରୀ, ୰ ଜୟକୃଷ୍ଣ ପଟ୍ଟନାୟକ, ଓରଫ ଜୟୀଭାଇ, ଓଡ଼ିଶା ରୋଡ୍‌ଟ୍ରାନ୍ସପୋର୍ଟ କମ୍ପାନୀର ଜେନେରାଲ ମେନେଜର ଓ ଆହୁରି ଅନେକଙ୍କର ଆର୍ବିଭାବ ହୋଇଥିଲା । ତନ୍ମମଧ୍ୟରୁ ନୂଆ ହୋଇ ଆସିଥିବା ରାଇରଙ୍ଗପୁରରୁ ଶ୍ରୀ ଧୀରେନ୍ଦ୍ର ନାଥ ପଟ୍ଟନାୟକ ଏଇଠି ରହି କଟକରେ ପ୍ରଥମେ ନାଚିଲେ, ସମସ୍ତଙ୍କ ନଜରକୁ ଆସିଲେ ପରେ ନା ଡ଼ାକ କହିଲେ ନ ସରେ । ବାରିପଦାରୁ ସେହିପରି ଶ୍ରୀ ଅତିସ କୁମାର ମଜୁମଦାର ଓରଫ ମିଣ୍ଟୁ ଆସି ପ୍ରଥମ ଥର ପାଇଁ ଗୀତ ଗାଇଥିଲେ । ଯେଉଥିରୁ ସେ ଉଠିଲେ । ଏଇ ''ପାରାଡ଼ାଇଜ'' ଅନେକଙ୍କ ପାଇଁ ସିଡିବା ପାହାଚ ହୋଇଛି । ଏବେ ଓଡ଼ିଶାର ଜଣେ ଜଣେ ଓଡ଼ିଶା ମଶାଲ ଖମ୍ବ ।

ପୁଣି ଏଇ ''ପାରାଡ଼ାଇଜ'' ରେ ଥିଲା ବେଳେ ବିନୋଦ ଓଡ଼ିଶାର ପ୍ରଥମ ଓ ପ୍ରଧାନ ଚାଟାର୍ଡ଼ ଏକାଉଟେଣ୍ଟ ୰ହୃଦୟାନନ୍ଦ ନାୟକଙ୍କ ପାଖକୁ ଯିବା ଆସିବା କରୁକରୁ ସେ ତାକୁ ସୁଖ ପାଇ ତା' ପେଟା ପାଟଣା ବେଉସାରେ ସାହା ଭରସା ହେଲେ । ''ପାରାଡ଼ାଇଜ'' ର ମାଲିକ ୰ସୁରେନ୍ଦ୍ର ନାଥ କାନୁନଗୋ, ୰ହୃଦୟାନନ୍ଦ ନାୟକ । ଦୁହେଁ ଥିଲେ ବିନୋଦ ପାଇଁ ''କୁମ୍ଭାରଚକ'' । ''ପାରାଡ଼ାଇଜ କାଣ୍ଡ'' ର କଥା ଏତିକିରେ ବଢେଇ ଦଉଚି । ଆଉ ସବୁ ବଖାଣି ବସିଲେ ସରିବ ନାଇଁ ।

ଘଷାମଜା କରି ରଖିଲେ ସବୁ ଝଟକୁଥିବ । ଆଡ଼େଇ ଦେଲେ, ଅଦରକାରୀ ପୁରୁଣା କାଳିଆ ବୋଲି ଫୋପାଡ଼ି ଦେଲେ ଧୂଳି, ମାଟି, ପାଣି ପବନରେ କୋତରା ହେଇଯିବ । ଆଗର ରଙ୍ଗମଉଜ ଅଛି ନା କୁଆଁର ପୁନେଇ ସଜ ଅଛି ? ପୁଚି ଖେଳଟା ଏଇନେ ଅସନା । ଚକୁଳି, ଆରିସା, ପୋଟଳୀ, ଛୁଞ୍ଚିପତର, କାକରା ସବୁ ମରହଟିଆ କାଇଁକି ନା ଏଇନାକୁ ଗଢ଼ି ଆସିବ ନେଇଁ କି ବାଢ଼ି ଆସିବ ନେଇଁ, ସେଇମେତି ଆମ ବୋଲି, ଢ଼ଗ ଢ଼ମାଳି, ଆଇମା ଗପ, ଝିଅ ବୋହୂ କାନ୍ଦଣାର ଆଉ ଚଳଣି ନାହିଁ । ନୂଆ ପିଢ଼ିର, ନୂଆ ରଙ୍ଗଢ଼ଙ୍ଗ ଚାଲିଚଳନ, ବେଶ ପାଟୁକା, ଖେଳ ମେଳ, ସଜ ମଉଜ ଏମିତି ଅନୁକରଣିଆ ବାଟ ଧରିଚି ଯେ ଆଗକୁ ଆଗକୁ କୋଉ ଗଢ଼ଣ ହବ କହି ହେଉନେଇଁ । ଏବର ଫନ୍ଦିଫିକର,ଧାଁ ଦଉଡ଼, ଗୋଳ କୁହାଟ ଭିତରେ ସଭିଙ୍କର ବାଟବଣା ହେଇ ଅରମାରେ ପଶି ଯିବା ମୁକର । ପୁରୁଣା କଥା ପାଶୋରି ଦେଲୁଣି । ଅଙ୍ଗରେଜି ନାନାବାୟା **ଗୀତଟିଏ** ବୋଲିଦେଲେ ବାପମା ଖୁସୀ, ଘରେ, 'କେକ୍'ଟିଏ ହେଲେ ଘରଣୀର **ଛାତି ଚୁଲେଗୋଟ ।**

ଏ ଗୁଡ଼ାକୁ ନିଘା କରି ଯାହାର ମନ କତୁରେଇହୁଏ । ବାଙ୍ଗୁଆ କୋହ ଯାହାର ଆଖି କୋଣର ଲୁହ ଭଳି ନିଗିଡ଼ି ଆସେ ସିଏ ହେଲା 'କ୍ଷୀରୋଦ-ବିନୋଦ' ଯୋଡ଼ିର ସରସାପଟ ବିନୋଦ । ସେ ଯୁଝିଚି, ଜିତିଚି, କମେଇଚି, ଗମେଇଛି । ସେ ମୂଳରେ ଥିଲା ଶ୍ରୋତା, ତା'ପରେ ଅଭିନେତା, ଅଧିବକ୍ତା, ନେତାରୁ ଉଠି ହେଲାଣି ଲୋକ ସାହିତ୍ୟର ସଙ୍କଳୟିତା । ଏତେ ସଅଳ ସଅଳ ସିଏ ବଦଳି ଯାଉଛି ଗୋଟିକରୁ ଆରଟିକୁ ।

ଏଇନେ ମନ ବଳେଇଛି କିଛି ଚିହ୍ନ ଛାଡ଼ିଯିବାକୁ । ଥୋକେ ଧନ ସାଇତନ୍ତି ତ କିଏ ଯଶ ସଞ୍ଚେ କିନ୍ତୁ ବିନୋଦ ଯା' ରଖି ଯାଉଚି ସେଇଟା ନିଆରା । ପୋତାଧନ କି ରତ୍ନପଥର ଖୋଜିବା ପେଇଁ ସିଏ ଖୋଳୁନାଇଁ, କିନ୍ତୁ ଖୋଜୁଛି, ଅନିଷା ରଖିଛି, ଟାକି ବସିଛି, ଧଣ୍ଡପାଟ ପରି ଖେଦି ଯାଉଚି, ଖାଲି ଓଡ଼ିଶା ନୁହେଁ ଦେଶସାରା ପଚାରୁଚି, ବିଚାରୁଚି, ପରଖୁଚି ଶେଷକୁ କାମିକା ମଣିଲେ ଅଣ୍ଟିରେ ପୂରଉଚି ସବୁ ସାଉଁଟା ସାଉଁଟି ପରେ ଠୁଳକରି ଓଳିଆରେ ଆଗ ବନ୍ଧା ହବ ତେଣିକି ବେଳକାଳ ଦେଖି ଖୋଲିବ-ତଳେ କୁଢ଼େଇ ଝଡ଼ା ଝଡ଼ି ବଛା ବଛି ପରେ ଛାପିବ **ସାରଳା ରତ୍ନଭଣ୍ଡାର ରସସାଗର** ଖଣ୍ଡ ଖଣ୍ଡ କରି । ଟିକିଏ ବୋଲି ଥକା ନାଇଁ, ଅସକତିଆ ନାଇଁ, କାଳେ ଉଛୁର ହେଲେ କିଛି ଚପିଯିବ ।

ସବୁରି ତୁଣ୍ଡରେ ଗୋଟିଏ କଥା ଏବକୁ ଆଉ ଆଗର ଛାନ୍ଦ, ଚମ୍ପୂ, ଜଣାଣ ଭଜନ ନାହିଁ-ବେଢ଼ଙ୍ଗିଆ ଲେଖାକୁ ଅଜାତିଆ ସ୍ୱର, କାନ ମାରା ହେଇଗଲାଣି । ହେଲେ କେଇ ଜଣ ମାତବରିଆ ବାହାରି କିଛି କରୁଚି ? ସେଇମିତି ଢ଼ଗ ଢ଼ମାଳି ଯୋଖି, ମନକୁ ରଞ୍ଜେଇ ଟାହି ଟାପରା କି ମୁହଁ ଛିଞ୍ଚଡ଼ା ଉଲୁଗୁଣା ପଦ ସବୁ ପାଶୋରି ଯାଉଛି । ବେଳେ ବେଳେ ଯୋଗା ଲୋକ କିଛି କଲମ ମୁନରେ ଲେଖି ସାଇତା କରି ଯାଉଛନ୍ତି । ସେଗୁଡ଼ା ପୋଥି ବାଇଗଣ ଭଳି ଲାଗିବାରୁ ଏଇନେ ପୋକରା ସରି ହେଲାଣି ।

ଏତିକି ବେଳକୁ ବିନୋଦ ସବୁ ଭଳି ଭଳିକିଆ ପୁରୁଣା କଥା, ପଦ, ଗୀତ, ବୋଲି ଗୁଡ଼ାକ ଉପରୁ ଧୂଳିମାଟି ପୋଛି 'ବର୍ଣ୍ଣମାଳା' କାଇଦାରେ ଛପଉଛି । ସତରେ କେଡ଼େ ବଡ଼ କାମଟାଏ ସେ ନ କରୁଚି ଭଲା । ଏଇନେ ହୁଏତ ତା ବହି ପଢ଼ିବାର ଯଜମାନ ନାହାନ୍ତି କିନ୍ତୁ ପୁରୋହିତ ସାଜି ବିନୋଦ କଅଣ ଯେ ଗନ୍ତାଘରେ ପୁରାଣ ସାଇତି ଯାଉଛି ଦିନେ ଦରିଆପାରିର କୋଉ ଗୁଣିଆ ହାବୁଡ଼େ ପଡ଼ି ଚମକାଣିଆ କିଛି ପରଶଂସା, ବାହାବା ମିଳିବା ପରେ ଆମ ଶୋଇବା ଲୋକଙ୍କ ଆଖି ଖୋଲିବ ।

ହୋବ ପଶିବ । ଏଇନେ ଆମ ନିଜ ଲୋକ ଜଳକା ହେଇ ବାଟବଣା । ଦେଖାଶିଖା ଢ଼ଙ୍ଗରେ ବଢ଼ି ଅନ୍ୟ ସହିତ ସରି ହେବାକୁ ଢ଼େଉଁଚନ୍ତି ଯେ ମଥାନକୁ ପହଞ୍ଚି ପାରୁନାହାନ୍ତି ।

କଣ ଆଉ କହିବି ବିନୋଦ- ନେହୁରା ହଉଚି ଖାତିର କରନା ନିଜର ପଣକୁ ଟାଣ କର । ସେଥିରେ ଏଇନେ ଗାଦି କି ମୁକୁଟ ପାଇବ ନାହିଁ ସତ, ହେଲେ ତମର 'ଖଣ୍ଡ' ମାନଙ୍କରେ ଯୋଉ ଉକୁଟ ମୁଦି ଦେଇ ଯାଉଛ, ସେଗୁଡ଼ିକ **ସାରଳା ରତ୍ନଭଣ୍ଡାର ରସସାଗର** ନୁହେଁ ଯେ **ସାରଳା ଅମୂଲ୍ୟ ରତ୍ନ ଭଣ୍ଡାର ରସପୂର୍ଣ୍ଣ ସାଗର** ।

ତେବେ ଏଇଠି ଟିକେ ମନ ଦୋ ଘାଇରେ ପଡୁଚି । ବିନୋଦ ପୁଣି 'ଉପନ୍ୟାସ' ଲେଖି ବସିଲା କାହିଁକି ? ଢ଼ଗ ଢ଼ମାଳି ସାଉଁଟା ଜିନିଷ ଭିତରୁ କାହାର ଛିଟା କି ବୋଳ ଆଙ୍ଗୁଠିରେ ନେସି ହୋଇ ଯାଇଛି । ହୁଏତ କଲମ ମୁନରେ ସେ ରଙ୍ଗକୁ ଝରେଇ ଦେଲେ ମନର ଅରମାନ ମେଣ୍ଟିବ- 'ଉପନ୍ୟାସ' ଛାପିବା ନିଶାରୁ । ତା'ର ଭାଷା ନିଆରା- ସବୁ ଚଳନ୍ତି ବୋଲି ମନକୁ ଛୁଇଁବ କାରଣ ତମ ଆମ ନିତି ଦିନିଆ ଘଟଣା, ଅଘଟଣ ଆପଣାର ମନେହେବ- ମଉଜିଆ ଲାଗିବ କାରଣ ତାର 'ସହ-ବାସ' ଉପନ୍ୟାସଟି ମଧୁରିଆ ହେଇଚି । ଭାବେ 'ଉପନ୍ୟାସ' ଲେଖିବାର ଇଲମ ସେ କେମିତି କୋଉଠୁ ପାଇଲା । ପୁଣିଭାବେ ନାଇଁ ପାଇନାଇଁ ଯେ ମନ ଭିତର ତଳଛୁଆଁ ଅଙ୍ଗେଲି ଲିଭାଇବା, ନିଜେ ଶୁଣିଥିବା ଜାଣିଥିବା ଅନୁଭୂତି ଗୁଡାକ ଅସଜଡ଼ା ହୋଇ ଖୁନ୍ଦି, ଛନ୍ଦି ନ ହୋଇ ସଜ, ସଳଖ ଭାବେ ଛାପିଦେଲେ ପର **ପିଢ଼ି ପା**ଇଁ ଦିଗବାରିଣୀ ହେଇ କାଳ କାଳକୁ ରହିଯିବ ।

ସାଙ୍ଗଟାଏ ତ, ବେଶୀ ଟେକା ଟେକି କରି ଲେଖିଲେ ତା'ର ଗର୍ବ ହବ, ତେଣୁ ଏଇ ଲେଖାର **'ହାର'** ପିନ୍ଧେଇ ଦଉଚି, ତା' ହେଲେ ପ୍ରତି ଜୟରେ ସେ **'ହାର'** ହାରିଯାଇଛି ବୋଲି ମନେ କରି ଜିତିବା ପାଇଁ ଆହୁରି ଆହୁରି ଆଗକୁ ଧାଇଁବ ।

**ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି**

# ଗ୍ରନ୍ଥପ୍ରବେଶ

ଜୀବନର ଉପଭୋଗ୍ୟ ମୁହୂର୍ତ୍ତ ଯୌବନ ଦୀପ୍ତ ଯୁବାକାଳ ଏହାର ପ୍ରାରମ୍ଭିକ ସୋପାନରେ ପାଦ ଥାପିଲା ବେଳକୁ ଚରମ ପୀଡ଼କ ଗରିବି ଧୂମକେତୁ ଭଳି ମୋ ଆଗରେ ଉଭା ହେଲା । ଧୂମକେତୁର ଉଦ୍‌ବାୟୀ ଛାୟାପଥରେ ମୋତେ ଚତୁର୍ଦ୍ଦିଗ ଧୂମ୍ରମୟ ଦିଶିଲା । ଆର୍ଥିକ ଅନଟନର ଶିକାର ହୋଇ ମୁଁ ଅସ୍ତବ୍ୟସ୍ତ ହୋଇପଡ଼ିଲି । ପେଟପୂରା ଗଣ୍ଡେ ଖାଇବାକୁ ପାଇଲି ନାହିଁ । ବଞ୍ଚିରହିବା ପାଇଁ ଦ୍ୱାର ଦ୍ୱାର ବୁଲିଲି । ମୁଣ୍ଡଗୁଞ୍ଜିବାକୁ ଚାଳଖଣ୍ଡେ ନାହିଁ । ପର ଓଳି ତଳେ ମୁଣ୍ଡ ଗୁଞ୍ଜିଲି । ବୃତ୍ତିଗତ ଜ୍ଞାନ ଅର୍ଜନ କରି ମଧ୍ୟ ସମାଜରେ ଅବହେଳିତ ତଥା ଲାଞ୍ଛିତ ହେଲି । ଦକ୍ଷତା ଥିଲେ ମଧ୍ୟ ସକଳ ଦୀପ୍ତି, ସ୍ୱଭାବ, ପରାକାଷ୍ଠା ଗରିବିର ଅପଘାତରେ ନେହିନପତ ହୋଇଗଲା । ଶରଶଯ୍ୟାରେ ଶାୟିତ ଭୀଷ୍ମଦେବ ସୂର୍ଯ୍ୟୋଦୟକୁ ପ୍ରତୀକ୍ଷା କରି ମୃତ୍ୟୁ ଯନ୍ତ୍ରଣାରେ ଯେଭଳି ଛଟପଟ ହେଉଥିଲେ, ଦାରିଦ୍ର୍ୟର ଅସହ୍ୟ ପୀଡ଼ନରେ ମୁଁ ମଧ୍ୟ ତଦ୍‌ରୂପ କଲବଲ ହୋଇ ନିରାଶାର ଅନ୍ଧକାର ପଥରେ ଅସହାୟ ଅବସ୍ଥାରେ ସମୟ ଅତିବାହିତ କରିବାକୁ ଲାଗିଲି । ଚତୁର୍ଦ୍ଦିଗରେ ଗରିବିର କରାଳଛାୟା ମୋତେ ରନ୍ଧି ଅଣନିଃଶ୍ୱାସୀ କରିଦେଲା । ମୁଁ ହତକମ୍ପ କିଂକର୍ତ୍ତବ୍ୟବିମୂଢ଼ ଅସହାୟ ଅବସ୍ଥାରେ ମହାଶୂନ୍ୟକୁ ଅପଲକ ନୟନରେ ଚାହିଁ ରହିଲି । ଚଳଚଞ୍ଚଳ ସଂସାର ସ୍ଥିର ହୋଇଗଲା ପରି ଲାଗିଲା । ସେତିକି ବେଳେ ମୋ କର୍ଣ୍ଣ କୁହରରେ ବାରମ୍ବାର କେହି ଯେପରି କହିବାକୁ ଲାଗିଲା- 'ରେ ମୂଢ଼, ଦାରିଦ୍ର୍ୟର ରଥଚକ୍ର ତଳୁ ନିଜକୁ ବଞ୍ଚା । ଧନବାନ ବ୍ୟକ୍ତି ସମସ୍ତଙ୍କ ମଧ୍ୟରେ ବଡ଼ବୋଲି ବିବେଚିତ ହୁଅନ୍ତି । ଧନହୀନ ହେଲେ ଦେବରାଜ ଇନ୍ଦ୍ର ପରି ବ୍ୟକ୍ତି ମଧ୍ୟ ଅନାଦୃତ ହେବା ପରୀକ୍ଷିତ । ଧନବାନ୍ ବ୍ୟକ୍ତି କୃପଣ ହେଲେ ମଧ୍ୟ ତାଙ୍କୁ ଯାଚକମାନେ ଛାଡ଼ନ୍ତି ନାହିଁ । ସେ ବିରୂପ ହେଲେ ବି ସୁରୂପ ଭାବରେ ଗୃହୀତ ହୁଅନ୍ତି । ସେ ଅକୁଳୀନ ହୋଇଥିଲେ ମଧ୍ୟ କୁଳୀନଠାରୁ ଉଚ୍ଚସ୍ଥାନ ଅଧିକାର କରନ୍ତି । ତେଣୁ ନିଜକୁ ଅମର ଭାବି ଧନ ଉପାର୍ଜନ କରି ତାକୁ ବର୍ଦ୍ଧିତ କର । ଧନ ଉପାର୍ଜନରେ କଦାଚିତ୍ ସନ୍ତୁଷ୍ଟ ହୁଅନାହିଁ । ଅନ୍ୟଥା କଲେ ଧନ ହାନି ଘଟିବ । ସମସ୍ତ କାର୍ଯ୍ୟ ଧନ ସାହାଯ୍ୟରେ ହିଁ ସମ୍ପନ୍ନ ହୋଇଥାଏ । ସମସ୍ତେ ଧନର ବଶ । ସାରା ସଂସାର ଧନ ପଛରେ ଗୋଡ଼ାଉଛି । ଅର୍ଥର ପ୍ରାଚୁର୍ଯ୍ୟକୁ ସ୍ୱାଗତ କରିବା ପାଇଁ ଲାଗିପଡ଼' ।

ଏହି ଐଶୀନାଦ ମୋର ନାଦାନି ଶରୀର ଓ ମନରେ ବିଜୁଳି ଚମକ ପ୍ରାୟେ ଖେଳିଗଲା । ଧନ ଉପାର୍ଜନର ବଳବତ୍ତର ଇଚ୍ଛା ମୋ ଭିତରେ ବିକଶିତ ହୋଇ ପ୍ରଚଣ୍ଡ

ରୂପ ଧାରଣ କଲା । ତେଣିକି ଆରମ୍ଭ ହେଲା ମୋର ଅର୍ଥ ଆହରଣର ପର୍ବ । ଆତ୍ମୀୟ ସ୍ୱଜନ, ପ୍ରିୟପରିଜନ, ବନ୍ଧୁବାନ୍ଧବ, ଘରସଂସାର, ପ୍ରିୟାପ୍ରୀତି ସମସ୍ତଙ୍କୁ ପରିହାର କରି ଅର୍ଥ ଉପାର୍ଜନ ପଛରେ ଅଣନିଃଶ୍ୱାସୀ ହୋଇ ଧାଇଁଲି । ଅଳ୍ପକାଳ ମଧ୍ୟରେ ଧନ ସମ୍ପଦ ଏବଂ ପ୍ରତିପତ୍ତି ପ୍ରାପ୍ତ ହେଲା । ତଥାପି ସନ୍ତୁଷ୍ଟ ନ ହୋଇ ନିଜକୁ ଅମର ଭାବି ଅର୍ଥ ଉପାର୍ଜନ କରି ଚାଲିଲି ।

ଲୋକ ପ୍ରବାଦ ଅଛି ଯେ, କୌଣସି ପୁରୁଷ ସହିତ ରମଣ ସକାଶେ ସ୍ୱଇଚ୍ଛାରେ ଆସିଥିବା ସ୍ତ୍ରୀକୁ ପ୍ରତ୍ୟାଖ୍ୟାନ କଲେ ସେ ପୁରୁଷକୁ ଅଭିଶାପ ଦିଏ । ସେହିପରି ଐଶ୍ୱର୍ଯ୍ୟ ସ୍ୱୟଂ ଉପସ୍ଥିତ ହେଉଥିଲା ବେଳେ ତାକୁ ଉପେକ୍ଷା କରିବା ଅଭିଶପ୍ତର ଲକ୍ଷଣ ।

କେବଳ ସେତିକି ନୁହେଁ, ପ୍ରଚୁର ଅର୍ଥ ଉପାର୍ଜନ ସାଙ୍ଗକୁ ଲଗାମଛଡ଼ା ଖର୍ଚ୍ଚ କରି ବିଳାସ ବ୍ୟସନରେ ଉବୁଟୁବୁ ହେବାକୁ ଲାଗିଲି । ଭୁଲିଗଲି ଏହା ଧନହାନିର କାରଣ । ବିପଥଗାମୀ ହୋଇ ପଡ଼ିଥିବା ବେଳେ ଐଶୀ ଆଶୀର୍ବାଦ ଲବ୍ଧ ଐଶ୍ୱର୍ଯ୍ୟ ମଧ୍ୟ ଯେ ମଣିଷକୁ ପୁଣି ପିଶାଚ ନ କରି ଛାଡ଼େ ନାହିଁ, ତାହା ମୁଁ ମର୍ମେ ମର୍ମେ ଉପଲବ୍ଧି କଲି । ପରିବର୍ତ୍ତନ କଠୋର, କିନ୍ତୁ ଉପାୟ ନାହିଁ । ମିଥ୍ୟା, ଦମ୍ଭ, କାମ, କ୍ରୋଧ, ଗର୍ବ, ସ୍ପର୍ଦ୍ଧା, ଲମ୍ପଟତା, ଅହଙ୍କାର, ଭେଦବୁଦ୍ଧି, ବୈରାଚରଣ, ଅବିଶ୍ୱାସ, ଜୁଆ, ମଦ୍ୟପାନ, ହିଂସା, ଚୋରି ଏହି ୧୫ ପ୍ରକାର ଅନର୍ଥ ଯେ ଅର୍ଥ ଯୋଗୁଁ ପ୍ରାପ୍ତ ହୁଏ, ଏହା ମଧ୍ୟ ଅନୁପଲବ୍ଧ ରହିଲା ନାହିଁ । ସେଥିପାଇଁ ପୂର୍ବସୁରୀମାନେ କହିଯାଇଛନ୍ତି-

ଧନେ ବଢ଼ିବ ମାନ
ଧନେ ହରିବ ଜ୍ଞାନ
ସେ ଧନ ନେବଟି ଏ ଜୀବନ ।

ଉଦ୍‌ଶୃଙ୍ଖଳ ମନ ଆଲୋଡ଼ିତ ହେଲା । ମୁଁ ତ୍ରସ୍ତ ବିତ୍ରସ୍ତ ହେଲି । ଅଶାନ୍ତ ମନକୁ ଲଗାମ ଦେବାପାଇଁ ତତ୍ପର ହୋଇଉଠିଲି । ଉପାର୍ଜିତ ଅର୍ଥୋପଯୋଗର ଉପାଖ୍ୟାନାନ୍ୱେଷୀ ମନ ଉଦ୍‌ବେଳିତ ହେଲା । ଜୀବନର ପ୍ରତିଟି ସୋପାନରେ ଯେଉଁ ଅନାଥ ଅକିଞ୍ଚନ ଅନାଶ୍ରିତକୁ ଅଦୃଶ୍ୟ ଶକ୍ତିର ଆଶିଷ ମିଳିଛି, ଘୋର ତମସା ରୂପକ କୁହେଳିକା ମଧ୍ୟରେ ଲକ୍ଷ୍ୟହୀନ ଭାବେ ସନ୍ତରଣ କରୁଥିବାବେଳେ ଯାହା ପ୍ରତି ଐଶୀ ଆଜ୍ଞା ଆଶିଷର କାର୍ପଣ୍ୟ ନାହିଁ, ତାକୁ ଅବା ସଦ୍‌ବୁଦ୍ଧି, ସତ୍‌ଚିନ୍ତା ନିମିତ୍ତ ଉପାୟର ଖୋରାକ ନିଅଣ୍ଟ ହୁଅନ୍ତା କିପରି !

ଜୀବନ ବୋଇତର ଗତିପଥ ବଦଳାଇବାର ପ୍ରୟାସ ଜାତ ହେଲା । ୧୫ଟି ଯାକ ଅନର୍ଥଠାରୁ ଦୂରେଇବାର ପ୍ରଚେଷ୍ଟା କ୍ରମେ ସଫଳକାମ ହେଲା । ପରିବର୍ତ୍ତନର ପ୍ରବଳ ସ୍ରୋତରେ ନିଜକୁ ଭସାଇ ଦେଇ ନୂତନ କୂଳକିନାରା ଠାବ କରିବାକୁ ଆସିଲି ।

ଆକସ୍ମିକ ଭାବେ ଓଡ଼ିଆ ସାହିତ୍ୟ ସାଧନାର ଅସରନ୍ତି ଦୂରନ୍ତ ଅଭିପ୍ରାୟ ମନରେ ଦୃଢ଼ାସୀନ ହେଲା । ଲୁପ୍ତପ୍ରାୟ ଓଡ଼ିଆ ଢ଼ଗଢ଼ମାଳିର ଗୁରୁତ୍ୱ ଏବଂ ଲୋକପ୍ରିୟତାକୁ ବଜାୟ ରଖିବାକୁ ଯାଇ ଆରମ୍ଭ କଲି ଓଡ଼ିଆ ସାହିତ୍ୟର ସାରସ୍ୱତ ସାଧନା । ମା' ସାରଳାଙ୍କର ପ୍ରତ୍ୟକ୍ଷ ଆଶିଷରୁ ଲେଖି ବସିଲି-

ଢ଼ମାଳି କରି ଗୀତ ପଦେ ଗାଇ
ଥୟ କରି ନାବ ନେଉଛି ବାହି ।

ଦୋଦୁଲ୍ୟମାନ ମନରେ ଆଶାର ଝଲକ ଖେଳିଗଲା । ପ୍ରଖ୍ୟାତ ଆଇନଜୀବୀ, ଓଡ଼ିଶାର ଭାଷାକୋଷ ପ୍ରଣେତା, ଢ଼ଗ ସମ୍ରାଟ ଗୋପାଳ ଚନ୍ଦ୍ର ପ୍ରହରାଜ, ଲୋକରତ୍ନ ଡ଼କ୍ଟର କୁଞ୍ଜ ବିହାରୀ ଦାଶ, ଚକ୍ରଧର ମହାପାତ୍ର ପ୍ରମୁଖଙ୍କ ପଦାଙ୍କ ଅନୁସରଣ କରିବା ପାଇଁ ପ୍ରୟାସୀ ହେଲି । ବିଲୁପ୍ତ ପ୍ରାୟ ଢଗଢମାଳି, ବଚନ, ଲୋକକଥାର ଉତ୍କର୍ଷ ସାଧନ ପାଇଁ ଦୃଢ ସଂକଳ୍ପ କଲି । ସୁଜ୍ଞାନୀ ପାଠକ ମଣ୍ଡଳୀଙ୍କ ସମକ୍ଷରେ **ସାରଳା ରତ୍ନ ଭଣ୍ଡାର ରସସାଗର,** ୧ମ, ୨ୟ, ୩ୟ, ୪ର୍ଥ ପରେ **୫ମ** ଖଣ୍ଡ ଉପସ୍ଥାପନ କରିବାପାଇଁ ପ୍ରସ୍ତୁତ ହେଲି ।

ଜଣେ ଅଜ୍ଞାନ, ଅର୍ବାଚୀନ ଦ୍ୱାରା ସିଦ୍ଧ ହେଉଥିବା ସଙ୍କଳନ କାର୍ଯ୍ୟ ସଫଳତାର ମାପକାଠି ହିସାବରେ ଗ୍ରହଣ ଯୋଗ୍ୟ ନୁହେଁ । ତଥାପି ଦୈବାତ କେତେ କାର୍ଯ୍ୟ ଅଜ୍ଞାନ ଦ୍ୱାରା ସିଦ୍ଧ ଭାବରେ ସମ୍ପାଦିତ ହୋଇଥାଏ ।

ଜଣେ 'ଉଦାସୀନ ଗ୍ରନ୍ଥ କୀଟ' ବୋଲି କହି ମୋତେ ବ୍ୟଙ୍ଗୋକ୍ତି ବା କଟାକ୍ଷ କଲେ ମଧ୍ୟ ମୁଁ ତିଳେମାତ୍ର ବିଚଳିତ ହେବା ଜନ୍ତୁ ନୁହେଁ । କାରଣ ନିଜର କାର୍ଯ୍ୟସିଦ୍ଧି ପାଇଁ ମୋର ପ୍ରବଳ ଇଚ୍ଛାଥିବାରୁ ମୁଁ କସ୍ମିନକାଳେ ଉଦାସୀନ ନୁହେଁ । ପରନ୍ତୁ କାର୍ଯ୍ୟ ସିଦ୍ଧି ପାଇଁ ବିବିଧ ପ୍ରକାର ଚେଷ୍ଟା, ଶାରୀରିକ, ମାନସିକ ଓ ଆର୍ଥିକ ପଦକ୍ଷେପମାନ ନେଉଛି ଓ ନେଉଥିବି । କାରଣ କ୍ଷୀର ପାନ କରିବାକୁ ବାଛୁରୀ ତା' ମା'ର ପହ୍ନାକୁ ବାରମ୍ବାର ଆଘାତ ନ କଲେ ମା'ତାକୁ ସ୍ୱଇଚ୍ଛାରେ କ୍ଷୀରପାନ କରାଏ ନାହିଁ । ରତ୍ନରେ ଛିଦ୍ର ଥିଲା ଭଳି (ଅଛିଦ୍ର ରତ୍ନ ନାହିଁ), ବିଦଗ୍ଧ ମନୁଷ୍ୟଠାରେ ଦୋଷଥିଲା ଭଳି, ଅଜ୍ଞାନ ସଙ୍କଳୟିତାଙ୍କ ଦ୍ୱାରା ପ୍ରଣୀତ **ସାରଳା ରତ୍ନ ଭଣ୍ଡାର ରସସାଗର** ଗ୍ରନ୍ଥ ଦୋଷତ୍ରୁଟି-ଶୂନ୍ୟ ବୋଲି କହିବା ହାସ୍ୟକର ।

ସାରା ଜଗତରେ ପ୍ରତିଷ୍ଠା ପାଇଥିବା ବ୍ୟକ୍ତିବିଶେଷଙ୍କ ଜୀବନୀ ତର୍ଜମା କଲେ ଜଣାଯାଏ ଯେ ସେମାନେ ପ୍ରାୟତଃ ପ୍ରଜ୍ଞା ଯୋଗେ ପ୍ରସିଦ୍ଧିଲାଭ କରିଛନ୍ତି; ଆର୍ଥିକ ଦୃଷ୍ଟିରୁ ସେମାନେ ଊଣା ଅଧିକେ ଦୁର୍ବଳ ଅର୍ଥାତ୍ ଗରିବ । ଏପରି ମଧ୍ୟ ଦୃଷ୍ଟାନ୍ତ ଦେଖିବାକୁ ମିଳେ ଯେ ପ୍ରଜ୍ଞା ପାଇଁ ଅନେକେ ସେମାନଙ୍କର ଆର୍ଥିକ ସ୍ୱଚ୍ଛଳତାକୁ ମଧ୍ୟ ବର୍ଜନ କରି ଦାରିଦ୍ର୍ୟ ବରଣ କରିଛନ୍ତି । ଏହାର ନିର୍ଦ୍ଦିଷ୍ଟ କାରଣ ନିର୍ଦ୍ଦେଶ କରିବା କଠିନ । ତଥାପି ଏତିକି କୁହାଯାଇପାରେ ଯେ ଲକ୍ଷ୍ମୀ ସରସ୍ୱତୀଙ୍କ ବିବାଦ ପୁରାଣ ପ୍ରସିଦ୍ଧ । ଏଣୁ ସାଧାରଣତଃ ସରସ୍ୱତୀଙ୍କ ସାଧକମାନେ ଲକ୍ଷ୍ମୀଙ୍କ ଉପାସନା ପାଇଁ ପରାଙ୍ମୁଖ, ମାତ୍ର ସଙ୍କଳୟିତାଙ୍କ କ୍ଷେତ୍ରରେ ଏହି ସାଧାରଣ ନିୟମର ବ୍ୟତିକ୍ରମ ଘଟିଛି । ବସ୍ତୁତଃ ଉଲଂଘନ ହୋଇଛି । ବୃତ୍ତିଗତ କାରଣରୁ ଟିକସ ଆଇନଜୀବୀ ହୋଇଥିବାରୁ ଲକ୍ଷ୍ମୀଙ୍କ ଆରାଧନା କରିବା ବାଧ୍ୟତାମୂଳକ ହେଲେ ହେଁ ମା’ ସାରଳାଙ୍କ ଅପାର କରୁଣାରୁ ତାଙ୍କରି ଆଜ୍ଞାନୁବର୍ତ୍ତୀ ଓ ନିର୍ଦ୍ଦେଶନାରେ ସାରସ୍ୱତ ସାଧନାରେ ବ୍ରତୀ ହୋଇଛି । ସାରସ୍ୱତ ପୀଠରେ ମହାସରସ୍ୱତୀଙ୍କୁ ଉପାସନା କରିବାର ସୁଯୋଗ ପାଇ ଏହି ପରିଣତ ବୟସରେ ନିଜକୁ ଧନ୍ୟ ମଣି ଲକ୍ଷ୍ମୀ, ସରସ୍ୱତୀ ଓ ସାରଳାଙ୍କ ବନ୍ଦନା କରି ଗାଉଛି-

ନାହିଁ ମୋ ବୁଦ୍ଧି ବୃତ୍ତି,
ଭରସା ଲକ୍ଷ୍ମୀ ସରସ୍ୱତୀ ।
ଆବର ସାରଳା ଚରଣ,
ମା’ମୋର ଏକାନ୍ତ ତାରଣ ।

ମା’ ଲକ୍ଷ୍ମୀ ଓ ମା’ ସରସ୍ୱତୀ ଉଭୟଙ୍କ କରସ୍ପର୍ଶରେ ସଙ୍କଳୟିତାଙ୍କ ଭଳି ଜଣେ ଦରିଦ୍ର ଓ ଅଜ୍ଞାନ ପକ୍ଷରେ ଧନଧାନ୍ୟର ସୌଭାଗ୍ୟ ସହିତ ପ୍ରଜ୍ଞା ଉପଲବ୍ଧି କରିବାର ସାର୍ଥକତା କେତେ ଦୂର ସମ୍ଭବ ହୋଇଛି, ତାହା ଏହି ଗ୍ରନ୍ଥର ପାଠକ ପାଠିକାମାନଙ୍କର ବିଚାର୍ଯ୍ୟ ।

ଓଡ଼ିଆ ଭାଷାର ସମୃଦ୍ଧି ପାଇଁ ପର୍ଯ୍ୟାପ୍ତ ପରିମାଣରେ ଶବ୍ଦ ଓ ପ୍ରକାଶଭଙ୍ଗୀ ଆବଶ୍ୟକ । ଏକଥା ଓଡ଼ିଆ ଭାଷାକୋଷ ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜ ଆଜକୁ ୭୦ ବର୍ଷ ପୂର୍ବରୁ ସୂଚିତ କରାଇଥିଲେ । ଉତ୍କଳ କେଶରୀ ଡ଼କଟର ହରେକୃଷ୍ଣ ମହତାବ ଆଜକୁ ୨୦ ବର୍ଷ ପୂର୍ବରୁ ‘ପ୍ରଜାତନ୍ତ୍ର’ର ସମ୍ପାଦକୀୟ ସ୍ତମ୍ଭରେ ଏହି ଉକ୍ତିକୁ ପୁନର୍ବାର ଲୋକଲୋଚନକୁ ଆଣି ଲେଖିଥିଲେ- ‘ଶବ୍ଦ ସଂଖ୍ୟା ଯେତେ ବୃଦ୍ଧି ହେବ, ଭାଷା ସେତେ ସମୃଦ୍ଧ ହେବ । ଫରାସୀ, ଜର୍ମାନୀ ଓ ଅନ୍ୟ ବହୁ ଉତ୍କୃଷ୍ଟ ସାହିତ୍ୟର ସାହାଯ୍ୟରେ

ଇଂରାଜୀ ସାହିତ୍ୟ ପୁଷ୍ଟ । ଇଂରାଜୀ ଅଭିଧାନରେ ପ୍ରତିବର୍ଷ ପ୍ରାୟ ଏକହଜାର ନୂତନ ଶବ୍ଦ ଯୋଗ କରାଯାଉଛି । ସେହିପରି ବିଭିନ୍ନ ଇଉରୋପୀୟ ସାହିତ୍ୟର ଅନୁବାଦ ଇଂରାଜୀ ଭାଷା ମାଧ୍ୟମରେ ହିଁ ପ୍ରଚାରିତ ହେଉଛି । ଇଂରାଜୀ ସାହିତ୍ୟର ଏହି ଆହରଣ ଶକ୍ତିକୁ ହିନ୍ଦୀ ବର୍ତ୍ତମାନ ଗ୍ରହଣ କରିଛି । ଓଡ଼ିଆ ସାହିତ୍ୟର ମଧ୍ୟ ଏହା ଗ୍ରହଣ କରିବା ଜରୁରୀ ହେଲାଣି' । ଅବଶେଷରେ ମହାନ ସାହିତ୍ୟାଚାର୍ଯ୍ୟ ଡ଼କଟର ମହତାବ ଓଡ଼ିଆଙ୍କ ପାଇଁ ଏହି ମର୍ମରେ ଏକ ପ୍ରବଚନ ଲିପିବଦ୍ଧ କରିଯାଇଛନ୍ତି । ସମୃଦ୍ଧି ନିର୍ଭର କରେ ଆହରଣ ଉପରେ ।

ଏହି ପ୍ରବଚନଟି ଯେ କେବଳ ସାହିତ୍ୟ ଓ ଭାଷାର ସମୃଦ୍ଧି ପାଇଁ ତାହା ନୁହେଁ । ଏହା ସବୁକ୍ଷେତ୍ରରେ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ । ବାସ୍ତବତା ପ୍ରତି ସତତ ଅବହିତ ହୋଇ ରହିବା ଏବଂ ପରିବେଶର ଆବେଗକୁ ପ୍ରକୃଷ୍ଟ ଭାବେ ହୃଦୟଙ୍ଗମ କରି ତଦନୁସାରେ ଲୋକମାନଙ୍କୁ ସତର୍କ କରାଇ ପ୍ରତ୍ୟେକଟି ସାମାଜିକ ପ୍ରକ୍ରିୟା ସହିତ ମୁକାବିଲା ପାଇଁ ପ୍ରସ୍ତୁତ କରାଇବା ସାହିତ୍ୟର ମୁଖ୍ୟଧର୍ମ ଏବଂ ପ୍ରଧାନ କର୍ତ୍ତବ୍ୟ ।

ପୂର୍ବପୁରୁଷଙ୍କ ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ଆଇନତଃ ଉତ୍ତରାଧିକାରୀ ସୂତ୍ରରେ ହିଁ ମିଳିଥାଏ । ମାତ୍ର ପୂର୍ବପୁରୁଷଙ୍କ ଗୁଣର ଅଧିକାରୀ ତାଙ୍କର ଜଣେ ଉତ୍ତରଦାୟୀ ଯେ ନିଶ୍ଚିତ ଭାବରେ ହେବେ, ଏହାର କୌଣସି ଧରାବନ୍ଧା ନିୟମ ନାହିଁ । ଏ ସମ୍ପର୍କରେ ବହୁ ନଜିର ଦୃଷ୍ଟିଗୋଚର ହୁଏ । ଯେପରି ବିଶ୍ରବା ଋଷିଙ୍କ ପୁତ୍ର ରାବଣ, ହିରଣ୍ୟକଶ୍ୟପଙ୍କ ପୁତ୍ର ପ୍ରହ୍ଲାଦ ପ୍ରଭୃତି ଅନେକ ଉଦାହରଣ ଅଛି । ସେହିପରି ଶିଳ୍ପ, କଳା, ସଂସ୍କୃତି ନିପୁଣ ସାହିତ୍ୟ ରସିକ ଆମ ପୂର୍ବପୁରୁଷ କେବଳ ଶିଳ୍ପ କଳାରେ ନୁହେଁ, ଓଡ଼ିଆ ସାହିତ୍ୟର ଗୌରବ ଓ ଗାରିମାକୁ ଯେପରି ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଅମ୍ଳାନ ଭାବରେ ଉର୍ଦ୍ଧ୍ୱଗାମୀ କରାଇ ଶୀର୍ଷ ସ୍ଥାନରେ ଉପସ୍ଥାପିତ କରିପାରିଥିଲେ, ତାର ପଟାନ୍ତର ନାହିଁ ।

ଲୋକ ସଂସ୍କୃତିର ସ୍ୱରୂପ ସ୍ୱଭାବତଃ ଭୌଗୋଳିକ ସୀମାରେଖା ଦ୍ୱାରା ଆବଦ୍ଧ ନୁହେଁ । ଇତିହାସ ଓ ସଭ୍ୟତାର କ୍ରମୋନ୍ନତି ସଙ୍ଗେ ସଙ୍ଗେ ସଂସ୍କୃତିର ଉନ୍ନତି ଘଟିଛି-ଘଟିଛି ଲୋକ ସଂସ୍କୃତି ଚର୍ଚ୍ଚାର ବ୍ୟାପକତା,ବିଭିନ୍ନ ଦେଶରେ ଓ ବିଭିନ୍ନ ଭାବରେ । ଲୋକ ସଂସ୍କୃତି ଅନୁସନ୍ଧିତ୍ସା-ଜଗତ ହେଲେ ହେଁ ଏହାର ପଥ ଦୁର୍ଗମ ନୁହେଁ । ଆଦିଶକ୍ତି ମା' ସାରଳାଙ୍କ କରୁଣାମୟୀ ଦିବ୍ୟଦର୍ଶନ ପରେ ତାଙ୍କରି ଆଶିଷ ଓ ନିର୍ଦ୍ଦେଶନାରେ ବିଧିବଦ୍ଧ ଭାବରେ ଲୋକ ସାହିତ୍ୟର ଜଣେ ବିନମ୍ର ଶିକ୍ଷାର୍ଥୀ ହିସାବରେ ଯାତ୍ରା ଆରମ୍ଭ କରିଛି । ଆମ୍ଭ ବିଭୋର ହୋଇ ଗାଇଛି -

ଯାଉ ପଛେ ମୋର ଧନ ଜନ ମାନ ଅବା ଅର୍ଜିତ ସମ୍ମାନ
ଅହୋରାତ୍ର କରୁଥିବି ମା'ଗୋ ତବ ଆଦେଶ ପାଳନ ।
ନ କରୁ ପରଶ ମୋତେ୍ ଅସତ୍ୟ ରସନା
ପର ଧନେ କେବେ ହେଲେ ନ ବଳୁ ବାସନା ।
ଏହି ବର ଦିଅ ମୋତେ କରି ଆଶୀର୍ବାଦ
ଧନ୍ୟ ହେବ ଏହି ମୂଢ଼ ପାଇ ତୋ ପ୍ରସାଦ ।

ମା'ଙ୍କର ଅଲୌକିକ ଦର୍ଶନ ସମ୍ପର୍କରେ ଗ୍ରନ୍ଥର ୨ୟ ଖଣ୍ଡର 'ଗ୍ରନ୍ଥ ପ୍ରବେଶ' ୧୧ ପୃଷ୍ଠାରୁ ୧୩ ପୃଷ୍ଠା ଦ୍ରଷ୍ଟବ୍ୟ । ଇତିମଧ୍ୟରେ ଏହି ଗ୍ରନ୍ଥର ୧ମ, ୨ୟ, ୩ୟ ଏବଂ ୪ର୍ଥ ଖଣ୍ଡ ପ୍ରକାଶିତ ହୋଇ ପାଠକମାନଙ୍କର ଆଶୀର୍ବାଦ ଲାଭ କରିଛି । ଲୋକସାହିତ୍ୟର କ୍ଷେତ୍ର ଅନୁସନ୍ଧାନ ପାଇଁ ମୋତେ ଓଡ଼ିଶାର ବିଭିନ୍ନ ଜିଲ୍ଲାର ମହକୁମା, ଗ୍ରାମାଞ୍ଚଳ ପ୍ରଭୃତି ପରିକ୍ରମା କରିବାକୁ ପଡ଼ିଛି । ତଦ୍‌ସହିତ ପ୍ରତିବେଶୀ ରାଜ୍ୟ ପଶ୍ଚିମବଙ୍ଗ, ଆସାମ, ବିହାର, ଝାଡ଼ଖଣ୍ଡ,ମଧ୍ୟପ୍ରଦେଶ, ଛତିଶଗଡ଼, ଆନ୍ଧ୍ରପ୍ରଦେଶ ଏବଂ ଭାରତବର୍ଷର ଅନ୍ୟାନ୍ୟ ରାଜ୍ୟ ଯଥା-ତାମିଲନାଡୁ, କର୍ଣ୍ଣାଟକ, ରାଜସ୍ଥାନ, ମହାରାଷ୍ଟ୍ର, ଗୁଜୁରାଟର କେତେକ ଅଞ୍ଚଳକୁ ଯାଇ କ୍ଷେତ୍ର ସମୀକ୍ଷା କରିବାକୁ ପଡ଼ିଛି ଓ ଏବେ ବି ତାହା ଜାରି ରହିଛି । ଏହି ପ୍ରକ୍ରିୟାରେ ପଲ୍ଲୀବାସୀଙ୍କ ଠାରୁ ଢଗଢମାଳି, ପ୍ରବାଦ, ପ୍ରବଚନ, ମାଳିକା, ପ୍ରହେଳିକା ପ୍ରଭୃତି ପ୍ରକାର ପ୍ରକାର ଲୋକବାଣୀ ବହୁ ସଂଖ୍ୟାରେ ସଂଗ୍ରହ କରିବାକୁ ମୁଁ ସକ୍ଷମ ହୋଇପାରିଛି ।

ସମୃଦ୍ଧ ଓଡ଼ିଆ ଲୋକସାହିତ୍ୟ ଓ ତାର ଐତିହ୍ୟ କୁହେଳିକା ଘେରରେ ଆବଦ୍ଧ । ଓଡ଼ିଆ ପୁଅର ଉଦାସୀନତା ଓ ଅବହେଳା ପାଇଁ ଏହି ଅମୂଲ୍ୟରତ୍ନ ରସାତଳଗାମୀ ହୋଇଛି । ପୂର୍ବେ କହିଛି, ଓଡ଼ିଆ ଲୋକବାଣୀର ସଂଗ୍ରହ କିଛି ହୋଇନାହିଁ ବୋଲି କହିଲେ ଚଳେ । ପରନ୍ତୁ ଲୋକସାହିତ୍ୟର ଆଲୋଚନା ମଧ୍ୟ ନାହିଁ ।

୧୯୩୬ରୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ୧୯୪୭ରେ ଭାରତ ସ୍ୱାଧୀନତା ପ୍ରାପ୍ତ ହେଲା । ୧୯୪୮ ମସିହାରେ ଓଡ଼ିଶାର କରଦ ରାଜ୍ୟ ଗଡ଼ଜାତଗୁଡ଼ିକର ଓଡ଼ିଶା ସହିତ ମିଶ୍ରଣ ହେଲା । ଫଳରେ ଓଡ଼ିଶା ରାଜ୍ୟର ପରିସୀମା ବୃଦ୍ଧି ପାଇଲା ସତ ମାତ୍ର ଓଡ଼ିଆ ଭାଷାଭାଷୀ ଅନେକ ଅଞ୍ଚଳ ପଶ୍ଚିମବଙ୍ଗ, ବିହାର, ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶ ରାଜ୍ୟମାନଙ୍କ ମଧ୍ୟରେ ରହିଗଲା ଏବଂ ଏବେବି ରହିଛି । ଉତ୍କଳ ଦିନେ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ, ପୂର୍ବରେ ବଙ୍ଗୋପସାଗର ଠାରୁ ପଶ୍ଚିମରେ

ଛୋଟନାଗପୁର ମାଳ ଅଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା ଏବଂ ସେସବୁ ଅଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରଚଳିତ ଥିଲା ଓ ରହିଛି । ଓଡ଼ିଆ ଆଜି ଖର୍ବିତ ହେଲା ସତ, ମାତ୍ର ଉତ୍କଳୀୟ ଭାବ, ସଂସ୍କୃତି ଓ ଭାଷାର ପଦଛବି ରହିଗଲା ସେହିସବୁ ଅଞ୍ଚଳରେ, ଯେଉଁ ଅଞ୍ଚଳଗୁଡ଼ିକ ରହିଗଲା ପଡ଼ୋଶୀ ପଶ୍ଚିମ ବଙ୍ଗ, ବିହାର, ମଧ୍ୟପ୍ରଦେଶ ଓ ଆନ୍ଧ୍ରପ୍ରଦେଶରେ । ଏହି ପଡ଼ୋଶୀ ରାଜ୍ୟମାନଙ୍କର ଯେତେ ଚାପ ପଡ଼ିଲେ ମଧ୍ୟ ଓଡ଼ିଆ ଭାଷା, ଭାବ, ସଂସ୍କୃତି ଏବେବି ସଂଜ୍ଞୀବିତ ରହିଛି । ଅବଶ୍ୟ ଏହାର ଆଂଶିକ ପରିବର୍ତ୍ତନ ଘଟିଛି । କାରଣ ଏ ସମ୍ପର୍କରେ କୌଣସି ପ୍ରଚେଷ୍ଟାର ମଧ୍ୟ ନଜିର ଦୃଷ୍ଟିଗୋଚର ହେଉନାହିଁ । ଏହି ପରିପ୍ରେକ୍ଷୀରେ ଓଡ଼ିଆ ଲୋକସାହିତ୍ୟ, ସଂସ୍କୃତିର ଐତିହ୍ୟ ଓ ଉତ୍କୃଷ୍ଟତା ପ୍ରତିପାଦିତ କରିବା ମୋ ଭଳି ଜଣେ ଅନଭିଜ୍ଞର ଉଦ୍ଦେଶ୍ୟ ଯାହା ହେଉନା କାହିଁକି, ମରୀଚିକା ପଛରେ ଧାଇଁ ଧାଇଁ ଅନନ୍ତ ଜଳ ରାଶିରେ ଉବେଇ ଟୁବେଇ ହେଲାବେଳେ ମା' ସାରଳାଙ୍କ ଅନୁକମ୍ପାର ଦିବ୍ୟ କିରଣ ମୋ ଉପରେ ବିଚ୍ଛୁରିତ ହୋଇ ମୋର ଚିନ୍ତନକୁ ଉଦ୍‌ଭାସିତ କରିଛି ।

ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରାଚୀନତ୍ୱ ଓ ମୌଳିକତ୍ୱ ସମ୍ପର୍କରେ ବହୁ ଆଲୋଚନା ପର୍ଯ୍ୟାଲୋଚନା ହୋଇଥିଲେ ମଧ୍ୟ ଏହାକୁ ସ୍ୱୀକାର କରିବାକୁ ହେବ ଯେ, ଓଡ଼ିଆ ଅନ୍ୟ କୌଣସି ଭାଷା କିମ୍ବା ସାହିତ୍ୟ ଉପରେ ଆଧାରିତ ନୁହେଁ । କାରଣ ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟ ମୂଳରୁ ହିଁ ସ୍ୱୟଂ ସୃଷ୍ଟ ଓ ପୁଷ୍ଟ । ଢ଼ଗଢ଼ମାଳି, ପ୍ରହେଳିକା ହେଉଛି ଓଡ଼ିଆର କଥିତ କିମ୍ବା ବୋଲାଯାଉଥିବା ଟାପା ବା ସଂକ୍ଷିପ୍ତ ପଦ୍ୟାବଳୀ । ଯାହାକୁ ଆମେ ଲୋକବାଣୀ କହିଥାଉଁ । ଏସବୁ ଓଡ଼ିଆଙ୍କର ସମ୍ପୂର୍ଣ୍ଣ ଓ ଏକାନ୍ତ ନିଜସ୍ୱ । ଭାରତର ପ୍ରାଦେଶିକ ଭାଷାଗୁଡ଼ିକ ମଧ୍ୟରେ ଓଡ଼ିଆ ଭାଷା ସର୍ବପ୍ରାଚୀନ ଏବଂ ସମସ୍ତ ସାହିତ୍ୟ ବିଭବର ମୂଳଭିତ୍ତି ଓ ଶୀର୍ଷସ୍ଥାନୀୟ ବୋଲି ସମସ୍ୱରରେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ବହୁ ଭାଷାତତ୍ତ୍ୱବିଦ୍ ପଣ୍ଡିତ ସ୍ୱୀକୃତି ପ୍ରଦାନ କରିଛନ୍ତି ।

ଯେତେବେଳେ ଆମ୍ଭର ପ୍ରତିବେଶୀ ବଙ୍ଗଳା ଭାଷାର ଆଦୌ ଉତ୍ପତ୍ତି ହୋଇ ନ ଥିଲା, ସେତେବେଳେ ଓଡ଼ିଆ ଭାଷା ଯେ ଗୋଟିଏ ପୂର୍ଣ୍ଣାଙ୍ଗ ଭାଷାରେ ପରିଣତ ହୋଇଥିଲା ତାହା ପ୍ରସିଦ୍ଧ ଭାଷାତତ୍ତ୍ୱବିଦ୍ ମନୀଷୀ ବିମ୍‌ସ ସାହେବଙ୍କ ଲିଖିତ ନିମ୍ନୋକ୍ତ ମନ୍ତବ୍ୟରୁ ପ୍ରତୀୟମାନ ହୁଏ ।

Oriya language used at the time of Upendra Bhanja continues to be used now, while Bidyapati's (a contemporary of Bhanja) language is different from the present Bengali.

At a period when Oriya was already a fixed and settled language, Bengali did not exist. The Bengalis spoke a vast variety of corrupt forms of Eastern Hindi. It is not till quite recent times that are find anything that can with propriety be called a Bengali language. (Beams compare tinic Grammar of four languages Vol.1, Page 119).

We may place the Hindi with its subsidiary forms Gujarati and Punjabi first fixing their rise and establishment as modern languages distinct from their previous existence as Prakrut till 12th or 13th Century. Oriya, must have quite completed its transformation by the end of 14th century. Bengali was no separate independent language but a made of diatects without a distinct national or provincial type till the 17th or beginning of the 18th Century. It was not till the gradual decay of the central Mahomedan power of Delhi enabled the Provincial Governors to assume an independent position that severed itself from Hindi and assumed characteristics which now vindicate for it a right to be considered a separate language. (Beams comparative Grammar of four languages Vol. I, page 120)

ଷୋଡ଼ଶରୁ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଆ ଭାଷାରେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତ ସିଂହାର, ବଳଦେବ ରଥ ପ୍ରମୁଖ କବିମାନେ ବହୁ କାବ୍ୟ କବିତା, ଛନ୍ଦ, ଚଉପଦୀ ଓ ସଂଗୀତ ପ୍ରଭୃତି ରଚନା କରି ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ସେମାନେ ଅନ୍ୟ କୌଣସି ଭାଷା କିମ୍ବା ସାହିତ୍ୟର ଅନୁଗାମୀ ହୋଇ ନାହାନ୍ତି କିମ୍ବା କାହାରି ବ୍ୟାଧିରେ ପ୍ରଭାବିତ ହୋଇନାହାନ୍ତି । ଲୋକବାଣୀ ହିଁ ଓଡ଼ିଆ ସାହିତ୍ୟର ଆଧାର ଓ ମୂଳଉତ୍ସ ।

ଊନବିଂଶ ଓ ବିଂଶ ଶତାବ୍ଦୀରେ ପ୍ରତିବେଶୀ ବଙ୍ଗଳା ଭାଷାର ଆଶାତୀତ ଉନ୍ନତି ପରିଲକ୍ଷିତ ହୁଏ । ମାତ୍ର ଓଡ଼ିଆ ଭାଷା ସେହି ତୁଳନାରେ ଉନ୍ନତ ହୋଇ ପାରିନାହିଁ ବୋଲି କୁହାଯାଉଛି । କିନ୍ତୁ କାହିଁକି? ତାହାର ଯଥାର୍ଥ କାରଣ ଖୋଜିବାକୁ କାହାରି ଆଗ୍ରହ ବା ଅବସର ନାହିଁ । ଓଡ଼ିଆ ଭାଷା ଏକଦା ପ୍ରାଦେଶିକ ଭାଷାମାନଙ୍କର ଶୀର୍ଷ ସ୍ଥାନୀୟ ହୋଇ ରହିଥିଲା । ଜଣେ ଓଡ଼ିଆ ହିସାବରେ ଓଡ଼ିଆ ସାହିତ୍ୟର ଐତିହ୍ୟ ଓ ମୌଳିକତ୍ୱ ଖୋଜି ବାହାର କରିବା ପ୍ରତ୍ୟେକ ଓଡ଼ିଆର ପରମ କର୍ତ୍ତବ୍ୟ ନୁହେଁ କି ?

ଆଜି ସିନା ବଙ୍ଗ ସାହିତ୍ୟ ଭାରତର ଅନ୍ୟାନ୍ୟ ପ୍ରାଦେଶିକ ଭାଷାମାନଙ୍କ ତୁଳନାରେ ଶ୍ରେଷ୍ଠସ୍ଥାନ ଅଧିକାର କରିଛି, କିନ୍ତୁ ପାଞ୍ଚଶହ ବର୍ଷ ପୂର୍ବେ ତା'ର ନାମ ଗନ୍ଧ ନ ଥିଲା । ସେତେବେଳେ ଯେ ଓଡ଼ିଆ ସାହିତ୍ୟ ଭଣ୍ଡାର ବହୁ ମୂଲ୍ୟବାନ ଲୋକବାଣୀ ରୂପକ ପଲ୍ଲବରେ ବିଭୂଷିତ ହୋଇ ବଲ୍ଲଭରେ ପରିପୂର୍ଣ୍ଣ ଥିଲା, ସେ କଥା କେହି କ'ଣ ସ୍ମରଣ କରିବାକୁ ଚେଷ୍ଟା କରୁଛନ୍ତି ?

ପଞ୍ଚଦଶ ଶତାବ୍ଦୀରେ ଚୈତନ୍ୟ ଦେବଙ୍କ ଆବିର୍ଭାବ ପୂର୍ବରୁ କତିପୟ ଓଡ଼ିଆ କବି ବଙ୍ଗ ଦେଶରେ ବଙ୍ଗଳାରେ ପଦ୍ୟ ରଚନା କରି ଭୂରି ଭୂରି ପ୍ରଶଂସା ଲାଭ କରିଥିଲେ । ସେମାନଙ୍କ ମଧ୍ୟରେ ବଙ୍ଗଳା 'ଟପ୍‌ପା' ଯାହାକୁ ଓଡ଼ିଆରେ 'ଟପା' କୁହାଯାଇଛି । ଟପାର ଦେଶଜ ଅର୍ଥ 'ଏକ ବ୍ୟଙ୍ଗୋକ୍ତି/ ସରଳ ତାଳଯୁକ୍ତ ଗୀତ' । ଟପାର ପ୍ରଣେତା 'ଗୋପାଳ ଓଡ଼ିଆ' (ପରବର୍ତ୍ତୀ କାଳରେ 'ଗୋପାଳ ଉଡ଼େ'), ଗୋପୀ ବଲ୍ଲଭ (ବଙ୍ଗଳା 'ରସିକ ମଙ୍ଗଳ'ର ରଚୟିତା), ସଦାନନ୍ଦ କବିଙ୍କ ନାମ ପ୍ରାଚୀନ କବି ହିସାବରେ ସେହି ବଙ୍ଗବାସୀଙ୍କ ଦ୍ୱାରା ଅଦ୍ୟାପି ଆଦୃତ ଏବଂ ଚର୍ଚ୍ଚିତ ହେଉଛି ।

ଚୈତନ୍ୟ ଦେବଙ୍କର ଅନେକ ବଙ୍ଗାଳୀ ଭକ୍ତ ଦୀର୍ଘଦିନ ଓଡ଼ିଶାରେ ରହିଯିବାରୁ ସେମାନେ ଓଡ଼ିଆ ଭାଷା ଓ ସାହିତ୍ୟର ଆଲୋଚନା କରିବା ଲାଗି ଅବସର ପାଇଲେ । ତାହାରି ଅନୁକରଣରେ ବଙ୍ଗଳା ଭାଷାରେ ବୈଷ୍ଣବୀୟ ଗ୍ରନ୍ଥାଦି ଲେଖିବାକୁ ଆରମ୍ଭ କଲେ । ବୈଷ୍ଣବୀୟ ଯୁଗରେ ରଚିତ ବଙ୍ଗଳା ଗ୍ରନ୍ଥମାନ ଓଡ଼ିଆ ଶବ୍ଦ ଓ ଓଡ଼ିଆ ବିଶିଷ୍ଟାର୍ଥକ ପ୍ରୟୋଗରେ ପରିପୂର୍ଣ୍ଣ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଓଡ଼ିଆ ସାହିତ୍ୟ ବଙ୍ଗଳା ସାହିତ୍ୟର ଆଦର୍ଶ ତଥା ପଥପ୍ରଦର୍ଶକ ।

ସହସ୍ର ସହସ୍ର ଲୋକବାଣୀ, ପ୍ରବାଦ ଆଦି ବଙ୍ଗଳା ଭାଷାରେ ରଚିତ ହୋଇଥିଲେ ବି, ସେଗୁଡ଼ିକୁ ଗଭୀର ଭାବେ ତର୍ଜମା କଲେ ତନ୍ମଧ୍ୟରୁ ଅଧିକାଂଶ ଓଡ଼ିଆ ଲୋକବାଣୀର ଅବିକଳ ଅବା ପରିମାର୍ଜିତ ରୂପ କହିଲେ ଅତ୍ୟୁକ୍ତି ହେବନାହିଁ । **ସାରଳା ରସସାଗାର ରତ୍ନ ଭଣ୍ଡାର, ୩ୟ ଖଣ୍ଡ** ଅବତରଣିକାରେ ଏହାର ବହୁଳ ଦୃଷ୍ଟାନ୍ତ ସନ୍ନିବିଷ୍ଟ ।

ବଙ୍ଗଳା ଭାଷାବିତ୍‌ମାନେ ଓଡ଼ିଆଙ୍କର କଥିତ ଲୋକବାଣୀ ସଂଗ୍ରହ କରି ନିଜ ସାହିତ୍ୟରେ ସଂସ୍ଥାପନ କରିଯାଇଛନ୍ତି । ଓଡ଼ିଆ ଭାଷାର ସଂକ୍ଷିପ୍ତ ପଦାବଳୀକୁ ନିଜ ଭାଷାରେ ଅନୁବାଦିତ କରି ସେମାନଙ୍କ ସାହିତ୍ୟକୁ ପରିପୁଷ୍ଟ କରିଛନ୍ତି । ଓଡ଼ିଆମାନଙ୍କ ପକ୍ଷରେ ଅବଶ୍ୟ ଏହା ଗର୍ବ ଓ ଗୌରବର ବିଷୟ । ଓଡ଼ିଆ ଲୋକବାଣୀ, ପ୍ରହେଳିକା ଆଦି ବଙ୍ଗଳା ଭାଷାର ପ୍ରବାଦ ଓ ଧନ୍ଦା ପ୍ରଭୃତି ମଧ୍ୟରେ ଛାଇ ହୋଇଯାଇଛି । ମାତ୍ର ପରିତାପର ବିଷୟ ଅଗ୍ରଗାମୀ ବଙ୍ଗଳା ସାହିତ୍ୟର ରଥ ଚକ୍ରତଳେ ଭାରତୀୟ ଭାଷା ଓ ସାହିତ୍ୟର ଆଦ୍ୟାଶକ୍ତି ଓଡ଼ିଆ ଭାଷା ଆଜି ନିଷ୍ପେଷିତ ।

ପ୍ରାଚୀନ ଓଡ଼ିଆ ସାହିତ୍ୟର ଲୋକବାଣୀ, ପ୍ରହେଳିକା କିପରି ଆଜି ବଙ୍ଗଳା

ସାହିତ୍ୟ ମଧ୍ୟରେ ଶାୟିତ ହେଲା, କିପରି ଆଜି ଓଡ଼ିଆ ସାହିତ୍ୟର ଅମୂଲ୍ୟ ରତ୍ନ ବଙ୍ଗଳା ସାରସ୍ୱତ ଭଣ୍ଡାରରେ କାଳକ୍ରମେ କିପରି ସ୍ଥାନ ପ୍ରାପ୍ତ ହେଲା, ତାହାହିଁ ବର୍ତ୍ତମାନର ପ୍ରଶ୍ନ ଓ ଚିନ୍ତନର ମୁଖ୍ୟ ପ୍ରସଙ୍ଗ ।

ଏହି ପ୍ରଶ୍ନ ଓ ଚିନ୍ତନର ବାସ୍ତବତା ଅନୁଧ୍ୟାନ ଦିଗରେ ମା' ସାରଳାଙ୍କ ନିର୍ଦ୍ଦେଶନାରେ ସଚେତନ ଏବଂ ସକ୍ରିୟ ଭାବେ ଅଗ୍ରସର ହେଉଛି । ମାତ୍ର ସୀମିତ ସମୟ ମଧ୍ୟରେ ଏହି ତଥ୍ୟ ଉଦ୍‌ଘାଟନ ମୋ ଦ୍ୱାରା ସମ୍ପୂର୍ଣ୍ଣ ନ ହେଲେ ବି ଭବିଷ୍ୟତରେ ଆମର ଯୁବ ପୀଢ଼ିଙ୍କ ପ୍ରଚେଷ୍ଟା ଓ ସଚେତନତାରୁ ନିଶ୍ଚୟ ଯେ ଦିନେ ସମ୍ପୂର୍ଣ୍ଣ ହେବ, ସେଥିରେ ମୁଁ ବିଶେଷ ଆଶାବାଦୀ ।

ଓଡ଼ିଆ ଯୁବ ସମାଜ ଉତ୍ସାହ ଓ ଅଧ୍ୟବସାୟର ସୁଯୋଗ୍ୟ ଅସ୍ତ୍ର ଧରି ଓଡ଼ିଆ ଓ ବଙ୍ଗଳା ସାହିତ୍ୟର ପୃଷ୍ଠା ପୃଷ୍ଠା ଓଲଟାଇ ସମୟର ପ୍ରତିସ୍ରୋତରେ ଭାସି ଚାଲିଲେ ଦିନେ ନା ଦିନେ ନିଶ୍ଚୟ ବାସ୍ତବ ସତ୍ୟର ଦୁର୍ଗମ ଏଭରେଷ୍ଟ ଶୃଙ୍ଗରେ ପଦାର୍ପଣ କରିପାରିବେ ।

ଫଳରେ ଓଡ଼ିଶାର ଢ଼ଗ ଢ଼ମାଳିପୂର୍ଣ୍ଣ ପ୍ରାଚୀନ ସାହିତ୍ୟ ଯେ ଭାରତୀୟ ପ୍ରାଦେଶିକ ସାହିତ୍ୟ ସାଗରର ହିମଗିରି ଏବଂ ବଙ୍ଗଳା ସାହିତ୍ୟ ଯେ ସେହି ହିମଗିରିରୁ ବିଚ୍ୟୁତ କ୍ଷୁଦ୍ରାତିକ୍ଷୁଦ୍ର କଣିକାଟିଏ ମାତ୍ର, ତାହା ଆଉ କାହାରି ଅଜ୍ଞାତ ଅବା ଅବୋଧଗମ୍ୟ ହୋଇ ରହିବ ନାହିଁ । ସମସ୍ତଙ୍କର ହୃଦବୋଧ ହେବ ଯେ ଓଡ଼ିଶାର ପୁରାତନ ଶିଳ୍ପକଳା ଯେପରି ବିଶ୍ୱ ବିଖ୍ୟାତ ଏବଂ ସପ୍ତାଶ୍ଚର୍ଯ୍ୟ ମଧ୍ୟରେ ଅନ୍ୟତମ, ସେହିପରି ଓଡ଼ିଆ ସାହିତ୍ୟ ସୌରଭର ଐତିହ୍ୟ ସାଗର ମନ୍ଥନ କଲେ ତନ୍ମଧ୍ୟରୁ ଯେଉଁ ସବୁ ରସ, ରତ୍ନ ଓ ରହସ୍ୟ ନିସୃତ ହେବ, ତାହା ଜନ ସମାଜ ପାଇଁ ଏକ ବିସ୍ମୟକର ବିଷୟ ରୂପେ କାଳକାଳକୁ ଦୀପ୍ତିମନ୍ତ ହୋଇ ରହିବ ।

ଲୀଳାମୟଙ୍କର କି ଅଦ୍ଭୁତ ଲୀଳା, କେତେବେଳେ ସେ କାହାକୁ ହସାଇ ପାରନ୍ତି, ପୁଣି କେତେବେଳେ ତାକୁ କନ୍ଦାଇ ପାରନ୍ତି, ତାହା ବୁଝିବା ଶକ୍ତି କାହାର?

ଯାହାଙ୍କର ମାୟାରଜ୍ଜୁରେ ଛପନକୋଟି ଜୀବଜନ୍ତୁ ବନ୍ଧା ହୋଇ ଅହରହ କ୍ରୀଡ଼ା ନର୍ତ୍ତନ ପୁତ୍ତଳିକା ପରି ଆବଦ୍ଧ, ସେହି ବିଶ୍ୱବିହାରୀ ଜଗତ ନିୟନ୍ତା ଜଗଦୀଶ୍ୱରଙ୍କ କୃପାରୁ ମୋ ପରି ଜଣେ ଅଜ୍ଞାନର ମାରଫତରେ ଓଡ଼ିଆ ସାହିତ୍ୟର ଐତିହ୍ୟ ସମ୍ପର୍କରେ ଯାହା ପ୍ରସ୍ତୁତ ହେଉଛି, ଓଡ଼ିଶା ଓ ଓଡ଼ିଶା ବାହାରର ଅଗଣିତ ବିଦ୍ୟାନୁରାଗୀ ପାଠକ ପାଠିକାମାନେ ତାହାକୁ କିପରି ଭାବରେ ଗ୍ରହଣ କରିବେ ଏହି ଭାବନାରେ ମୋର

ଚିତ୍ତ ଚଟୁଳ ହୋଇଛି ଏବଂ ଏ ସାମାନ୍ୟ ପ୍ରାଣରେ ଏପରି ଭୟର ଉଦ୍ରେକ ହୋଉଛି ଯେ ସେହି ବିପଦ ବାରଣ ଲଜ୍ଜା ନିବାରଣ ଆଘାତ ନାଶନ ଗରୁଡ଼ାସନ ହିଁ ଏ ବିପଦାର୍ଣ୍ଣବରୁ ପାରଉତାର କରିବେ ।

ଉତ୍କଳ ଭଳି ମହାନ୍ ଦେଶରେ ଏତେ ଏତେ ପଣ୍ଡିତ ମଣ୍ଡଳୀମାନ ବିରାଜମାନ କରୁଛନ୍ତି, ସେଠାରେ ମୋର ଏହି କ୍ଷୁଦ୍ର ଲେଖନୀ ପ୍ରସୂତ ସଙ୍କଳନ ସାରସ୍ୱତ ପୀଠରେ କେତେଦୂର କାର୍ଯ୍ୟକାରୀ ହୋଇ ସେମାନଙ୍କର ସନ୍ତୋଷଭାଜନ ହୋଇପାରିବ ଏହା ଭାବି ହୃଦୟ ବାତାହତ ରମ୍ଭାପତ୍ର ସଦୃଶ ବିକମ୍ପିତ ହେଉଛି । ହେ ବିଦଗ୍ଧ ପାଠକ ପାଠିକା ଗଣ ! ହଂସ କ୍ଷୀର ମଧ୍ୟରୁ ସାରାଂଶ ଗ୍ରହଣ କରି ନୀରକୁ ଦୂରକୁ ଫିଙ୍ଗିଲାଭଳି ଆପଣମାନେ ଦୋଷାଦୋଷ ଗ୍ରହଣ ନ କରି କେବଳ ଗୁଣ ପ୍ରତି ଲକ୍ଷ୍ୟ ରଖି କ୍ଷମା ଓ ସହାନୁଭୂତି ପ୍ରକାଶକଲେ ଅଧୀନର ଚଟୁଳ ମତି ଶାନ୍ତ ହେବ । (ଅନନ୍ତ ପାରଂ କିଳ ଶବ୍ଦ ଶାସ୍ତ୍ରଂ ସ୍ୱଳ୍ପଂ ସ୍ତଥାୟୁର୍ବହବଶ୍ଚ ବିଘ୍ନାଃ, ତତୋଃସାର ଗ୍ରାହ୍ୟମପସ୍ୟବଲ୍ଗୁ ହଂସୋ ଯଥା କ୍ଷୀରମିବାମ୍ବୁ ମଧ୍ୟାତ୍) । ଏହି ପରିପ୍ରେକ୍ଷୀରେ ନମସ୍କାର ସହିତ ଦି'ପଦ-

ଆହେ ସାଧୁ ସନ୍ଥ ଜନେ ନ ଧରିବେ ଦୋଷ
ମାତ ସାରଳା ଦେବୀଙ୍କ ଦାସର ମୁଁ ଦାସ ।
ତାହାଙ୍କ ଆଜ୍ଞାରେ ମୁହିଁ କରଇ ଲେଖନ
ସକଳ ଦୋଷ ମୋର କ୍ଷମିବେ ସାଧୁଜନ ।

ମା ସାରଳାଙ୍କର ଅନୁକମ୍ପା ଓ ଆଦେଶାନୁସାରେ ସାରସ୍ୱତ ପୀଠରେ ତାଙ୍କରି ଶରଣାପନ୍ନ ହୋଇ ପ୍ରାର୍ଥନା କରୁଛି -

ତୁ ଆଜି ମାତା ଶକ୍ତି ଦେବୁ
ଢ଼ମାଳି ଧର୍ମ ମର୍ମ କହିବୁ ।
ହେ' ମାତ ଦିଅ ମୋତେ ବର
ବଜ୍ର ହେଉ ମୋ ଶରୀର ।
ତୋ ପଛେ ପଛେ ମୁହିଁଥିବି
ସବୁ ଭିଆଣ ନିରିଖିବି ।
ଦୀନହୀନ ବିନଦାସ କହେ ରତ୍ନ-ରସ
ଛନ୍ଦରେ ଛନ୍ଦି ହେଲେ ନ ଘେନିବ ଦୋଷ ।

x x x x

ସତୁରି ବରଷ କାଳରେ ମୋହର
ଉଠିବାକୁ ଦେଲୁବଳ

ଅଣ୍ଟାପିଠି ବେକ ଲାଗି ନାହିଁ ମୋର
ବୋହିନାହିଁ ଚକ୍ଷୁଜଳ ।
ରତ୍ନ-ରସ ପାଇଁ ଆଦେଶ ଯେ ଦେଲୁ
ଯୁଗ ଯୁଗାନ୍ତ ପଡ଼ିଆ
କି ଭିଆଣ କଲେ ବର୍ତ୍ତିବି ଏଥିରୁ
କଢ଼େଇ ନେଏଲୋ ମାଆ ।
ମୋର କଉଁ ବଳ ଅଛି ଯେ କାହାକୁ
ଆଣି ରଖିବି ପାଖରେ
ଧନ ଯଉବନ ପାଶେ ମୋର ଥିଲେ
ଆସନ୍ତେ ମୋହ ନାଆଁରେ ।
ବାଙ୍କ ଚୁଳିଆ, କଦମ୍ବ ମୂଳିଆ, କାଉଁଚ ମାଳିଆ
କିବା ନୁହେଁ ମୁଁ ତ
ରସିକ ଶେଖର ସେଇ 'ଭାବ ବିନୋଦିଆ'
ଯେ କରେ ନାନା ହୁନ୍ଦର
ଡାକ କିଆଁ ମୋତେ ଏମିତି ନାଆଁରେ
ମୁଁ ଯେ ପୋଡ଼ା ମୁହାଁ ବାନ୍ଦର ।
ଏ ଡ଼ାଳୁ ସେ ଡ଼ାଳ ଡ଼େଇଁ ଡ଼େଇଁ ବୁଲି
ପଡୁଅଛି ଖାଲି ଫାନ୍ଦର ।
ଆପଣାର ଗୁଣ କିଛି ଅବା ନାହିଁ
ଜୀଇ ପାରିଲେ ଜୀଇବି
କେବଳ ତୁମର ନାମ ଗାଇ ଗାଇ
ଯାହି ତାହି ତ ରହିବି ।
ଯାହାଠାରେ ଯେତେ ବେଳେ କୃପା କରୁ
ସେ ଜନ ହୁଏ ନିଶ୍ଚିନ୍ତ
ହତଲକ୍ଷ୍ମୀଟାର ଦଇବ ପୁରୁଷ
ଅଟନ୍ତି ଶ୍ରୀ ଜଗନ୍ନାଥ ।
'ଗ-ଘ' ଅକ୍ଷରରେ ଡ଼ମାଳି ଛନ୍ଦ, ସମ୍ପୂର୍ଣ୍ଣ ହୋଇଲା 'ପଞ୍ଚମ ଖଣ୍ଡ'
ସୃଜନ କରରେ କଲି ଅର୍ପଣ ! ଷଷ୍ଠଖଣ୍ଡ ଲାଗି ଗଣୁଛି ଦିନ ।



# ଅବତରଣିକା

## (୪ର୍ଥଖଣ୍ଡ ଅବତରଣିକାର ''ପ୍ରବାଦର ଭାଷା ଓ ଭାବଜଗତ'' ଶୀର୍ଷକ ଆଲୋଚନାର ଅବଶିଷ୍ଟାଂଶ, ୭୮ ପୃଷ୍ଠା ଉତ୍ତାରୁ)

### ପ୍ରବାଦର ଦୁଇଟି ରୂପ :- ଗଦ୍ୟ ପ୍ରବାଦ, ପଦ୍ୟପ୍ରବାଦ ।

ଭାଷା ସଂଗଠନ ଅନୁଯାୟୀ ପ୍ରବାଦକୁ ଗଦ୍ୟ ପ୍ରବାଦ ଓ ପଦ୍ୟପ୍ରବାଦ ଭାଗରେ ପ୍ରଧାନତଃ ଭାଗ କରାଯାଇଥାଏ। (idiom) ବାଗ୍‌ଧାରା ବା ରୁଢ଼ି ବାକ୍ୟ ଗଦ୍ୟପ୍ରବାଦର ଗୋଟିଏ ଅଂଶ ହିସାବରେ ଗଣ୍ୟହୋଇପାରେ, ମାତ୍ର ଗଦ୍ୟ-ପ୍ରବାଦ ଗୁଡ଼ିକ ଠାରୁ ପଦ୍ୟପ୍ରବାଦ ଗୁଡ଼ିକ ସଂଖ୍ୟାରେ ଯଥେଷ୍ଟ ବେଶି ଏବଂ ଚିତ୍ତାକର୍ଷକ । ଛନ୍ଦ ଓ ମେଳର ସ୍ମରଣ-ସହାୟୀ (mnemonic) ଉପାୟ ତାହାକୁ ଶକ୍ତିଶାଳୀ ଓ ସମୃଦ୍ଧ କରିଛି- କେତେବେଳେ ପୃଥକ ଭାବରେ ,କେତେବେଳେ ଏକାସଙ୍ଗରେ ମେଳନାହିଁ ଅଥଚ ଛନ୍ଦର ସ୍ମରଣ-ସହାୟୀ ହେଉଥିବା ପ୍ରବାଦର ସଂଖ୍ୟା ମଧ କମ୍ ନୁହେଁ ।

*ଚାଲୁଣି କହେ ଛୁଞ୍ଚିକୁ- ତୋ ଗାଣ୍ଡିରେ କଣା ।
*ବରକନ୍ୟାର ଦେଖାନାହିଁ , ରାତି ପାହିଲେ ବାହା ।
*ଯୋଡ଼ାକୁ ଘୋଡ଼ା ସରି ନୁହେଁ ।
*ଦଶର ବାଡ଼ି ଜଣକୁ ବୋଝ ।
*ଦଶପୁତ୍ର ସମ କନ୍ୟା ଯଦି ପଡ଼େ ପାତ୍ରେ ।
*ସାରୁବଣରେ କଟାସ ରାଜା ।
*ଭଙ୍ଗା ଗାଁରେ ମୁଖିଆ ରାଜା ।
*ଯେଉଁ ଶେଉଳଟି ଖସିଯାଏ, ସେଇଟି ବଡ଼ ।
*ଲମ୍ବ ନାହିଁ କି ପ୍ରସ୍ଥ ନାହିଁ, ଫିତା ପକେଇ ମାପେ ।
* ଆଡ଼ କଡ଼ ଜଣାନାହିଁ, ସୂତା ଧରେ ହାତରେ ।

**ଏକପଦୀ ପ୍ରବାଦର ଦୃଷ୍ଟାନ୍ତ -**

ଅନ୍ୟପକ୍ଷରେ ସବୁ ପଦ୍ୟମୟ ପ୍ରବାଦରେ ଛନ୍ଦ ନଥିଲେ ମଧ ମେଳ ବ୍ୟବହାର କରାଯାଇଛି। ଏପରି ପ୍ରବାଦ ଖୋଜି ବାହାର କରିବା କାଠିକର ପାଠ, ବରଂ ଆଦି ଶବ୍ଦଟି ସହିତ ଅନୁପ୍ରାସ ବା ପ୍ରତିଧ୍ୱନିସୂଚକ ଶବ୍ଦ ବ୍ୟବହାର କରି ବହୁ ମେଳହୀନ ଛନ୍ଦମୟ ବା ଗଦ୍ୟ.ପ୍ରବାଦକୁ ଅଳଂକୃତ କରାଯାଇଛି ।

*ଭଙ୍ଗାଘରେ ଭୂତର ବସା ।
*ପୋଡ଼ାମାଟି ଯୋଡ଼େ ନାହିଁ ।
*ଖାଇଲା ବେଳେ ଶୋଇବା ଚିନ୍ତା ।
*ଆରସିରେ ମୁହଁ ପଡ଼ୋଶୀର ମୁହଁ ।
*ଦ୍ୱିତୀୟାର ଚାନ୍ଦଦେଖି ତେନ୍ତୁଳି ହେଲା ବଙ୍କା ।
*ନିଆଁ ନ ଥାଇ ଧୂଆଁ ।
*ଚାଲି ନ ଜାଣି ବାଟର ଦୋଷ ।
*ଅଇରି ଖପରା ବଇରି ବା' ।
*ଘରଡ଼ିଙ୍କି କୁମ୍ଭୀର ।
*ଗରିବ ମାଇପ ସଭିଙ୍କ ଶାଳୀ ।

## ଅନୁପ୍ରାସଭିତ୍ତିକ ପ୍ରବାଦର ଦୃଷ୍ଟାନ୍ତ -

## ଗଦ୍ୟପ୍ରବାଦ -

ଗଦ୍ୟପ୍ରବାଦଗୁଡ଼ିକରେ ଛାନ୍ଦ ଓ ମେଳ ଦୃଷ୍ଟିଗୋଚର ହୁଏନାହିଁ । ଅନୁପ୍ରାସ ମଧ୍ୟ କଦାଚିତ୍ ବ୍ୟବହୃତ ହୁଏ । ସେ କ୍ଷେତ୍ରରେ ଏଗୁଡ଼ିକୁ ପ୍ରମୁଖିତ (foregrounded) କରିବା ଉପାୟ ମୂଳତଃ ଶବ୍ଦଗତ (lexico-semantic) ଅର୍ଥର ନାନା ପରମ୍ପରା ଓ ଉତ୍‌ଥାନ ପତନ ସୃଷ୍ଟିକରି ତା ପ୍ରତି ଦୃଷ୍ଟି ଆକର୍ଷଣ କରିବାର ଚେଷ୍ଟା କରାଯାଏ । ପରେ ବିରୋଧ (contrast) ବା (antithesis) ସମାନ୍ତରାଳତା (parallelism) ପ୍ରତି ନିର୍ଦ୍ଦେଶକ ବନ୍ଧନ (correlative formation) ଇତ୍ୟାଦି ଅର୍ଥ ଓ ଅନ୍ୱୟ-ପ୍ରକରଣ ନିର୍ଭର ପ୍ରବାଦର ଉଦାହରଣରେ ସେହିସବୁ ମଣ୍ଡନ କୌଶଳର ଆଲୋଚନା ହୋଇଛି । ଏଠାରେ ସେହି ଧରଣର ଗଦ୍ୟପ୍ରବାଦର କେତେକ ଦୃଷ୍ଟାନ୍ତ ଦିଆଗଲା-

## ଶବ୍ଦଗତ ବିରୋଧ + ଅନ୍ୱୟଗତ ସମାନ୍ତରାଳତା

*ଉଚ୍ଚ ହବ ତ ନୀଚ ହୁଅ ।
*ଦୁଃଖର ଭାତ ସୁଖରେ ଖାଇବ ।
*ଘିଅ କାଢ଼ି ଘୋଳ ବିକା ।

## ନିଛକ ସମାନ୍ତରଳତା

*ତୋତଲା (=ଖନା) ପୁରୁଷ କାଲ ଯଜମାନ ।
*ସହଳ ପାଚେ ସହଳ ପଚେ ।

*ନାଉରୀର ଗୋରୁ ବାମୁଣର ନାଆ ।

## ପ୍ରତିନିର୍ଦ୍ଦେଶକ ବନ୍ଧକ + ଅନ୍ୱୟଗତ ସମାନ୍ତରାଳତା

*ଯାହାର ଘା, ତାହାର ଜ୍ୱାଳା ।
*ଯାବତ୍ ଭୂଇଁ, ତାବତ୍ ଗଡ଼ଗଡ଼ା
*ଯେତେ ଲୁଗା, ସେତେ ଶୀତ ।

ଗଦ୍ୟପ୍ରବାଦରେ ବ୍ୟାକରଣିକ ବା ଅନ୍ୱୟଗତ ସଙ୍ଗଠନ ଦୃଷ୍ଟିରୁ ଦେଖାଯାଏ, ଯେଉଁଗୁଡ଼ିକ ବାକ୍ୟଖଣ୍ଡର ପ୍ରବାଦ, ସେଗୁଡ଼ିକ ମଧ୍ୟରେ କ୍ରିୟାପଦ ଥିଲେ, ତାହା ମୂଳତଃ ଅସମାପିକା କ୍ରିୟା-ବିଶେଷ୍ୟ (verbal noun) ରୂପରେ ରହିଥାଏ ।

ଏଠାରେ ଉଦାହରଣ ସ୍ୱରୂପ କିଛି କ୍ରିୟାହୀନ ଏବଂ କ୍ରିୟାର ବିଶେଷ୍ୟ ରୂପ ସମ୍ୱଳିତ ବାଗ୍‌ଧାରା ତଥା ଗଦ୍ୟପ୍ରବାଦ ପ୍ରଦତ୍ତ ହେଲା ।

## କ୍ରିୟାହୀନ ବାକ୍ୟଖଣ୍ଡ

*ଆମ୍ୱଡ଼ା ଆଉ ଆମ୍ୱରେ ।
*କାଶୀରେ ଭୂମିକମ୍ପ ।
*ତୁଳସୀ ବଣରେ ବାଘ ।
*ପିଆଦାର ପୋଷାକ ଆଉ ନଟୀର ବେଶ ।
*ପେଟେ ପେଟେ ବୁଦ୍ଧି ।
*ଶାପେ ବର । କୋପେ ବର । ତପେ ବର ।
*କଟା ଘା'ରେ ଲୁଣ ଛିଟା ।

## କ୍ରିୟା ବିଶେଷ୍ୟର ବାକ୍ୟଖଣ୍ଡ

*ଅଭଡ଼ା ନାଁ ଲିଭା ।
*କଥା ବିକି ଖିଆ ।
*କଣ୍ଟାଦେଇ କଣ୍ଟାକଢ଼ା ।
*ବେଲା ବାସନ ବିକି ଘିଅ ଭାତ ଭୋଜନ ।
*ନାକରେ ସୋରିଷ ତେଲ ଦେଇ ଶୟନ ।
*ନିଶରେ ତେଲ ମାରି ଶୁଆ ।
*ପଥରରେ ମୁଣ୍ଡ ଠୁକା ।

ଯେଉଁସବୁ ବାଗ୍‌ଧାରାମୟ ଗଦ୍ୟ ପ୍ରବାଦରେ ଧ୍ୱନିଗତ (ଛନ୍ଦ,ମେଳ, ଅନୁପ୍ରାସ) ଶବ୍ଦଗତ (lexico-semantic) ବା ଅନ୍ୱୟଗତ (syntactical) କୌଣସି ପ୍ରକରଣ କୌଶଳ ବ୍ୟବହାର କରାଯାଇନଥାଏ, ସେଗୁଡ଼ିକରେ ଯଦି ଅର୍ଥଗତ ଦୃଷ୍ଟିରୁ କୌଣସି ଚମକପ୍ରଦ ଇମେଜ ବା ସଂବାଦ ନରହେ, ତେବେ ସେଗୁଡ଼ିକ ଦରିଦ୍ରବାଚୀ ହୋଇଯାଏ ଏବଂ ସ୍ମୃତିଗତ ଦୃଷ୍ଟିରୁ ସ୍ଥାୟୀତ୍ୱ ଉପରେ ସେଗୁଡ଼ିକର ଦାବି ଦୁର୍ବଳ ହୋଇପଡ଼େ । କିନ୍ତୁ ସୁଖର କଥା, ଅଧିକାଂଶ ପ୍ରବାଦର ଚିତ୍ରକଳ୍ପ ବା ସମ୍ବାଦ ବା ବିଷୟ ବିନ୍ୟାସ ମଧ୍ୟରେ କିଛି ନା କିଛି ଚମକପ୍ରଦ ଅଭିଜ୍ଞତାର ପରିବେଷଣ ସନ୍ନିବେଶିତ ଥାଏ, ଯାହାଫଳରେ ଦୁର୍ବଳତମ ପ୍ରବାଦ ମଧ୍ୟ ନିଛକ ବର୍ଣ୍ଣନା ଠାରୁ ଚିତ୍ତାକର୍ଷକ ହୋଇଥାଏ । ପ୍ରବାଦରେ ଆଉ କୌଣସି ଅଳଂକରଣ ଥାଉ କି ନ ଥାଉ, ସାମାନ୍ୟ ଅତିରଞ୍ଜନ ରହିଥାଏ, କିମ୍ବା ଧିକ୍କାର, ବ୍ୟଙ୍ଗ, କୌତୁକ ଇତ୍ୟାଦି ଆବେଗର ସମ୍ୟକ୍ ସ୍ପର୍ଶ ଉପଲବ୍ଧ ହୁଏ । ଫଳତଃ  ଉପଯୁକ୍ତ ବର୍ଣ୍ଣନା ଉପରେ ପ୍ରବାଦ ସର୍ବଦା ବିଜୟୀ, ତାହା ଗଦ୍ୟପ୍ରବାଦ ହେଲେ ବି ହେବ ।

## ପଦ୍ୟପ୍ରବାଦ

ପଦ୍ୟ ପ୍ରବାଦ ସହଜରେ ଗଦ୍ୟପ୍ରବାଦଠାରୁ ଅଲଗା ହୋଇଥାଏ ତାର ଛନ୍ଦ ଓ ମେଳ ଦ୍ୱାରା ଦୁଇ ଅଂଶର ଭାରସାମ୍ୟରେ । ଉଚ୍ଚାରଣର ଧ୍ୱନିଗତ ଉପାୟମାନ ପଦ୍ୟ ପ୍ରବାଦରେ ହିଁ ସର୍ବାଧିକ ବେଶି ବ୍ୟବହୃତ ହୁଏ । ତାହାହିଁ ସ୍ୱାଭାବିକ, କାରଣ କବିତାର ଭାଷା ମୂଳତଃ ଧ୍ୱନିସଂସ୍ଥାନର ପ୍ରାଥମିକ କୌଶଳରେ, ଗଦ୍ୟଠାରୁ ଅଲଗା ହୋଇଥାଏ । ଏହାପରେ ଯେଉଁସବୁ  ରୀତିଗତ କୌଶଳର ଆଲୋଚନା କରାଯାଇଛି ତାହାର ଉଦାହରଣରେ ଗଦ୍ୟ ପଦ୍ୟର ତଫାତ୍ ଦର୍ଶାଯାଇ ନାହିଁ । ଏହା ସହଜରେ ପ୍ରତୀୟମାନ ହେବ ଯେ ଧ୍ୱନିଗତ କୌଶଳ ପଦ୍ୟ ପ୍ରବାଦରେ ହିଁ ସବୁଠାରୁ ବେଶି ବ୍ୟବହୃତ । ସେଗୁଡ଼ିକ ହେଲା ଛନ୍ଦ, ମେଳ ଏବଂ ଅନୁପ୍ରାସ ।

## ପ୍ରବାଦର ଭାଷା ଶୈଳୀ

### (କ) ସମେଳଯୁଗ୍ମକ

ଯେଉଁ ପ୍ରବାଦ ଖୁବ୍ ଶୀଘ୍ର  ଆମ  ମନକୁ ଆସିଯାଏ ବା ଯେଉଁସବୁ ପ୍ରବାଦକୁ ଆମର ସ୍ମୃତି ବେଶିମାତ୍ରାରେ ସଂରକ୍ଷିତ କରିଥାଏ, ସେଗୁଡ଼ିକ ସମେଳଯୁଗ୍ମକ ପ୍ରବାଦଭୁକ୍ତ । ଯେପରିକି -

* ଉପର ଘେରା ମଝିରେ ଫାଙ୍କ ,ଦେଖୁଛି କେତେ ଲାଖ୍ ଲାଖ୍ ।
* ତାଳ ଯଦି ହେଲା କାତ, ବାରବର୍ଷକୁ ଭାବେ ଏକ ରାତ ।

* ତାସ, ଦାବା, ପଶା, ଏ ତିନି ସର୍ବନାଶ।
* ଜାତି କୁଆର ଛା' (=ଛୁଆ), ବସାରେ କରେ ରା'।
* ଗଞ୍ଜା, ଗୁଲି, ଅନ୍ନଭଙ୍ଗା, ତିନିକୁ ନେଇ ଫରାସୀଡ଼ିଙ୍ଗା।
* ଯୋଉଁଠି ଘଇତାର ବସା, ସେଇଠି ଅତିଥିର ଆଶା।
* କୁଂଜଡ଼ା (=ଦୁଷ୍ଟ), କାଓ୍ୱାଲି ,ନୁର (=ସୌନ୍ଦର୍ଯ୍ୟ) ତିନିକୁ ନେଇ ମେଦିନୀପୁର।
* ପୋସ୍ତ,ଖଟା, ହରଡ଼-ଜାଇ, ଯାକୁ ଖାଇବୁ କଟକ ଯାଇ।

ଏଗୁଡ଼ିକ ଗୋଟିଏ ଦ୍ୱିପଦୀର ଦୁଇଟି ପଂକ୍ତି ସଦୃଶ ଦ୍ୱିତୀୟ ପଂକ୍ତି ଶେଷରେ ଅର୍ଥ ପ୍ରକାଶ ପାଇଥାଏ। କିନ୍ତୁ ଏହି ଦୁଇଟି ପଂକ୍ତି ମେଳଯୁକ୍ତ (rhimining) ଅନ୍ତିମରେ ମେଳହୁଏ। ଅଧିକାଂଶ କ୍ଷେତ୍ରରେ ଛନ୍ଦ ଓ ମେଳରେ ପ୍ରାୟ ସମାନ ଓଜନ ଓ ସମାନ ମାପର ଦୁଇଟି ପଂକ୍ତି ମିଶି ଏହି ଶ୍ରେଣୀର ପ୍ରବାଦ ସଂଗଠିତ ହୋଇଥାଏ। ତେବେ ସବୁବେଳେ ଯେ ସମାନ ମାପ ବା ସମାନ ଓଜନର ପଂକ୍ତି ପଦାନ୍ତ ମିଳି ଦ୍ୱିପାକ୍ଷିକ ଭାରସାମ୍ୟ ରଚନା କରେ ତା' ନୁହେଁ, ବେଳେବେଳେ ଗୋଟିଏ ଶବ୍ଦକୁ ଗୋଟିଏ ପାର୍ଶ୍ୱରେ ରଖି ବାକି ଅଂଶଟିକୁ ଅନ୍ୟ ପାର୍ଶ୍ୱରେ ରଖାଯାଇଥାଏ ଏବଂ ଶବ୍ଦଟି ସହିତ ବାକିଅଂଶ ପଦାନ୍ତର ମେଳ କରାଯାଇଥାଏ। ଯେପରିକି-

* ଚାଚା, (=କକା /ଦାଦା) ନିଜକୁ ବଞ୍ଚା।
* ଆଲ୍ଲା, ଭାତ କପଡ଼ାରେ ମାରିଲା।
* ନିଅ କମଳ, ନିଜକୁ ସମ୍ଭାଳ।
* ଇଟା (=ଚୁଙ୍ଗୁଡ଼ି), କାଟିଲେ କୁଟିଲେ ତୁଚ୍ଛା।
* ଧୋବା, ପର ଲୁଗାରେ ଶୋଭା।

ସିଦ୍ଧାନ୍ତ ସହିତ ପରବର୍ତ୍ତୀ ବାକ୍ୟ ବା ବାକ୍ୟଖଣ୍ଡର ଅନ୍ତିମ ମେଳର ଆଉ ଟିକିଏ ସମ୍ପ୍ରସାରିତ ଦୃଷ୍ଟାନ୍ତ ଦେଖିବାକୁ ମିଳିଥାଏ କେତେଗୁଡ଼ିକ ପ୍ରବାଦରେ, ଯେଉଁଠି ଶବ୍ଦ/ବାକ୍ୟ-ଏହି ଦୁଇଟି ପକ୍ଷ ନ ହୋଇ, ମେଳର ଦୁଇଟି ପକ୍ଷ ବାକ୍ୟଖଣ୍ଡ ଓ ବାକ୍ୟ ହୋଇଥାଏ। କିନ୍ତୁ ଏହି ଦୁଇଟି ଛନ୍ଦ ଦୃଷ୍ଟିରୁ ସମାନ ଦୈର୍ଘ୍ୟ ବିଶିଷ୍ଟ ନୁହେଁ। ପ୍ରଥମଟି ଛୋଟ ଶେଷଟି ବଡ଼। ଯେପରିକି :-

* ତମରି ପାଇଁ, ଚଣା ଭିଜାଇ ଚୋବାଇ ମରେ ମୁହିଁ।
* ଆହାମକ ଏକ (=ନିର୍ବୋଧ/ବୋକା), ଯେ ପରଧନରେ କରେ ଟେକ।
* ଆହାମକ ଦୁଇ, ଯେ ପରଚାଳରେ ଟେକେ ପୁଇ।
* ଆହ୍ଲାଦର ଚାନ୍ଦ, ବୁଢ଼ା କହେ ବୁଢ଼ୀଲୋ, ମୋତେ କୋଳକରି ରାନ୍ଧ।

* ଶୁଣଲୋ କଥାର ଛନ୍ଦ, ହାଣ୍ଡି ଭାଙ୍ଗି ମାଛଗଲା, ଝୋଳ ରାନ୍ଧିବା ବନ୍ଦ ।
* ସ୍ୱାମୀ ମୋର ଗୁରୁଜନ, ଗୋଟିଏ ରାଜାର ନୁହେଁ, ସାତ ରାଜାର ଧନ ।

## ଓଲଟା ଦୃଷ୍ଟାନ୍ତର ଉଦାହରଣ

*ଖର ଗାମିନୀ, ପାନ କୁଟଣୀ, ଅବିଆଣୀ ଧାଇ,ଏହି ତିନିର ଯଶ ନାହିଁ ।
*ହିନ୍ଦୁର ଦାଢ଼ି, ମୁସଲମାନର ନାରୀ, ଗାଁ ମୁଣ୍ଡର ବାରି,
ବଣରେ ଚରା ଗାଈ,ଏଚାରିଙ୍କୁ ବିଶ୍ୱାସ ନାହିଁ ।

## ମେଳଯୁକ୍ତ ପ୍ରବାଦରେ ମେଳର ସ୍ୱଚ୍ଛଳତା ବା ଆଧିକ୍ୟ ବିଦ୍ୟମାନ

ଯେପରିକି-

*ଆପଣେ ପୋଲା ଖାଏ, ଘର ଆଡ଼ିକି ଚାହେଁ ।
ପରର ପୋଲା ଖାଏ, ବଣଆଡ଼ିକି ଚାହେଁ ।
*ଖାଇ ହଗେ, ଶୋଇ ଜାଗେ,
ତାର ଗଣ୍ଠି କେବେ ନ ଲାଗେ ।
*ପୀରତି ଯେବେ ଜୁଟେ, ଫୁଟା କଡ଼େଇ ଫୁଟେ,
ପୀରତି ଯେବେ କଟେ, ଢ଼ିଙ୍କିରେ ପକେଇ କୁଟେ ।

## (ଖ) ବିରୋଧ ବିନ୍ୟାସ

ପ୍ରବାଦରେ ଯଦି କେବଳ ମେଳଯୁକ୍ତ (rhimining) ପଦର ସମାହାର ଥାଆନ୍ତା, ତାହେଲେ ତାର ଆକର୍ଷଣ ଅମେଳଯୁକ୍ତ ବାକ୍ୟଠାରୁ ନିଶ୍ଚିତ ଭାବରେ ଅଧିକ ହୋଇଥାଆନ୍ତା । କିନ୍ତୁ ଭାଷାଶୈଳୀର ଶବ୍ଦ ଅର୍ଥଭିତ୍ତିକ **ଅନ୍ୟ**ଏକ ଉପାୟ ପ୍ରୟୋଗ କରି ପ୍ରବାଦର ଆବେଦନକୁ ଆହୁରି ଅଧିକତର **କରାଯାଇ**ଥାଏ । ଏହି ଉପାୟକୁ ଇଂରାଜୀରେ (antithesis/contrast) କହନ୍ତି । ଓଡ଼ିଆରେ ଏହାକୁ 'ବିରୋଧ ବିନ୍ୟାସ' ବୋଲି କୁହାଯାଇପାରେ । ଏହିପରି ବିରୋଧର ପ୍ରୟୋଗ ଅମେଳଯୁକ୍ତ ଓ ମେଳଯୁକ୍ତ ପ୍ରବାଦ ଉଭୟରେ ମଧ ହୋଇଥାଏ ଓ ଧ୍ୱନିଗତ ଅନ୍ତଃମେଳ ଏବଂ ଅର୍ଥଗତ ବିରୋଧର ସୂକ୍ଷ୍ମତା ସମ୍ପର୍କରେ ମେଳ ଯୁକ୍ତ ପ୍ରବାଦ ବିଶେଷ ଭାବରେ ହୃଦୟଗ୍ରାହୀ ହୋଇଉଠେ ।

## ଅମେଳଯୁକ୍ତ ପ୍ରବାଦର ବିରୋଧ

### ଗୋଟିଏ ବିରୋଧ

### (କ) (ବିଶେଷ୍ୟ ନିର୍ଭର)

* ଅତି ପ୍ରୀତିରେ ବହୁ ବିଚ୍ଛେଦ ।
* ଅସଲର ଖୋଜାନାହିଁ, ସୁଧର ଖବର ।
* କେହି ଶଶା (=କାକୁଡ଼ି) ଖାଏ, କେହି ମଶା ମାରେ ।

କେଞ୍ଚୁଆ ଖୋଳୁ ଖୋଳୁ ସାପ ବାହାରେ ।

## (ଖ) (ବିଶେଷଣ ନିର୍ଭର)

* ଅନେକ ଗର୍ଜନ ଟୋପାଏ ବୃଷ୍ଟି ।
* ଏକାଠି ଯାତ୍ରା ପୃଥକ ଫଳ ।
* ଏକା ମୁହଁରେ ଦୁଇକଥା ।

### ଦୁଇଟି ବିରୋଧ

* ଚୋରର ଦଶଦିନ, ଗୃହସ୍ଥର ଗୋଟିଏ ଦିନ ।
* ଚାପୁଡ଼ା ମାଡ଼ ତୁଚ୍ଛା, ଫୁଲ ମାଡ଼ରେ ମୂର୍ଚ୍ଛା ।

### ତିନୋଟି ବିରୋଧ

* ଖିଡ଼୍‌କି ଦେଇ ହାତୀ ଗଲେ, ଦାଣ୍ଡ ଦୁଆରେ ଛୁଟା ।
  ମହତର କୁଡ଼ିଆ ଭଲ, ଅସତ୍ୟର
  ସିଂହାସନ କିଛିନୁହେଁ ।

### ମେଳଯୁକ୍ତ ପ୍ରବାଦର ବିରୋଧ

* ଯାହାକୁ କଲି ଆଶା, ସେଇ ହେଲା ସର୍ବନାଶ ।
* ଗଢ଼ିବାକୁ ବସେ ଠାକୁର, ହୋଇଗଲା ସେ କୁକୁର ।
* କନିଆ ମାଇପ ପାଟରାଣୀ, ଆଗ ମାଇପ ଧାନକୁଟଣୀ ।
* ସତ୍‌ସଙ୍ଗ ସ୍ୱର୍ଗବାସ, ଅସତ୍ ସଙ୍ଗ ସର୍ବନାଶ ।
* ଘରେ ନାହିଁ ଅଷ୍ଟରମ୍ଭା, ଦାଣ୍ଡକୁ ଗଲେ କୁଞ୍ଚ ଲମ୍ବା ।
* ଧନୀ ବନ୍ଧୁ ପିଠିରେ ପଡ଼େ, ଲକ୍ଷଟଙ୍କା ପିଠିରେ ପଡ଼େ ।
* ଗରୀବ ବନ୍ଧୁ ପିଠିରେ ପଡ଼େ, ଝଟାବାଡ଼ି (=ଝାଡୁ) ପିଠିରେ ପଡ଼େ ।

## (ଗ) ଅନୁପ୍ରାସ ଭିତ୍ତିକ ପ୍ରବାଦ

ମେଳଯୁକ୍ତ ଯୁଗ୍ମକୁ ଅନ୍ତଃମେଳ ସାହାଯ୍ୟରେ ପ୍ରବାଦକୁ ଦୁଇଭାଗରେ ବିଭକ୍ତ କରାଯିବାର ଦେଖାଯାଏ, ମାତ୍ର ଏଠାରେ ତା ବିନିମୟରେ ଦେଖୁ, ପ୍ରବାଦର ଆଦି

ଶବ୍ଦଟିର ଅନୁପ୍ରାସ ଘଟିଛି ତାହାର ପରବର୍ତ୍ତୀ ମାତ୍ର ଗୋଟିଏ ଅନ୍-ଅନ୍ତ୍ୟ (non-final) ଶବ୍ଦ ସହିତ । ମେଳ ବଦଳରେ ଏଠାରେ ଅନୁପ୍ରାସ ଏବଂ ତାହା ଫଳରେ ପ୍ରବାଦଟିରେ ଗୋଟିଏ ଧରଣର ଧ୍ୱନିଗତ ଭାରସାମ୍ୟ ସୃଷ୍ଟି ହେଉଛି, ଯେପରିକି -

*ଠିକା ଜମି, ନିକାର (=ମୁସଲମାନ ବିଧବାସ୍ତ୍ରୀ ) ମାଇପ ।

*ଧାରରେ ନ କାଟିଲେ ଭାରରେ କାଟେ ।

*ଜଲ୍ଲାର (=ଖଜୁଆ) ଘର, ବଲ୍ଲା (=ଶତ୍ରୁ) ରେ ଭାଙ୍ଗେ ।

*କୁଆ ଦେଖାଇ ଛୁଆ ଭୁଲାଇବା ।

*ପରର ଧନ ବରର ବାପ ।

*ପାଗଳ କି ନ କହେ, ଛାଗଳ କି ନ ଖାଏ ।

## ଏକପଦୀ ପ୍ରବାଦ

କେତେକ ପ୍ରବାଦ ଦେଖିଲେ ମନେହୁଏ, ସେଗୁଡ଼ିକ ଯେପରି କୌଣସି କବିତାର ମେଳଯୁକ୍ତ ଦ୍ୱିପଦୀର ଗୋଟିଏ ପଙ୍‌କ୍ତି, ସମ୍ଭବତଃ ୧ମ ପଙ୍‌କ୍ତିଟି, ଯେପରି ବିଛିନ୍ନ କରି ଉଦ୍ଧାର କରାଯାଇଛି । କୌଣସି କୌଣସି କ୍ଷେତ୍ରରେ ଦେଖାଯାଏ ଯେ, ତାହା ବିଛିନ୍ନ କାବ୍ୟରପଙ୍‌କ୍ତି ଏବଂ ଆଉ ଗୋଟିଏ ପଦ ସେଠାରେ ତାହାର ଅର୍ଥଟିକୁ ସମ୍ପୂର୍ଣ୍ଣ କରୁଛି । ଯେପରିକି -

*ଏକା ରାମକୁ ରକ୍ଷା ନାହିଁ ସୁଗ୍ରୀବ ଦୋସର (=ସଙ୍ଗୀ) ।

*ମନ୍ତ୍ରର ସାଧନ କିମ୍ବା ଶରୀର ପତନ ।

କିନ୍ତୁ ଅନ୍ୟତ୍ର ଏକପଦୀ ପ୍ରବାଦଗୁଡ଼ିକ ଶୁଣିଲେ କେତେକ ସ୍ଥଳରେ ଅପୂରିତ ପ୍ରତ୍ୟାଶା ରହିଯାଏ, ଯଦିଚ ଯେଉଁଭାବରେ ସେଗୁଡ଼ିକ ଅଛି, ସେଥିରେ ଅର୍ଥ ବା ବ୍ୟଞ୍ଜନା ସ୍ଥୂଳତଃ ସ୍ୱୟଂ ସମ୍ପୂର୍ଣ୍ଣ ବୋଲି କହିବାକୁ ହେବ । ଏଗୁଡ଼ିକ ଶୁଣିଲାମାତ୍ରେ ମନେହୁଏ ଯେପରି ଆଉ ଗୋଟିଏ ମେଳ ପଙ୍‌କ୍ତି ଉଦ୍ଧୃତ ହୋଇନାହିଁ ।

*ନିଜେ ଶୋଇବାକୁ ସ୍ଥାନ ନାହିଁ, ଶଙ୍କରାକୁ ଡାକେ ।

*ହାତେ ଡେ଼ଇଁ ପାରେ ନା, ସେ ଡେ଼ଇଁବ ଲଙ୍କା ।

*ପାପୀ ଯିବେ ଗଙ୍ଗାସ୍ନାନେ, କାଠ ସାଉଣ୍ଟିବ କିଏ ?

*ନିଜେ ରହେ ଡ଼ରିମରି, ପୁଅକୁ ପଠାଏ ଚର ।

*ପାଲା ଶୁଣିବ ଅକ୍ରୁର ହରଣ, ପଇସା ବେଳକୁ ଗୋଟେ ।

*କିଏ ମରେ ଦଳ କାଢ଼ି, କିଏ ଖାଏ କଉ ।

*ମାଆଠାରୁ ଦରଦ ବେଶି, ତାକୁ ଜାଣ ଡାହାଣୀ ।

## ଉକ୍ତିର ନିର୍ଭରଶୀଳତା

ଇଂରାଜୀ ପ୍ରବାଦ ବିଚାରବେଳେ wellerism ନାମକ ଏକ ଶ୍ରେଣୀୟ ପ୍ରବାଦ ଉଲ୍ଲେଖ କରାଯାଏ । ଚାର୍ଲସ୍ ଡିକେନସ୍‌ଙ୍କର 'ପିକ୍‌ଉଇକ୍ ପେପର୍ସ', ପୁସ୍ତକର ଶ୍ୟାମ ଓୟେଲାରର - କଥାର ଶୈଳୀରୁ ଏପରି ନାମକରଣ କରାଯାଇଛି । ଏପରି ସ୍ଥଳେ ଗୋଟିଏ ପ୍ରାଣୀର ଆଚରଣ ଏବଂ ତା ସହିତ ତାର ଗୋଟିଏ ଉକ୍ତିର ଉଲ୍ଲେଖ ରହିଥାଏ । ପୁଣି ଦୁଇଟି ମଧ୍ୟରେ ଗୋଟିଏ ଶ୍ଳେଷାତ୍ମକ ସମ୍ପର୍କ ସ୍ଥାପନ କରାଯାଏ, ଯେପରି- "All 's well that ends well, said the peacock when he looked at his tail" କିନ୍ତୁ ଓଡ଼ିଆ ପ୍ରବାଦରେ ଏତାଦୃଶ ଦୃଷ୍ଟାନ୍ତ ଅତି ବିରଳ । ଯେପରି -

* ଲୋକେ କହନ୍ତି ସୁଖରେ ଅଛି, ମୁଣ୍ଡଉପରେ ଉଡୁଛି ମାଛି ।
* ଲୋକେ କହନ୍ତି ଅଛି ଭଲା (=ଭଲ), ଶାଳୁକ (=ପଦ୍ମକନ୍ଦ) ଖାଇ ଦାନ୍ତ କଳା ।
* କାଲ ବୋଲେ - ଗାଏ ଭଲ, କଣା ବୋଲେ ନାଚେ ଭଲ ।
* ଟାଲୁଣି କହେ, ଛୁଅଁିଲୋ ତୋ ଗାଣ୍ଡିରେ କଣା ।

କିନ୍ତୁ ଏଗୁଡ଼ିକୁ 'ଓଏଲାରିଜିମ୍' କହିବା କଠିନ । କାରଣ ଉଲ୍ଲିଖିତ ପ୍ରଥମ ଦୁଇଟି ପ୍ରବାଦରେ ଉକ୍ତିର ଉକ୍ତି ହିଁ ପ୍ରଧାନ, ବାକି ଅଂଶଟି ବାଦ୍ ଦେଲେ ମଧ୍ୟ ତାହାର ଗୁଣାର୍ଥବୋଧକତା ବା ବ୍ୟଞ୍ଜନାର ହାନି ହୋଇ ନ ଥାନ୍ତା । ଏହି ଦୁଇଟି ପ୍ରବାଦରେ ଲୋକେ କହନ୍ତି ପ୍ରଥମ ଅଂଶଟି ଅବାନ୍ତର- ତା ସଂଗରେ ଉକ୍ତିଟିର ବିଶେଷ ସମ୍ପର୍କ ସ୍ଥାପିତ ହୋଇନାହିଁ । ପରବର୍ତ୍ତୀ ଦୁଇଟି ପ୍ରବାଦରେ ଅବଶ୍ୟ ବକ୍ତା ଓ ଉକ୍ତି ମଧ୍ୟରେ ଏକ ଜରୁରୀ ସଂପର୍କ ନିହିତ । ଉକ୍ତିଟିର ଅନ୍ତର୍ନିହିତ ଏବଂ ଉଦ୍ଦିଷ୍ଟ ମୃଦୁ ବ୍ୟଙ୍ଗଟି ସେତେବେଳେ ଯାଇ ଧରା ପଡ଼ିବ, ଯେତେବେଳେ ବକ୍ତାର ପରିଚୟ ଜଣା ପଡ଼ିବ । ବକ୍ତା ଓ ଉକ୍ତିର ଏହି ବିରୋଧୀ ସଂପର୍କ ପାଇଁ ଏହି ପ୍ରବାଦଗୁଡ଼ିକ ପ୍ରଥମ ଦୁଇଟି ଠାରୁ ଅଲଗା, ତେବେ 'ଓଏଲାରିଜିମ୍'ର ଲକ୍ଷଣ ଅଳ୍ପ ମାତ୍ରାରେ ଫୁଟି ଉଠିଛି ନିମ୍ନଲିଖିତ ପ୍ରବାଦମାନଙ୍କରେ :-

* କାଲ ଶୁଣେ ତେଲଙ୍ଗୀ ବାଦ୍ୟ, ବୋଲେ ମୋ 'ବାହା'ର ଆଦ୍ୟ ।
* ଖଟା, ଝାଳ (=ରାଗ), ଆଉ କଡ଼ା ଘଇତା,
  ମାଇପ ବୋଲେ ଏଇ ମୋର ଚାହିଦା ।
* ଘଇତା ନ ଡାକେ କତି, ମାଇପ ମାଗେ ନିତି ରତି ।
* ଯାହା ଗଳାରେ ଘା, ସେ ବୋଲେ ବଞ୍ଚିବ,
  ଯାହା ଗୋଡ଼ରେ ଘା, ସେ ବୋଲେ ମରିବ ।

ଉଲ୍ଲିଖିତ ପ୍ରବାଦଗୁଡ଼ିକରେ wellerism ର ଗୋଟିଏ ପ୍ରଧାନ ବିଶେଷତ୍ୱର ଅଭାବ ପରିଲକ୍ଷିତ ହୁଏ । ସେହି ବିଶେଷତ୍ୱଟି ହେଉଛି, ଯାହାକୁ ଇଂରାଜୀରେ କହନ୍ତି "Pun", ଅର୍ଥାତ୍ ଓଡ଼ିଆରେ 'ଶବ୍ଦଶ୍ଳେଷ' । ଉକ୍ତିର ଗୋଟିଏ ଶବ୍ଦ ଅନ୍ୟ ଅର୍ଥରେ ବା ବ୍ୟଞ୍ଜନାର ବାକି ଅଂଶରେ ଆଭାସିତ ହୁଏ ।ଏହି ଦୁଇଟି ମଧ୍ୟରେ ଗୋଟିଏ ସ୍ତରର ସମ୍ପର୍କ ଏବଂ ଅନ୍ୟ ଗୋଟିଏ ସ୍ତରର ବିରୋଧତା ପାଇଁ ଏହି ଧରଣର ପ୍ରବାଦମାନରୁ ଏକ ବିଶେଷ ରସର ସଂଚାର ହୁଏ । ତେଣୁ ଓଡ଼ିଆ ପ୍ରବାଦରେ ଏହି wellerism ର ଯଥାର୍ଥ ପ୍ରତିରୂପର ନିଦର୍ଶନ ସାଧାରଣତଃ ମିଳେନାହିଁ । ଏ ପ୍ରସଙ୍ଗରେ ଏତିକି କୁହାଯାଇ ପାରେ ଯେ- ଇଂରାଜୀ wellersim ଧରଣର ପ୍ରବାଦ ସମୂହ ଅପେକ୍ଷାକୃତ ଆଧୁନିକ ଯୁଗର ଏବଂ ତାହାସବୁ ସଜ୍ଞାନ ସାହିତ୍ୟିକ ରଚନା । ଐତିହ୍ୟଗତ ଗ୍ରାମ୍ୟ ପ୍ରବାଦ ମାନଙ୍କ ମଧ୍ୟରେ ସେ ସବୁର ଆକ୍ଷରିକ ପ୍ରତିରୂପ ଖୋଜିବା ଏକ ବିଡମ୍ବନା ।

ବାସ୍ତବ ପକ୍ଷରେ ଅଧିକାଂଶ ଓଡ଼ିଆ ପ୍ରବାଦ ସ୍ୱତନ୍ତ୍ର ଉକ୍ତି ସର୍ବସ୍ୱ । ହଠାତ୍ କହିବା କାଳୀନ ଉଚ୍ଚାରଣ ଭଳି ସେଗୁଡ଼ିକରେ ଅକଥନୀୟ ସଂଳାପର ସ୍ୱଭାବ ଏତେ ପରିମାଣରେ ନିହିତ ଯେ, ରଚିତ ସାହିତ୍ୟିକ ବା ଶିଳ୍ପିତ (artistic) ପ୍ରବାଦ ଗୁଡ଼ିକୁ ସେଗୁଡ଼ିକଠାରୁ ଖୁବ୍ ସହଜରେ ଅଲଗା କରିଦେବା ସମ୍ଭବ । ଏଥିରୁ ପ୍ରବାଦର ପରବର୍ତ୍ତୀ ପ୍ରସଙ୍ଗ ବ୍ୟଞ୍ଜନାର ପ୍ରକାର ଭେଦ ମଧ୍ୟକୁ ଆସିହୁଏ । ତେଣୁ ପ୍ରବାଦବ୍ୟଞ୍ଜନାର ପ୍ରକାର ଭେଦକୁ ଉପଲବ୍ଧି କରିବାପାଇଁ ନିମ୍ନମତେ ଅବତାରଣା କରାଯାଉଛି ।

## ପ୍ରବାଦର ଭଣିତା ଭେଦ- ବ୍ୟାପ୍ତି ଓ ବ୍ୟଞ୍ଜନାର ନାନା ସ୍ତର

ପୂର୍ବ ଆଲୋଚନାରେ ନିଛକ ତତ୍ତ୍ୱଗତ ଆବ୍‌ଷ୍ଟ୍ରାକ୍ଟ୍ ବକ୍ତବ୍ୟର କେତୋଟି ସ୍ତର ପରିଲକ୍ଷିତ ହୋଇଛି । ଏଣିକି ଭଙ୍ଗୀ ଓ ଭଣିତା ଦୃଷ୍ଟିରୁ ସେଗୁଡ଼ିକୁ ଭିନ୍ନ ଭିନ୍ନ ଭାବେ ଗ୍ରହଣ କରାଯାଇପାରେ । ଯଥା -'ସଂବାଦ ଶରୀର', 'ଦୃଷ୍ଟାନ୍ତ ଶରୀର' ଏବଂ 'ତତ୍ତ୍ୱ ଶରୀର' । ଏ ସମ୍ପର୍କରେ କେତୋଟି ଦୃଷ୍ଟାନ୍ତ ପ୍ରଦତ୍ତ ହେଲା :-

### ସଂବାଦ ଶରୀର

* ଗଞ୍ଜା ,ଗୁଲି ,ଦଣ୍ଡା ବାଳୁଙ୍ଗା,ଏ ତିନିକୁ ନେଇ ଫରାସୀ-ଡ଼ିଙ୍ଗା ।
* ଗୁଲି, ଖିଲି ,ମୋତିଚୂର, ତିନିକୁ ନେଇ ଯାଜପୁର ।
* ଗଞ୍ଜା ,ତାଡ଼ି, ପ୍ରବଞ୍ଚନା, ଏ ତିନିକୁ ନେଇ ସାରସକଣା ।
* ଘୋଷ, ବୋଷ ,ମିତ୍ର କୁଳଅଧିକାରୀ<br>ଅଭିମାନେ ବାଲୁଆ ଦଉ ଦିଏ ମୁହିଁ ମୋଡ଼ି ।

*ରାସ, ତାସ, ମାଇପ ବଟି ,ତିନିକି ନେଇ ବାମନଘାଟୀ ।
*ଚଣ୍ଡୀ, ସପିଣ୍ଡି, କୁଶଣ୍ଡି, ତିନିକୁ ନେଇ ବାମଣ୍ଡି ।
*ଜଳ, ଜୋଲାପ, ଜୁଆଚୋରୀ, ଏ ତିନିକୁ ନେଇ ଡାକ୍ତରୀ ।
*ରାଣ୍ଡ, ଷଣ୍ଡ, ସନ୍ନ୍ୟାସୀ, ତିନିକୁ ନେଇ ବାରଣାସୀ ।

ଏହି ପ୍ରବାଦଗୁଡ଼ିକ ନିର୍ଦ୍ଦିଷ୍ଟ ଜ୍ଞାତବ୍ୟରୁ ବେଶି କିଛି ଅର୍ଥ ପ୍ରକାଶକ ନୁହେଁ । କିନ୍ତୁ ଆହୁରି ବ୍ୟାପକ ଅଥଚ ବିଷୟଗତ ଭାବେ ସୁନିର୍ଦ୍ଦିଷ୍ଟ ଅର୍ଥ ବ୍ୟଞ୍ଜକ ପଦର ଦୃଷ୍ଟାନ୍ତ ମଧ୍ୟ ଉପସ୍ଥାପନ କରାଗଲା -

*କ୍ଷେତ ତୁଷ୍ଟ ମଇରେ, ଭୋଜନ ତୁଷ୍ଟ ଦହିରେ ।
*ବାଉଁଶ ଫୁଲିଲେ ମରେ, ମଣିଷ ବୁଲିଲେ ମରେ ।
*ଜର ଆଉ ପର, ଖାଇବାକୁ ନ ଦେଲେ ଛାର ।
*ପୁଅ ନଷ୍ଟ ହାଟରେ, ବୋହୂ ନଷ୍ଟ ଘାଟରେ ।
*ବାପ ଘରେ ଝିଅ ନଷ୍ଟ, ପଖାଳ ଭାତରେ ଘିଅ ନଷ୍ଟ ।
*ମୁଖିଆ ଚିହ୍ନିବ ତୁଣ୍ଡରେ, ଦାତା ଚିହ୍ନିବ ଦାନରେ,
ଗୋଁଆଁର ଚିହ୍ନିବ କର୍କଶ କଥାରେ ।
*ମୁର୍ଖର ବି ଅଭିମାନ ନିଜକୁ ମଣେ ବୁଦ୍ଧିମାନ ।

ଏଗୁଡ଼ିକ ମଧ୍ୟ ସଂବାଦ ବା ତଥ୍ୟ- କିନ୍ତୁ ବିଶେଷ ସ୍ଥାନ-କାଳ ପାତ୍ର ସମ୍ବନ୍ଧରେ ନୁହେଁ, ନିର୍ବିଶେଷ ସ୍ଥାନ କାଳ ଓ ପାତ୍ର ସମ୍ବନ୍ଧରେ, ଏଠାରେ ଉଦ୍ଦିଷ୍ଟ ବା ବର୍ଣ୍ଣନୀୟ ପ୍ରସଙ୍ଗଗୁଡ଼ିକ ସାଧାରଣ ବା ଶ୍ରେଣୀ ବାଚକ ବିଶେଷ୍ୟ (common noun ବା class noun) । ଆଗରୁ ଏହାର କେତୋଟି ଦୃଷ୍ଟାନ୍ତ ଦିଆଯାଇଛି । କିନ୍ତୁ ନିମ୍ନ ପ୍ରଦତ୍ତ ଦୃଷ୍ଟାନ୍ତଗୁଡ଼ିକର ବିଶେଷତ୍ୱ ହେଉଛି, କୌଣସି ଗୋଟିଏ କ୍ରିୟାପଦ ବା ବିଶେଷଣର ସୂତ୍ରରେ ଅନ୍ତତଃ ଦୁଇଟି ଭିନ୍ନ ବସ୍ତୁ ବା ବ୍ୟକ୍ତିର ଅଭିନ୍ନ ଆଚରଣର ସଂବାଦ ନିହିତ । ଏସବୁ ପ୍ରବାଦକୁ ସଂବାଦ ଶରୀର କୁହାଯିବାର କାରଣ ଏହି ଯେ, ଏଗୁଡ଼ିକରେ କୌଣସି ରୂପକ ବା ବ୍ୟଞ୍ଜନା ନାହିଁ । ଅତି ନିର୍ଦ୍ଦିଷ୍ଟ ପ୍ରସଙ୍ଗ ବ୍ୟତୀତ ଭିନ୍ନ ଭିନ୍ନ ଉପଲକ୍ଷ୍ୟରେ ଏଗୁଡ଼ିକ ମଧ୍ୟରୁ କୌଣସିଟିର ବ୍ୟାପକ ବ୍ୟବହାର ସମ୍ଭବ ନୁହେଁ । ତେବେ ଏହି ସଂବାଦର ଅଧିକାଂଶ ହିଁ ବ୍ୟକ୍ତିଗତ ମନ୍ତବ୍ୟଧର୍ମୀ-ସାମାନ୍ୟ ପକ୍ଷପାତୀ (biased) ବିଷୟବସ୍ତୁ ସମ୍ବନ୍ଧୀୟ ନିର୍ଭୁଲ ତଥ୍ୟଗତ ଧାରଣା ସଂଗରେ ତାହାର ଅମେଳ ରହିପାରେ ।

**ସ୍ପଷ୍ଟ ବିଜ୍ଞପ୍ତି ଓ ବ୍ୟଞ୍ଜନା-**

ଏହି ଦୁଇଟିର ତଫାତ୍ ପରିଲକ୍ଷିତ ହୁଏ ନିମ୍ନଲିଖିତ ଦୃଷ୍ଟାନ୍ତ ଦ୍ୱୟରୁ -

(୧) କୁପୁତ୍ର ଯଦିବା ହୁଏ, କୁମାତା କଦାପି ନୁହେଁ ।

(୨) ଖଞ୍ଜନର (=ମୟୂର) ନୃତ୍ୟ ଦେଖି ଚଢ଼େଇ ବି ନୃତ୍ୟ କରେ ।

ପ୍ରଥମଟି ଯଦିଓ ଶ୍ରେଣୀ ସମ୍ବନ୍ଧରେ ବିଶେଷ ପର୍ଯ୍ୟବେକ୍ଷଣ ବା ସିଦ୍ଧାନ୍ତ, ତଥାପି ଫଳାଫଳ ଦୃଷ୍ଟିରୁ କେତେକାଂଶରେ ବ୍ୟାପକ- ଭଣିତା ବା ବାକ୍ୟରୂପ ହେଉଛି ସଂବାଦ, ବୃତ୍ତାନ୍ତ (statement) କିମ୍ବା ସିଦ୍ଧାନ୍ତର ଆଉ ୨ୟ ପ୍ରବାଦଟି ଗୋଟିଏ ଦୃଷ୍ଟାନ୍ତ- କିନ୍ତୁ ତାହାରି ମାଧ୍ୟମରେ ସଂସାରର ଗୋଟିଏ ଜ୍ଞାନାତ୍ମକ ଉପଦେଶ ବ୍ୟଞ୍ଜନା ପ୍ରକାଶ ପାଏ । 'ଅକ୍ଷମ ଯଦି ଅହଂକାରର ବଶବର୍ତ୍ତୀ ହୋଇ ଗୁଣବାନ୍‌କୁ ଅନୁକରଣ କରିବାରେ ଲାଗି ଯାଏ, ତା'ର ସେହି ଅନୁକରଣ ବ୍ୟର୍ଥ ଓ ହାସ୍ୟାସ୍ପଦ ହୁଏ ।' ତତ୍ତ୍ୱଶରୀର 'ଅହିଂସା ପରମ ଧର୍ମ' ଇତ୍ୟାଦି ପ୍ରବାଦର ପ୍ରସଙ୍ଗ ମଧ୍ୟ ପୁନରାଲୋଚନାର ପ୍ରୟୋଜନ ନାହିଁ । ଏହି ତିନିଶ୍ରେଣୀର ପ୍ରବାଦ ମଧ୍ୟରେ ବି କିଛି ସୂକ୍ଷ୍ମତର ପରମ୍ପରା ଯେ ଆବିଷ୍କାର କରିବା ସମ୍ଭବ, ତାହା ପ୍ରସ୍ଫୁଟିତ କରିବାର ଉଦ୍ୟମ କରାଯାଇଛି । ଦେଖାଯାଏ ଯେ, ବ୍ୟାପ୍ତିର ପରିମାଣ ବା ସୁଯୋଗ ଅନୁଯାୟୀ ସଂବାଦଶରୀରୀ ପ୍ରବାଦକୁ ମଧ୍ୟ ପର୍ଯ୍ୟାୟକ୍ରମେ ବିନ୍ୟସ୍ତ କରାଯାଇପାରେ। ଉଦ୍ଦିଷ୍ଟ ବିଷୟର ସଂଖ୍ୟା ସହିତ, ବ୍ୟାପ୍ତିର ସମ୍ବନ୍ଧ ସ୍ଥାପନ କରି ପ୍ରବାଦଗୁଡ଼ିକ ନିମ୍ନ କ୍ରମରେ ସଜାଯାଇପାରେ ।

**ବ୍ୟାପ୍ତି ୧** - (ସୁନିର୍ଦ୍ଦିଷ୍ଟ ଗୋଟିଏ ବିଷୟ ପ୍ରତି)

*ଆମ୍ବ , ଆମ୍ବଡ଼ା, କଖାରୁ ଧାନ,
ଏଇ ତିନିକି ନେଇ ବର୍ଦ୍ଧମାନ ।

*ଗଙ୍ଗାରେ ମଳତ୍ୟାଗ କଲେ ଗଙ୍ଗାର ପବିତ୍ରତା ନଷ୍ଟ ହୁଏନାହିଁ ।

**ବ୍ୟାପ୍ତି - ୨** (ଶ୍ରେଣୀଗତ ଗୋଟିଏ ସ୍ଥାନ, କାଳ, ପାତ୍ର ସମ୍ବନ୍ଧରେ)

*ଫଗୁଣ ଡ଼ିଆଁ, ଉଠିଲା ନିଆଁ ।

*ମାଇପ ପାପରୁ ଘଇତା ନଷ୍ଟ ।

*ହାୟରେ ଆମ୍ବଡ଼ା, ଟାକୁଆ ଆଉ ଚମଡ଼ା ।

*ଜ୍ଞାତି ଶତ୍ରୁ କରେ ସର୍ବ ଭକ୍ଷଣ, କୁକୁର ନ କରେ ଗଙ୍ଗାସ୍ନାନ ।

*ପତି ମଲେ ସତୀ ମରେ ।

*ପତିର ମରଣେ ସତୀର ମରଣ ।

**ବ୍ୟାପ୍ତି ୩ -(ଏକାଧିକ ଶ୍ରେଣୀ ସମ୍ବନ୍ଧୀୟ କୌଣସି ଏକ ସାଧାରଣ ସିଦ୍ଧାନ୍ତ)**

*ବାମୁଣ ,(=ବ୍ରାହ୍ମଣ) ବାଦଲ, ବଢ଼ି,ଦକ୍ଷିଣା ପାଇଲେ ଛାଡ଼ି ।

*କାଉ ଡିମ୍ବ ବି ଧଳା ହୁଏ, ବିଦ୍ୱାନ୍‌ର ପୁଅ ବି ଗଧା ହୁଏ ।

*ଖରା, ପିଆଜ, ନଷ୍ଟନାରୀ,ଆଖିରୁ ଝରାଏ ଅଶ୍ରୁ ବାରି ।

*ପିଆଦାର ପୋଷାକ, ନର୍ତ୍ତକୀର ବେଶ ।

**ଦୃଷ୍ଟାନ୍ତ ଶରୀର ପ୍ରବାଦ -**

ଦୃଷ୍ଟାନ୍ତ ଶରୀର ପ୍ରବାଦରେ ଗୋଟିଏ ଧରଣର ବିଚିତ୍ର ଆରୋହଣ ବା induction ଥାଏ, ଯେଉଁଥିରେ ମୂଳ ଉଦ୍ଦିଷ୍ଟ ଯେ ସାମାନ୍ୟ ବା ବ୍ୟାପକ ସତ୍ୟ, ତାହାରି ବ୍ୟଞ୍ଜନା ନିହିତ ଥାଏ । ଏହି ବ୍ୟଞ୍ଜନା ମଧରେ ନାନା ବୈଚିତ୍ର୍ୟ ମଧ୍ୟ ପରିଲକ୍ଷିତ ହୁଏ । ଦୃଷ୍ଟାନ୍ତ ଶରୀର ପ୍ରବାଦରେ ଯେଉଁ ଶବ୍ଦ ବ୍ୟବହୃତ ହୁଏ, ସେଗୁଡ଼ିକ ଯେ ରୂପକ ବା ମେଟାଫର୍‌ର ଅର୍ଥ ବୁଝାଏ, ତାହା ସେଇ ପଥର ଏବଂ ମାଟିଘୋଡ଼ା ସମ୍ବନ୍ଧୀୟ ବିଲାତି ପ୍ରବାଦ କ୍ଷେତ୍ରରେ ପରିଦୃଷ୍ଟ ହୋଇଛି । ଦୃଷ୍ଟାନ୍ତ ଶରୀର ପ୍ରବାଦକୁ ଦୁଇଟି ପ୍ରଧାନ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଗୋଟିଏ ଶ୍ରେଣୀରେ କେବଳ ଦୃଷ୍ଟାନ୍ତର ଉଲ୍ଲେଖ ରହିଛି, ସେଥିରେ ଅନ୍ୟ କୌଣସି ବକ୍ତବ୍ୟ ବା ମନ୍ତବ୍ୟ ନାହିଁ । କେତେବେଳେ ବସ୍ତୁଗତ ଦୃଷ୍ଟାନ୍ତରେ ପୁଣି କେତେବେଳେ ରୂପକ ଗର୍ଭ ଦୃଷ୍ଟାନ୍ତରେ ଏହି ପ୍ରବାଦଗୁଡ଼ିକ ଆଶ୍ରିତ । ଏଗୁଡ଼ିକର ଗୂଢ଼ ବକ୍ତବ୍ୟ ବା ଅନ୍ତରାଳବର୍ତ୍ତୀ ସିଦ୍ଧାନ୍ତଟି ଶ୍ରୋତାଙ୍କୁ ଅନୁମାନ କରିନେବାକୁ ପଡ଼େ । ତାର କାରଣ, ପ୍ରବାଦ କଥା ପ୍ରସଙ୍ଗରେ ଉଚ୍ଚାରିତ ହୋଇଥାଏ ଏବଂ କଥାରେ ସେହି ଉପସ୍ଥିତି ପ୍ରସଙ୍ଗ ବା context ପ୍ରବାଦର ବ୍ୟଞ୍ଜନା ସମ୍ବନ୍ଧରେ ଶ୍ରୋତା ମନରେ ଅସ୍ପଷ୍ଟତା ବା ଅନୁମାନର ଅବକାଶ ଯେ ସେମିତି ବେଶି ରଖେ, ତାହା କୁହାଯାଇ ପାରିବ ନାହିଁ ।

୨ୟ ଶ୍ରେଣୀ ଦୃଷ୍ଟାନ୍ତଶରୀର ପ୍ରବାଦରେ ଗୋଟିଏ comment ବା ମନ୍ତବ୍ୟ ଥାଏ । ଏହା ବ୍ୟାପକତର ସତ୍ୟଟି ପ୍ରକାଶ କରେ । ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା-

**(କ) କେବଳ ଦୃଷ୍ଟାନ୍ତ** (ରୂପକ ଗୌଣ,ଚିତ୍ର ବା ରୂପହିଁ ପ୍ରଧାନ)

*ନିଆଁ ଲାଗିଲେ କୁଅ ଖୋଳା ।

*ବାହାଘର ବେଳେ ବାଇଗଣ ରୁଆ ।

*ଆସର (=ସଭା) ଘରେ ମଶାଲ ନାହିଁ, ଢ଼େଙ୍କିଶାଳରେ ଚାନ୍ଦୁଆ ।

*ଗାଣ୍ଡିରେ କୌପୁନି, ଦେହଫୁଙ୍ଗୁଳା, ମୁଣ୍ଡ ଉପରେ ଛତା ।

*ଦିନସାରା ବନିଶି ହାତେ, ସନ୍ଧ୍ୟାବେଳେ ଆମ୍ବଡ଼ା ଭାତେ ।

*ହାଟ ମଝିରେ ଢ଼ୋଲ ପିଟା ।

**(ଖ) ରୂପକ ପ୍ରଧାନ ଦୃଷ୍ଟାନ୍ତ -**

*ସାପ ମୁଣ୍ଡରେ ବେଙ୍ଗ ନଚାଏ ।
*ସିଂହ ପେଟରୁ ଛେଳି ଜନ୍ମେନା ।
*ଏକଶ୍ଚନ୍ଦ୍ରଃତମୋହନ୍ତି ନଚ ତାରାଗଣୈରପି ।
*ସବୁ ଶାମୁକାରେ ମୁକ୍ତା ନ ଥାଏ ।
*ବଣୁଆ ଗାଁରେ ଶିଆଳ ରାଜା ।
*ସାରୁ ବଣରେ କଟାସ ରାଜା ।

**(ଗ) ଦୃଷ୍ଟାନ୍ତ (=ଦୃ:) + ମନ୍ତବ୍ୟ (=ମ:)-**

*(ମ:)ମଣିଷର ଦଶ ଦଶା, (ଦୃ:) କେବେ ହାତୀ କେବେ ମଶା ।
*(ଦୃ:)ତେଲ ଥିଲେ ବି ବତୀ ଲିଭେ । (ମ:)ଆୟୁଷ ଥିଲେ ବି ମଣିଷ ମରେ ।
*(ଦୃ:)ପୁରୁଷ ଆଉ ନାରୀ, ନିଆଁ ଆଉ ଘିଅ,
(ମ:)ଏକାଠି ଥିଲେ ତରଳେ ଘିଅ ।
*(ମ:) ଯସ୍ମିନ୍ ଦେଶେ ଯଦାଚାର, (ଦୃ:) କଛା ଖୋଲି ନଇ ପାର ।
*(ଦୃ:) ଦୁଃଖୀ କପାଳେ ସୁଖ ନାହିଁ,(ଦୃ:)ବାହାଘରବେଳେ ଭାତ ନାହିଁ ।
*(ଦୃ:) ଘଷି ପୋଡ଼େ, ଗୋବର ହସେ (ମ:)ସଭିଙ୍କ ଦିନେ ଅଛି ଶେଷେ ।
*(ଦୃ:) ତୁଣ୍ଡେ ମଧୁ ହୃଦେ କ୍ଷୁର (ମ:) ସେ ହୁଏ ବିଷମ କ୍ରୁର ।
*(ଦୃ:) ମୁହଁରେ ଅମୃତ ଅନ୍ତରେ ଗରଳ,
(ମ:) ଏମାନଙ୍କୁ କେଭେ ନମଣ ସରଳ ।

**ତତ୍ତ୍ୱଶରୀର ପ୍ରବାଦ**

ତତ୍ତ୍ୱଶରୀର ପ୍ରବାଦ ସମ୍ପର୍କରେ ଆଗରୁ କୁହାଯାଇଛି । ଏଠାରେ ମୂଳତଃ ଆବାଷ୍ଟ୍ରାକ୍ଟ୍ ବିଷୟ ସମ୍ବନ୍ଧରେ ଅବତାରଣା କରାଯାଉଛି । ଏତାଦୃଶ ପ୍ରବାଦର କେତେକ ଉଦାହରଣ ଦିଆଗଲା -

*କାରଣ ଠେଇଁ କାର୍ଯ୍ୟ ନାହିଁ ।
*ଧନରେ ଅହଂକାର ନୁହେଁ, ଅହଙ୍କାର ମନରେ ।
*ବଡ଼ ଯଦି ହେବ ଛୋଟ ହୁଅ ଆଗ ।
*ଅଦୃଷ୍ଟ ଛଡ଼ା ପଥ ନାହିଁ ।
*କ୍ଷମାଠାରୁ ବଳି ଗୁଣ ନାହିଁ, ଦାନଠାରୁ ବଳି ପୁଣ୍ୟ ନାହିଁ ।
*ପର ନୁହେଁ ଆପଣାର, ଆପଣା ନୁହେଁ ପର ।

## ପ୍ରବାଦର ବ୍ୟାବହାରିକ ଦିଗ ଓ ଲକ୍ଷ୍ୟ

ପ୍ରବାଦର ଲକ୍ଷ୍ୟ ଏବଂ Pragmatic ଅର୍ଥାତ୍ ବ୍ୟବହାରଗତ ଲକ୍ଷଣମାନ ଆଲୋଚନା କଲେ ଦେଖାଯାଏ ଯେ, ସେଥିରୁ ନିମ୍ନଲିଖିତ କେତୋଟି ଶ୍ରେଣୀ ଓ ଉପଶ୍ରେଣୀ ନିର୍ଗତ ହୁଏ ।

**ଉପଦେଶମୂଳକ**

(କ) ଆଚରଣୀୟ, ଅନୁସରଣୀୟ ଇତ୍ୟାଦି ।
(ଖ) ଅନାଚରଣୀୟ, ପରିହାର୍ଯ୍ୟ ।

**ବିଜ୍ଞାପନମୂଳକ**

(କ) ସଂଗତ - ଅସଂଗତ ।
(ଖ) ସମ୍ଭବ - ଅସମ୍ଭବ ।
(ଗ) ବିଶେଷ ବସ୍ତୁର ବିଶେଷ ଲକ୍ଷଣ ।
(ଘ) ବିଶେଷ କାରଣଜନିତ ବିଶେଷ କାର୍ଯ୍ୟ ଇତ୍ୟାଦି ।

ଉପଦେଶମୂଳକ ପ୍ରବାଦର ଉପଦେଶଟି ପ୍ରତ୍ୟକ୍ଷ ବା ସ୍ପଷ୍ଟ ବା ତୀର୍ଯ୍ୟକ୍ ମଧ୍ୟ ହୋଇ ପାରେ । ପ୍ରତ୍ୟକ୍ଷ ସ୍ପଷ୍ଟ ଉପଦେଶମୂଳକ ପ୍ରବାଦର ତୁଳନା ସ୍ୱଳ୍ପ, କାରଣ ସେଥିରେ ଆକର୍ଷଣ ନ ଥାଏ । ଫଳରେ କ୍ରିୟାପଦ ସହ ମଧ୍ୟମ ପୁରୁଷ ଓ ବିଭକ୍ତି ଲଗାଇ କାହାରିକୁ କିଛି କର୍ତ୍ତବ୍ୟ ବା ଅକର୍ତ୍ତବ୍ୟ ନିର୍ଦ୍ଦେଶ କରାଯାଇଥାଏ । ଏତାଦୃଶ ପ୍ରବାଦ ଅତ୍ୟଳ୍ପ ଥିବାରୁ ଅନୁସନ୍ଧାନ କଲେ ହିଁ ମିଳିଥାଏ । ଅବଶ୍ୟ ଡାକ ଓ ଖନାର ବଚନରେ ଯଥେଷ୍ଟ ଏହି ଧରଣର ପ୍ରବାଦ ଅଛି। ଅନ୍ୟତ୍ର ଯେ ମିଳେନାହିଁ, ସେପରିନୁହେଁ । ଯେପରିକି-

*ଅଗ୍ନି, ବ୍ୟାଧି, ଋଣ, ଏଇ ତିନିକୁ କେବେ ନ ରଖିବ ଜାଣ ।
*ନଟୀକୁ ନ କହିବ ନଟୀ, ଓଲଟି ଧରିବ ଚୂଳର ମୁଠି ।
*ଅତି ବଡ଼ ହୁଅନା, ଝଡ଼ ନେବ ଉଡ଼େଇ ।
ଅତି ଛୋଟହୁଅନା ଛେଳି ଦବ ଚୋବେଇ ।
*କାଙ୍ଗାଳ ଦେଖି କରନା ହୀନ, କାଙ୍ଗାଳ ହେବାକୁ ହୁଏ ଏକ ଦିନ ।
*ଉଛୁଳା (=କଇରା) ଖାଇବ କଂଚି, ପୋଟଳ ଖାଇବ ମଂଜି ।

କିନ୍ତୁ ଅଧିକାଂଶ ସ୍ଥାନରେ ଏହି ଅଭିଭାବକତ୍ୱର ସ୍ୱରଟି ଏବଂ ବ୍ୟାକରଣଗତ ସଂଗଠନ ପ୍ରବାଦରେ ନାହିଁ । ତାହା ବିନିମୟରେ କେଉଁଠି ଅଛି ବକ୍ତାର ନିଜସ୍ୱ ଉଲ୍ଲେଖ ବା ନିଜସ୍ୱ ଦୃଷ୍ଟାନ୍ତ । ଏଗୁଡ଼ିକୁ ଆଣି ଶ୍ରୋତାଙ୍କୁ ଗୋଟିଏ ବ୍ୟକ୍ତିଗତ ଏବଂ ଅନ୍ତରଙ୍ଗ

ପରାମର୍ଶ ଦେବାର ଚେଷ୍ଟା । ଯଥା :-

*ନିଜେ ରହିବାକୁ ନଥାଏ ଠାଇଁ, ମାଇପ ପାଇଁ ହରଦମ ଧାଇଁ ।
*ମାରେଁତ ଗଣ୍ଡାର, ଲୁଟେଁ ତ ଭଣ୍ଡାର ।

କେତେବେଳେ ପୁଣି ପ୍ରଥମ ପୁରୁଷର ଆଶ୍ରୟ ନେଇ ବକ୍ତା ଏବଂ ଶ୍ରୋତା ଦୁଇପକ୍ଷଠାରୁ ଦୂରବର୍ତ୍ତୀ ହେବାର ଏକ ଦୃଷ୍ଟାନ୍ତ ।

*ଦାଣ୍ଡ ଦରବାରେ ତୁଣ୍ଡ ନ ଫିଟେ, ଘର ଭିତରେ ମାଇପକୁ ପିଟେ ।
*ଉଧାର କରି ଗିଳେ, ଫୁଟାଣି ମାରି ଚଳେ ।

କେତେବେଳେ ପୁଣି କର୍ତ୍ତାକ୍ରିୟା ମଧ୍ୟରେ ଏଭଳି ଭାବେ ଅନିର୍ଦ୍ଦିଷ୍ଟତାର ସଂଚାର କରାଯାଏ ଯେ, ବକ୍ତବ୍ୟ ବିଶେଷ ବ୍ୟକ୍ତି ବା ଶ୍ରେଣୀକୁ ଅତିକ୍ରମ କରି ସାର୍ବଜନୀନତା ପ୍ରକାଶ ପାଏ । ତତ୍ତ୍ୱଶରୀର ପ୍ରବାଦମାନ ଏହି ଶ୍ରେଣୀଭୁକ୍ତ ହୋଇଥାଏ । ତତ୍ତ୍ୱମଧ୍ୟରେ ଉପଦେଶ ପ୍ରତ୍ୟକ୍ଷ, ଦୃଷ୍ଟାନ୍ତରେ ପୁଣି ଉପଦେଶ ତୀର୍ଯ୍ୟକ୍ ଓ ବ୍ୟଞ୍ଜନାଶ୍ରିତ । ତେବେ ବିବୃତିମୂଳକ ପ୍ରବାଦ ଯେ ସବୁକ୍ଷେତ୍ରରେ ଉପଦେଶହୀନ ତା ନୁହେଁ, କେତେବେଳେ କେତେବେଳେ ଖୁବ୍ ପ୍ରଚ୍ଛନ୍ନ ଗୋଟିଏ ଉପଦେଶ ତାହାରି ମଧ୍ୟରେ ଥାଇ ବିଚ୍ଛୁରିତ ହୁଏ ଏବଂ ସେହିଠାରେ ହିଁ ଏହି ଦୁଇଟିର ସ୍ୱଷ୍ଟ ସୀମାରେଖାଟି ଲିଭିଯାଏ । ଯେପରିକି :-

ତିନି ମାଇପେ ଯେଉଁଠି,
କାଜିର ଦରବାର ସେଇଠି ।

ପ୍ରବାଦଟିରେ ବିଶେଷ କାରଣଜନିତ ବିଶେଷ କାର୍ଯ୍ୟର ବିବୃତି ଅଛି । କିନ୍ତୁ ତା ମଧ୍ୟରେ ଏହି ଉପଦେଶ ପ୍ରଚ୍ଛନ୍ନ କରାଯାଇଅଛି ଯେ, ତିନୋଟି ନାରୀକୁ ଏକାଠି ହେବାର ସୁଯୋଗ ନ ଦେବା ଉଚିତ, କିନ୍ତୁ ଯେଉଁଠି ସେମାନେ ଏକତ୍ରିତ ହୁଅନ୍ତି, ସେଠାରେ ଅନ୍ୟର ଉପସ୍ଥିତି ବିପଦସଙ୍କୁଳ ।

## ପ୍ରବାଦ ସଂଗଠନର ସାର୍ବଭୌମିକତା

ପ୍ରବାଦର ବକ୍ତବ୍ୟ ଓ ସଂଗଠନ ମଧ୍ୟରେ ଗୋଟିଏ ଧରଣର ସାର୍ବଜନୀନତା ରହିଛି, ଯାହାଫଳରେ କିଛି କିଛି ପ୍ରବାଦ ଅତି ସହଜରେ ଗୋଟିଏ ଭାଷାରୁ ଅନ୍ୟଭାଷାକୁ ଅନୁବାଦ କରିବା ସହଜସାଧ୍ୟ । ରୂପ ବା ରୂପକର ଅବିକଳ ଅନୁବାଦ କରାନଯାଇ ପାରିଲେ ମଧ୍ୟ ଭିନ୍ନରୂପ ବା ରୂପକର ମାଧ୍ୟମରେ ତାହା ପ୍ରକାଶ କରିବା ଆଦୌ କଠିନ ନୁହେଁ । 'ଅନଭ୍ୟାସର ଟିକା (=ଟୋପା) କପାଳରେ ଚିଡ୍ ଚିଡ୍ କରେ' ଏବଂ 'Every shoe fits not every foot' ପ୍ରାୟ ସମାର୍ଥବୋଧକ, କିନ୍ତୁ ଦୁଇଟି

ଭିନ୍ନରୂପ ନେଇ ନିଜକୁ ପ୍ରକାଶ କରିଛି । ଏପରିକି ସଂଗଠନର ବା ରୂପାକୃତି ଦିଗରୁ ଗୋଟିଏ ଭାଷାର ପ୍ରବାଦ ଅନ୍ୟଭାଷାରେ ପ୍ରତିଧ୍ୱନିତ କରାଯାଏ । 'ୟୁ ଏନ୍ ରେନ ଚାଓ' (yuen Ren chao) ଙ୍କର ପୁସ୍ତକରୁ ଜଣାଯାଏ, ଇଂରାଜୀ( As you sow, so shall you reap ) ଚୀନ୍ ଭାଷାରେ କୁହାଯାଏ - 'ଚୁଂ କୁୟା ନେ କୁୟା, ଚୁଂ ତୌ ତେ ତୌ', ଅର୍ଥାତ୍ 'ତରଭୁଜ ବୁଣିଲେ ତରଭୁଜ ମିଳେ, ଶିମ ବୁଣିଲେ ଶିମ ମିଳେ ।' ଓଡ଼ିଆରେ ସେହିଭଳି ପ୍ରବାଦଟି ହେଲା 'ବୁଣିଥିଲେ ଦାୟୀ, ଦେଇଥିଲେ ପାଇ, ପଡ଼ିଆ ମଝିରେ ଗୋଧନ ଚରେଇ' । ଓଡ଼ିଆରେ ଏହିଭଳି ପ୍ରବାଦଗୁଡ଼ିକ ଚୀନ୍‌ଭାଷାର ପ୍ରବାଦରେ ପ୍ରଚଳିତ ହୋଇଆସୁଛି । ଅନୁଧ୍ୟାନ କଲେ ପ୍ରକୃତରେ ଓଡ଼ିଆ ପ୍ରବାଦ ଯେ କେତେ ଆଦିମ, ତାହାର ନିର୍ଦ୍ଦିଷ୍ଟ ସୂଚନା ମିଳିପାରନ୍ତା ଏବଂ ତଦ୍ ସଙ୍ଗେ ସଙ୍ଗେ ଓଡ଼ିଆ ପ୍ରବାଦର ଚୀନଭାଷାର ପ୍ରବାଦ ସହିତ ସାମଞ୍ଜସ୍ୟ ଓ ଐତିହ୍ୟ ସମ୍ବନ୍ଧରେ ଅଧିକ ସୂଚନା ମିଳି ପାରନ୍ତା । ସୁତରାଂ ଏ ସମ୍ପର୍କରେ ଗଭୀର ଗବେଷଣା ଏକାନ୍ତ ଆବଶ୍ୟକ ।

ଅନାଗରିକ ମଣିଷର, ଜଗତ ସଂପର୍କୀୟ ଅଭିଜ୍ଞତାର ଗୋଟିଏ ସ୍ତର ପର୍ଯ୍ୟନ୍ତ ଯେପରି ବିଶ୍ୱବ୍ୟାପି ଐକ୍ୟ ରହିଛି, ମୂକାରୋଭସ୍କି (Mukarovsky) କଥିତ ସେହି ଅପ୍ରଣାଳୀବଦ୍ଧ ନନ୍ଦନ ତତ୍ତ୍ୱର (Unstructured esthetics) ଭାଷା ଶୈଳୀରେ ତାହା ପରିବେଷଣ କରିବା ମଧ୍ୟରେ ସାମାନ୍ୟ ସାଦୃଶ୍ୟ ରହିଯାଏ ।

ଓଡ଼ିଆରେ ପ୍ରବାଦ ସଂଗ୍ରହର ପ୍ରଥମ ପର୍ଯ୍ୟାୟରେ ପ୍ରବାଦ ସଜ୍ଞୀକରଣର ନିର୍ବାଚନ ଅପେକ୍ଷା, ବିଭିନ୍ନ ଆଲୋଚନା, ପର୍ଯ୍ୟାଲୋଚନା, ପଠନ, କଥନ ଇତ୍ୟାଦିରୁ ତାହାର ସଂକଳନ ଅଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ ପ୍ରବାଦ ସଂକଳନଗୁଡ଼ିକରେ ପ୍ରବାଦ ଓ ଇଡ଼ିୟମ୍ ମଧ୍ୟରେ ଯେପରି ଗୋଟିଏ ଦିଗରୁ ତଫାତ୍ ଦର୍ଶାଯାଇନାହିଁ, ସେହିପରି ଧନ୍ଦା, କୁସଂସ୍କାର, ସଂସ୍କାରମୂଳକ ପ୍ରବାଦଗୁଡ଼ିକୁ ସ୍ପଷ୍ଟଭାବେ ପୃଥକ୍ ପୃଥକ୍ କରି ନିର୍ଦ୍ଦେଶ କରାଯାଇନାହିଁ । (ଦ୍ରଷ୍ଟବ୍ୟ-ଆମେରିକାନ୍ ଡାୟାଲେକଟ୍ ସୋସାଇଟିର ଅର୍ନ୍ତଗତ "Proverbial saying committee" ର ପୁସ୍ତିକା (Proverbs and how to collect them, May, 1945) । ଥରେ ପ୍ରବାଦଗୁଡ଼ିକ ସଂଗ୍ରହ ହୋଇଗଲେ ବୈଜ୍ଞାନିକ ପଦ୍ଧତିରେ ପ୍ରତ୍ୟେକଟିକୁ ସ୍ୱତନ୍ତ୍ର ଭାବେ ବିଚାର କରିବାର ପ୍ରୟୋଜନ ରହିଛି ।

କେତେଗୁଡ଼ିଏ ଦୃଷ୍ଟାନ୍ତ ଉପସ୍ଥାପିତ କରାଯାଇ ପ୍ରବାଦ ସଂପର୍କରେ ଏହି ଗ୍ରନ୍ଥର ବିଭିନ୍ନ ଖଣ୍ଡରେ ବିସ୍ତୃତ ଆଲୋଚନା କରାଯାଇଥିଲେ ମଧ୍ୟ, ସ୍ଥୂଳତଃ ଏହା ଏକ ନିର୍ବିଶେଷ ସଂକଳନ ମାତ୍ର ।

## (୪ର୍ଥ ଖଣ୍ଡ ଅବତରଣିକାର ଅବଶିଷ୍ଟାଂଶ ୬୭ ପୃଷ୍ଠା ଉତ୍ତାରୁ)

### କୁସଂସ୍କାର ସଂପର୍କିତ ବଚନ, ପ୍ରବାଦ-

କୁସଂସ୍କାର ଦୁନିଆରେ ଧର୍ମ ହିଁ ଏକଛତ୍ର ସମ୍ରାଟ । ଆତ୍ମାର ଅମରତ୍ୱ, କର୍ମଫଳ, ଜନ୍ମାନ୍ତରବାଦ୍, ସ୍ୱର୍ଗ-ନରକ, ଈଶ୍ୱର- ଐଶ୍ୱରିକ ଶକ୍ତି ଇତ୍ୟାଦି ଭୟଙ୍କର କୁସଂସ୍କାର ସମଷ୍ଟିରେ ସ୍ଥାପିତ ଏହି ସମ୍ରାଟଙ୍କର ବିଶାଳ ସାମ୍ରାଜ୍ୟ । ବିଭିନ୍ନ ଧର୍ମର ଜନଗୋଷ୍ଠୀ ମଧ୍ୟରେ କୁସଂସ୍କାରଗତ ବ୍ୟାଧି ପ୍ରଚୁର ପରିମାଣରେ ବିଦ୍ୟମାନ । କାରଣ, ସର୍ବ ଧର୍ମର ବୃକ୍ଷହିଁ ପ୍ରଶ୍ନାତୀତ ବିଶ୍ୱାସର ସାରରେ ପରିପୁଷ୍ଟ । ଧର୍ମର ରଥଚକ୍ର ତଳେ ଅଦ୍ୟାବଧି ନାରୀମାନେ ରକ୍ତ ଝରାଉଛନ୍ତି, ସନାତନ ହିନ୍ଦୁଧର୍ମ ଶୁଦ୍ରମାନଙ୍କର ହାଡ଼-ମାଂସ ଚୋବାଇ ଖାଉଛି ।

କୁସଂସ୍କାର କାହାରି ଆମନ୍ତ୍ରିତ ନୁହେଁ, ତଥାପି ତାହା ଆପଣାଛାଏଁ ଆସେ । ଅଜ୍ଞତାର ପଛେ ପଛେ, ସୀମିତ ଜ୍ଞାନର ପଛେ ପଛେ, ଧର୍ମର ପଛେ ପଛେ ଆସି ବର୍ଚ୍ଛାର ମୁନ ହୋଇ ଫାଳ ଫାଳ କରିଦିଏ ମାନବିକତା ।

ଜ୍ୟୋତିଷ, ଗ୍ରହଣ, ଉଲ୍‌କାପାତ, ଅନ୍ତଃସତ୍ତ୍ୱା, ଅନୁଢ଼ା ଇତ୍ୟାଦି ବହୁ କୁସଂସ୍କାରର ଅଗ୍ନିରେ ଦାଣ୍ଡବ ସତ୍ୟ ଭସ୍ମୀଭୂତ ହୋଇ ଚାଲିଛି ।

ମାତ୍ର ସମୟ ବଦଳୁଛି, ବଦଳୁଛି ମୂଲ୍ୟବୋଧ, ବଦଳୁଛି କୁସଂସ୍କାର, ସ୍ୱାର୍ଥାନ୍ୱେଷୀମାନଙ୍କର ସ୍ୱାର୍ଥକୁ ପାଳନ ଓ ପୁଷ୍ଟ କରିବାର ଅନିବାର୍ଯ୍ୟ ପରିଣତି ହିସାବରେ ନୂଆ ନୂଆ ରୂପରେ ପରିବର୍ତ୍ତନର ଉନ୍ମେଷ ହେଉଛି । ମେଡ଼ିଟେଶନ୍, ସ୍ପିରିଚୁଏଲଜିମ୍, କଲର୍‌ଥେରାପି, ବାସ୍ତୁଶାସ୍ତ୍ର, 'ରେକି' ଇତ୍ୟାଦି ସୁନ୍ଦର ଶବ୍ଦଗୁଡ଼ିକର ମେଖଳାରେ କୁସଂସ୍କାରର ଶରୀର ଆହୁରି ପରିପୁଷ୍ଟ ହୁଏ । ଜନପ୍ରିୟ ପତ୍ରିକାଗୁଡ଼ିକ ଲାଭ ଆଶାରେ ଏହି ସମସ୍ତ କୁସଂସ୍କାରକୁ ପାଥେୟ କରି 'ପ୍ରଚ୍ଛଦ କାହାଣୀ' ପରିବେଷଣ କରେ । ବ୍ୟବସାୟ ଜମେ, ଅଥଚ ସଦିଚ୍ଛା ଜଳି ପୋଡ଼ି ପାଉଁଶ ହୋଇଯାଏ ।

ଆମ୍ଭମାନଙ୍କର ଶିକ୍ଷା, ସ୍ୱାଚ୍ଛଲ୍ୟ, ମୂଲ୍ୟବୋଧ, ପ୍ରଗତିଶୀଳତା ବଜ୍ର କଣ୍ଠରେ ଘୋଷଣା କରେ, 'ଆମ୍ଭେମାନେ କୁସଂସ୍କାର ଭିତରେ ଛଟପଟ ହେବାକୁ ରାଜି ନୋହୁଁ । ଏସବୁ ଅଶିକ୍ଷିତ ଏବଂ ଅନ୍ଧ ଗ୍ରାମବାସୀଙ୍କର ଥାଇପାରେ, ମାତ୍ର କୁସଂସ୍କାର ଆମକୁ ସ୍ପର୍ଶ କରି ପାରିବ ନାହିଁ' । ଅଥଚ ବାସ୍ତବ କ୍ଷେତ୍ରରେ ତାହା କାର୍ଯ୍ୟକାରୀ ହୋଇପାରେନାହିଁ । ଜ୍ୟୋତ୍ସ୍ନା ବିଧୌତ ଆକାଶରେ ହଜିଯାଉଥିବା ନକ୍ଷତ୍ର ଭଳି କୁସଂସ୍କାର ରହିଛି, ଦୁର୍ବଳ ମୁହୂର୍ତ୍ତରେ ଅନ୍ଧକାରରେ ଜଳ ଜଳ ହୋଇ ଜଳି ଉଠେ

କୁସଂସ୍କାରରୂପକ ନକ୍ଷତ୍ରଗୁଡ଼ିକ । ବ୍ୟତିକ୍ରମ ରହିଛି ନିଶ୍ଚୟ, କିନ୍ତୁ ଏହାହିଁ ମୂଳସ୍ରୋତ ।

ଭବିଷ୍ୟତରେ କୁସଂସ୍କାରର ମୂଳୋତ୍ପାଟନ କରିବାକୁ ହେଲେ ଆଉଚ୍ଛହୁଁ କୁସଂସ୍କାରର ପୃଷ୍ଠାଗୁଡ଼ିକୁ ଗୋଟି ଗୋଟି କରି ନିଆଁରେ ଢାଳିଦେବାକୁ ହେବ । ଯେପର୍ଯ୍ୟନ୍ତ ଅନାବାଦୀ ଜମିରେ ଜୀବନର ଫାଟକ ଖୋଲି ସବୁଜ ଚାରାଗଛ ମୁଣ୍ଡ ନ ଟେକିଛି, ସେ ପର୍ଯ୍ୟନ୍ତ ଯୁକ୍ତିବାଦୀମାନେ କୁସଂସ୍କାର ବିରୋଧୀ କାର୍ଯ୍ୟ କରିଚାଲିଛନ୍ତି ଏବଂ ଚାଲିବେ ମଧ୍ୟ ।

ମୂର୍ଖ କୁସଂସ୍କାରକୁ ନିର୍ବାସନ ଦେବାର ଗୁରୁ ଦାୟିତ୍ୱ ସମସ୍ତଙ୍କ ଉପରେ ନିର୍ଭର କରେ । କୁସଂସ୍କାରପୂର୍ଣ୍ଣ ପ୍ରବାଦର କଳନା ନାହିଁ । ତହିଁରୁ କେତୋଟି ଦୃଷ୍ଟାନ୍ତ ପ୍ରଦତ୍ତ ହେଲା :-

* କୁଞ୍ଚୁକୁଞ୍ଚିଆ, ମାଗୁର ନିଶିଆ
    ହିଆରେ ନଥାଏ ବାଳ,
ଏମାନଙ୍କୁ କେଭେ ପରତେ ନ ଯିବ
    ଜିଇଁଥିବ ଯେତେ କାଳ ।

* ଦୁଇଜଣଙ୍କର ମୁଣ୍ଡ ଥରେ ବାଡ଼େଇ ହେଲେ, ଆଉଥରେ ବାଡ଼େଇବାକୁ ପଡ଼େ ।
- ନହେଲେ ଅଧାକପାଳି ଧରେ, ଅଥବା ମୁଣ୍ଡରେ ଶିଙ୍ଗ ଗଜୁରେ ।
* ଦୀପ ଗର୍ଭକୁ ନିଆଁ ଚହଟିଗଲେ- ଅଲକ୍ଷଣ ।
* ହାତରୁ ପାନିଆ ବା ବାସନ ପଡ଼ିଗଲେ- ଅତିଥି ଆସେ ।
* ଅଜାଣତରେ ଓଲଟା ଶାଢ଼ୀ ପିନ୍ଧିଲେ- ନୂଆ ଶାଢ଼ୀ ମିଳେ ।
* ପାଣି ହାଣ୍ଡି ଓଲଟି ପଡ଼ିଲେ- ପୁଆତି ଖଲାସ ହୁଏ ।
* ଅଜାଣତରେ ରୋଗୀ ଓଲଟା ଗେଞ୍ଜି ବା କାମିଜ ପିନ୍ଧିଲେ - ରୋଗ ଛାଡ଼େ ।
* ଉଁଚୁ କପାଳି କନ୍ୟା, କାନ୍ଧ ପର୍ଯ୍ୟନ୍ତ ବାଳ ଥିବା କନ୍ୟା- ଅଲକ୍ଷଣୀ ।
* କନ୍ୟାର ନାଲି ବାଳ- ଅଲକ୍ଷଣ ।
* ମଥା ଉପରେ ଝିଟିପିଟି ପଡ଼ିଲେ - ସୁଲକ୍ଷଣ ।
* ଦିହରେ ବୁଢ଼ିଆଣୀ ଚଢ଼ିଲେ - ନବ ବସ୍ତ୍ର ପିନ୍ଧିବାକୁ ମିଳେ ।
* ମାଛ ସ୍ୱପ୍ନ ଦେଖିଲେ - ଘରେ ଉତ୍ସବ ହୁଏ ।

ଏହି ପ୍ରବାଦଗୁଡ଼ିକୁ ତର୍ଜମା କଲେ ଏହା ଭିତରେ କୌଣସି ଜରୁରୀ ଜ୍ଞାନ ବା ଅଭିଜ୍ଞତା ନିହିତ ଅଛି ବୋଲି ମନେ ହୁଏ ନା । ମାତ୍ର ଏହି ପ୍ରବାଦଗୁଡ଼ିକ ଦୀର୍ଘକାଳ ଧରି ଲୋକପ୍ରିୟତା ଅର୍ଜନ କରିଆସିଛି ଓ ଲୋକବିଶ୍ୱାସରେ ପରିଣତ ହୋଇଛି ।

କିନ୍ତୁ ଏଗୁଡ଼ିକ ବ୍ୟାବହାରିକ ଜଗତର ତଥ୍ୟ ନୁହେଁ । ବାସ୍ତବ ଜଗତର ସତ୍ୟ ନୁହେଁ । ଏଗୁଡ଼ିକ ଅନ୍ଧ ଲୋକବିଶ୍ୱାସ ବା ଅପସଂସ୍କାର ।

ସଂସ୍କାର ଯେତେବେଳେ ଉପଦେଶମୂଳକ, ସେ ସମ୍ବନ୍ଧୀୟ ପ୍ରବାଦ-

* ତକିଆ ଉପରେ ବସିଲେ-ପିଚାରେ ବଥ ହୁଏ ।
* ଘର ଦୁଆର ବନ୍ଧରେ ବସିଲେ- ପିଚାରେ ବଥ ହୁଏ ବା ଦେଣା ବଢ଼େ ।

ଯେତେବେଳେ ଏଗୁଡ଼ିକ ଲୋକବିଶ୍ୱାସରେ ପଣିଣତ ହୋଇଥିଲା, ସେତେବେଳେ ଗୋଟିଏ ଗୋଟିଏ ଏକାନ୍ନବର୍ତ୍ତୀ ପରିବାରରେ ଗଣ୍ଡାଗଣ୍ଡା ସନ୍ତାନସନ୍ତତିରେ ଘର ପୂରି ଉଠୁଥିଲା । ପିଲାମାନେ ଇତସ୍ତତଃ ହୋଇ ଚାରିଆଡ଼େ ଏପାଖ ସେପାଖ ଓ ଏଠି ସେଠି ହେଉଥିଲେ । ଏମାନଙ୍କୁ ସମ୍ଭାଳିବା ଏକ ସମସ୍ୟା ଥିଲା । ଏଇସବୁ ପିଲାମାନଙ୍କ ମଧ୍ୟରୁ କେହି ତକିଆ ବା ମାଣ୍ଡି ଉପରେ ବସି ତକିଆ, ମାଣ୍ଡି ଫଟାଉଥିଲେ ତ କେହି ଘର ଚଉକାଠରେ ବସିରହି ଘର ଲୋକଙ୍କର ଚଳପ୍ରଚଳରେ ଅସୁବିଧା ସୃଷ୍ଟି କରୁଥିଲେ । ପୁଣି କେହି କେହି ମାଇପେ ଚଉକାଠ ବନ୍ଧକୁ ପିଢ଼ା କରି ତା ଉପରେ ବସି ଖାଉଥିଲେତ କେହି ତା ଉପରେ ବସି ଅନ୍ୟର ଉକୁଣୀ ବାଛୁଥିଲେ ବା ମୁଣ୍ଡ କୁଣ୍ଡେଇ ଦଉଥିଲେ । ମନା କଲେ କେହି ଶୁଣୁ ନଥିଲେ । ତେଣୁ ତକିଆ, ଚଉକାଠରେ ବସିବାରୁ ନିବୃତ୍ତ କରିବା ପାଇଁ ଏପରି ଅନେକ ପ୍ରବାଦ, ଅନେକ ସଂସ୍କାର ସୃଷ୍ଟି ହୋଇଥିଲା । ଯେପରି-

* ବିଞ୍ଚଣା ଦେହରେ ଲାଗିଲେ-ଆୟୁଷ କ୍ଷୟ ହୁଏ ।
* ଛାଞ୍ଚୁଣୀ ଦେହରେ ଲାଗିଲେ- ଅମଙ୍ଗଳ ।
* ଗାମୁଛା ଓ ଛତା ହଜିବା- ଅଲକ୍ଷଣା ସୂଚକ ।

ଆମର ଭଲପାଇଁ ଏଧରଣର ଗଢ଼ିଉଠିଥିବା ପ୍ରବାଦକୁ ଆମ୍ଭେ ମିଥ୍ୟା ମିଶ୍ରିତ ପ୍ରବାଦ ବା ସଂସ୍କାର ବୋଲି କହିଥାଉଁ । ଏ ଗୁଡ଼ିକ ମିଥ୍ୟା ଆଶ୍ରିତ ଗଠନମୂଳକ ପ୍ରବାଦ ବା ମିଥ୍ୟା ଆଶ୍ରିତ ଉପଦେଶମୂଳକ ସଂସ୍କାର । ତେଣୁ ଯେଉଁ ସବୁ ଲୋକପ୍ରିୟ ପ୍ରବାଦ ବା ଲୋକବିଶ୍ୱାସ ମଧ୍ୟରେ ବ୍ୟାବହାରିକ ଜଗତର ଉପଦେଶ ନିହିତ ରହିଛି, ସେଇ ଲୋକବିଶ୍ୱାସ ବା ସଂସ୍କାରକୁ ଆମ୍ଭେ କେବେହେଲେ କୁସଂସ୍କାର ବୋଲି ଅଭିହିତ କରିପାରିବା ନାହିଁ ।

ପ୍ରବାଦ ସବୁବେଳେ ଆଦର୍ଶହୀନତା, ଭୁଲ ଲୋକଶିକ୍ଷା, ଭୁଲ ମୂଲ୍ୟବୋଧ ସୃଷ୍ଟି କରେ ନାହିଁ । ପ୍ରବାଦର ହାତଧରି ଲୋକ ବିଶ୍ୱାସ ବା ସଂସ୍କାର ଗୁଡ଼ିକ ପରିବର୍ତ୍ତିତ ହୋଇ ଆସିଛି । ଏଇ ସଂସ୍କାର ସବୁ ଯେ ଖରାପ ବା 'କୁ' ତାହା କୁହାଯାଇ ପାରିବ ନାହିଁ ।

'ଖନା ବଚନ'ରେ ଆମ୍ଭେ ପାଇଥାଉଁ -

ବଳଦ ଥାଇ, ନହୁଏ ହଳ
ତାର ଦୁଃଖ ଚିରକାଳ ।

ଅର୍ଥାତ୍, ଘରେ ବଳଦ ଥାଉଁ ଥାଉଁ ଯେ ଆଳସ୍ୟପରାୟଣ ହୋଇ ଠିକ୍ ସମୟରେ ଚାଷ କରେ ନାହିଁ, ତାକୁ ସର୍ବଦା ଦୁଃଖ ବହନ କରିବାକୁ ପଡ଼େ ।

ବାନ୍ଧ ଆଗେ ଆଡ଼ି
ବୁଣ ତେବେ 'ଶାଳି'
ଫଳ ଯେବେ ନ ଫଳି
'ଖନା'କୁ ଦିଅ ଗାଳି ।

ଅର୍ଥାତ୍, 'ଶାଳି'ଧାନ ଚାଷ କରି ଭଲ ଫସଲ ପାଇବାକୁ ହେଲେ, ଭଲଭାବରେ ଜଳସେଚନ ଦରକାର, ତେଣୁ ଚାଷ ପୂର୍ବରୁ ଜମିର ବନ୍ଧ ଆଡ଼ି ବାନ୍ଧିବା ଆବଶ୍ୟକ । ଏହିପରି କରିବା ଦ୍ୱାରା ଯଦି ଭଲ ଫସଲ ନ ମିଳିଲା, ତେବେ ପ୍ରବାଦ କର୍ତ୍ତା 'ଖନା'କୁ ଗାଳିଦିଅ ।

ସାରୁ ବଣରେ ପାଉଁଶ ଦେଇ
'ଖନା' କହେ ତାର ସଂଖ୍ୟା ନାହିଁ ।

ଅର୍ଥାତ୍, ସାରୁଗଛ ମୂଳରେ ପାଉଁଶ ସାର ଦେଲେ, ବହୁ ସଂଖ୍ୟାରେ ସାରୁ ଫଳିଥାଏ ।

କୃଷି ସଂକ୍ରାନ୍ତୀୟ ଏହିପରି ଅନେକ ଉପଦେଶମୂଳକ 'ଖନା-ବଚନ' ଯେତେବେଳେ ଲୋକପ୍ରିୟ ପ୍ରବାଦ ଆକାରରେ ବ୍ୟାବହାରିକ ଜଗତରେ ସତ୍ୟ ବୋଲି ପ୍ରକାଶିତ ହୁଏ, ସେତେବେଳେ ଏହି ସବୁ ପ୍ରବାଦ ଓ ସଂସ୍କାର ମିଳିମିଶି ଏକ ହୋଇଗଲେ ବି ଏହାକୁ ଆମ୍ଭେ କୁସଂସ୍କାର କହିପାରିବୁ ନାହିଁ । ଏହି ଭଳି ପ୍ରବାଦଗୁଡ଼ିକ ପ୍ରଚଣ୍ଡ ଲୋକ ବିଶ୍ୱାସର କାରଣ ହେତୁ ଲୋକ ସଂସ୍କାରରେ ପରିଣତ ହୋଇଛି ।

'ଖନାର-ବଚନ'ରେ ଯେପରି ଅନେକ ସାରବସ୍ତୁ ମିଳେ, ସେହିପରି ଅସାରବସ୍ତୁ ମଧ୍ୟ କମ୍ ମିଳେ ନାହିଁ । କେଉଁ ନାରୀକୁ ବିବାହ କରିବା ଉଚିତ୍ ନୁହେଁ, ଏହି ସଂପର୍କରେ 'ଖନା' କୁହନ୍ତି -

ଧୂମ୍ରବର୍ଣ୍ଣା, ଅଧିକାଙ୍ଗୀ ଅଥବା ରୋଗିଣୀ
ଅଲୋମିକା କିମ୍ବା ହୁଏ ଅଧିକ ଲୋମିନୀ ।
ବାଚାଳତା ଅଥବା ପିଙ୍ଗଳାକ୍ଷୀ
ନକ୍ଷତ୍ର ନାମିକା କିମ୍ବା ବୃକ୍ଷର ନାମିନୀ ।
ନଦୀ, ପକ୍ଷୀ, ଅହି କିମ୍ବା ନାମେ ଅସ୍ତଗିରି
ଭୀଷଣ ନାମିକା, କିମ୍ବା ବୃକ୍ଷର ନାମିନୀ ।
ଏସବୁ ବିବାହ ଯୋଗ୍ୟ କଦାଚିତ୍ ନୁହେଁ
ଜ୍ୟୋତିଷ ବଚନାର୍ଥେ ଏହିପରି କହେ ।

ଅର୍ଥାତ୍, ଯେଉଁ କନ୍ୟାର ଶରୀର ବର୍ଣ୍ଣ ଧୂଆଁ ଭଳି, ଯିଏ ଅଧିକ ଅଙ୍ଗ ବିଶିଷ୍ଟା କିମ୍ବା ରୋଗିଣୀ, ଯେଉଁ କନ୍ୟା ନିର୍ଲୋମ ଅଥବା ଅଧିକ ବାଳୁଆ ଶରୀର, ଯେ ବେଶି କଥା କହେ, ଅଥବା ଚିଲା ଆଖିଆ ; ନକ୍ଷତ୍ର, ବୃକ୍ଷ, ନଦୀ, ପକ୍ଷୀ, ସାପ, ନାମଧାରୀ କନ୍ୟା, ଅଥବା ଯାହାର ନାମ ଅସ୍ତାଚଳର ଶବ୍ଦାର୍ଥ ବହନ କରେ ବା ଯାହାର ନାମ ଭୀଷଣ ଭାବୋଦ୍ୟତକ କିମ୍ବା ଦୂତୀ ନାମଧାରୀ, ସେମାନେ କେବେହେଲେ ବିବାହଯୋଗ୍ୟା ନୁହଁନ୍ତି ।

ବନ୍ଧ୍ୟା ନାରୀ ସଂପର୍କରେ ମଧ ‘ଖନା-ବଚନ’ ପ୍ରଚଳିତ ଅଛି ।

ଟେରା ଆଖି ଚଞ୍ଚଳ ଲୋଚନା
ଦୁଃଶୀଳ (=ଦୁଷ୍ଟ ସ୍ୱଭାବ) ଅଥବା ପିଙ୍ଗଳ ବରଣା (=ଅତିଗୌର ବର୍ଣ୍ଣ)
ହାସ୍ୟକାଳେ ଗଣ୍ଡସ୍ଥଳେ ଯାହାର ହୁଏ ଗାତ,
ବାଞ୍ଝ ବୋଲି ଜାଣ ତାକୁ କହିଲି ଏ ସତ ।

ଅର୍ଥାତ୍, ଯେଉଁ କନ୍ୟାର ଆଖି ଟେରା ବା ଚଞ୍ଚଳ, ଯେଉଁ କନ୍ୟା ଦୁଷ୍ଟ ସ୍ୱଭାବର ଅଥବା ଅତି ଗୋରା, ଯେ ହସିଲେ ଗାଲରେ ଗାତ ସୃଷ୍ଟି ହୁଏ ସେ ଅବଶ୍ୟ ବନ୍ଧ୍ୟା ନାରୀ ।

‘ଖନା-ବଚନ’ ଏ କ୍ଷେତ୍ରରେ ଯେ ହାସ୍ୟକର, ତାର ଏକ ସର୍ବଜନବିଦିତ ଦୃଷ୍ଟାନ୍ତ ହେଉଛି ପ୍ରତିଷ୍ଠିତ ଅଭିନେତ୍ରୀ ଶର୍ମିଳା ଠାକୁର, ହସିଲେ ତାଙ୍କ ଗାଲରେ ଗାତ ସୃଷ୍ଟି ହୁଏ । ତଥାପି ସେ ଜନନୀ । ତାଛଡ଼ା ପ୍ରତିଦିନ ହଜାର ହଜାର ସଂଖ୍ୟାରେ ଗୌରବର୍ଣ୍ଣା କନ୍ୟା ମା’ ହୋଇ ପ୍ରମାଣ କରି ଦେଉଛନ୍ତି ଯେ ‘ଖନା-ବଚନ’ ଅସାର ।

ମିଥ୍ୟା ଉପରେ ଆଧାରିତ ନ ହୋଇ ସିଧାସଳଖ ଉପଦେଶ ଦେବା ବା ସଂସ୍କାର ଅଭିମୁଖୀ ପ୍ରବାଦର ବି ଅଭାବ ନାହିଁ ଓଡ଼ିଆ ପ୍ରବାଦରେ ।

* ସାତ ମୁହଁରେ ଛେକି କୁକୁର ।
* ଦଶ ମୁହଁରେ ଜୟ, ଦଶ ମୁହଁରେ କ୍ଷୟ ।
* କଥା କଥାରେ ହାତୀ ମିଳେ, କଥା କଥାକେ ହାତୀ ତଳେ ।
* ପୀରତି, ନିଆଁ, କାଶ, ରହେନା ଅପ୍ରକାଶ ।
* ଆହାର, ନିଦ୍ରା, ମୈଥୁନ, ଭୟ, ବଢ଼ାଇବ ଯେତେ ବଢ଼ିବ ସେତେ ।
* ଋଣ ଦିଅ ବନ୍ଧା ରଖି
  ସବୁ ପାଅ ଘରେ ବସି
  ଲାଭ ମୂଳ ଯେତେ ଧନ
  ଘରେ ବସି ତାର ମିଳନ ।

ଶେଷୋକ୍ତ ପ୍ରବାଦରେ ନିହିତ ଉପଦେଶକୁ ବର୍ତ୍ତମାନ ବ୍ୟାଙ୍କ ବ୍ୟବସାୟ ମାନ୍ୟତା ଦେଇ ଚାଲିଛି । କିନ୍ତୁ ଯେଉଁଠାରେ ରାଜନୈତିକ ନେତାମାନଙ୍କର ଚାପରେ ପଡ଼ି ବନ୍ଧା ନରଖି ଋଣ ଦିଆଯାଉଛି, ସେଠାରେ ସୁଧ ଓ ମୂଳ ଉଭୟେ ତମାଦି ହୋଇଥାଏ ।

ପ୍ରବାଦ ବହୁ ସଂସ୍କାରର ଅନ୍ତୁଡ଼ିଶାଳ ହେଲେବି ସବୁ ସଂସ୍କାରର ଉତ୍ପତ୍ତି ଏଥିରୁ ନୁହେଁ । ବହୁ ସଂସ୍କାର ବା ଲୋକ ବିଶ୍ୱାସର ଉତ୍ପତ୍ତି ହୋଇଛି ଧର୍ମ ବିଧାନରୁ, ପଞ୍ଜିକାର ବିଧାନରୁ, ଧର୍ମଗୁରୁ ଓ ଦୀକ୍ଷାଗୁରୁମାନଙ୍କ ବିଧାନରୁ । ଭୂତ-ପ୍ରେତ, ତନ୍ତ୍ର-ମନ୍ତ୍ର, ଡୁଟୁକା-ଡୁଟୁକି, ଝାଡ଼ଫୁଙ୍କ, କୁହୁକ ବିଦ୍ୟା ବିଶ୍ୱାସରୁ, ଆତଙ୍କ ଓ ଅଜ୍ଞତାରୁ ।

**ସଂସ୍କାର ନିମ୍ନମତେ ଦର୍ଶାଯାଇ ପାରେ :-**



# ଧର୍ମ କୁସଂସ୍କାର ଆକାର ଖାଦାନ
# ମାନ ବା ନମାନ

କୁସଂସ୍କାରର ମୂଳ ସ୍ରୋତ ଯେଉଁଠାରୁ ଉତ୍ସରିତ, ତାହାର ନାମ ହେଉଛି- ଧର୍ମ ତଥା ପ୍ରତିଷ୍ଠାନିକ ଧର୍ମ । ହିନ୍ଦୁ, ଇସ୍‌ଲାମ୍, ଖ୍ରୀଷ୍ଟିୟାନ୍, ବୌଦ୍ଧ, ଶିଖ୍, ଜୈନ, ପାର୍ସୀ ଇତ୍ୟାଦି ଧାର୍ମିକ ବିଶ୍ୱାସ ଉପରେ ସମ୍ପୂର୍ଣ୍ଣରୂପେ ନିର୍ଭର କରି ଦଣ୍ଡାୟମାନ ହୋଇ ରହିଛି ଧର୍ମୀୟ-ବିଶ୍ୱାସୀମାନଙ୍କର ପ୍ରତିଷ୍ଠାନିକ ବା ସାଙ୍ଗଠନିକ ରୂପ । ଏହି ପ୍ରତିଷ୍ଠାନିକ-ଧର୍ମ ବା ତଥାକଥିତ ଧର୍ମ ବାସ୍ତବରେ ଯୁକ୍ତିବିରୋଧୀ, ପ୍ରଗତିର ପ୍ରତିବନ୍ଧକ, ଜ୍ଞାନ ଓ ମୁକ୍ତ ଚିନ୍ତାର ଅନ୍ତରାୟ, କୁସଂସ୍କାରର ଆକର ।

ପ୍ରାଚୀନ କାଳରେ ଯେତେବେଳେ ରାଜନୈତିକ ସଂହତିର ଅଭାବ ଥିଲା, ଆଇନର ଶାସନ ଥିଲା ଦୁର୍ବଳ, ସେତେବେଳେ ଧର୍ମୀୟ ଅନୁଷ୍ଠାନ ଗୁଡ଼ିକ ସାହାଯ୍ୟରେ ସାମାଜିକ ଶୃଙ୍ଖଳା ରକ୍ଷାକରିବା ପାଇଁ ଚେଷ୍ଟା ହୋଇଛି । ପୁନଶ୍ଚ ଆଉ କିଛି କାରଣ ବା ପ୍ରୟୋଜନ ଥିଲା ।

କିନ୍ତୁ ଆଧୁନିକ ରାଷ୍ଟ୍ରରେ, ସେ ଦେଶର ଲୋକେ ଯେତେ ଧର୍ମଭୀରୁ ହେଲେ ମଧ, ଆଇନର ଶାସନ ନ ଥିଲେ ସାମାଜିକ ଶୃଙ୍ଖଳା ରକ୍ଷା କରିବା ଅସମ୍ଭବ ହୋଇ ପଡ଼େ । ଏହି ବକ୍ତବ୍ୟ ସପକ୍ଷରେ ଜ୍ୱଳନ୍ତ ଉଦାହରଣ ହେଉଛି- ଭାରତ, ଧର୍ମର ଦେଶ ଭାରତ, ଧର୍ମଭୀରୁମାନଙ୍କର ଦେଶ ଭାରତ, ଅଥଚ ଦୁର୍ନୀତିରେ ପୃଥିବୀର ଅଗ୍ରଗଣ୍ୟ । ଅନ୍ୟାନ୍ୟ ଧର୍ମାବଲମ୍ବୀ ମନୁଷ୍ୟ ଥିଲେ ମଧ ଆମ ଦେଶର ବେଶି ସଂଖ୍ୟକ ମନୁଷ୍ୟ 'ହିନ୍ଦୁ' । ତେଣୁ ନମୁନାସ୍ୱରୂପ ହିନ୍ଦୁ ଧର୍ମକୁହିଁ ଆଲୋଚନାର ବିଷୟବସ୍ତୁ କରାଯାଇଛି ।

ଇହୁଦୀ, ବୌଦ୍ଧ, ଖ୍ରୀଷ୍ଟିୟାନ, ଇସଲାମ, ଜୈନ, ଶିଖ୍ ଇତ୍ୟାଦି ଧର୍ମଗୁଡ଼ିକ ଠାରୁ ହିନ୍ଦୁଧର୍ମର ସୁସ୍ପଷ୍ଟ ଭାବରେ ଏକ ମୌଳିକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ହିନ୍ଦୁ ଛଡ଼ା ବାକି ଯେତେ ଗୁଡ଼ିଏ ଧର୍ମର ନାମ ଏବେ ଉଲ୍ଲେଖ କରାଗଲା, ସେସବୁ ଧର୍ମର ପ୍ରତିଷ୍ଠାତା ଜଣେ ଜଣେ ଧର୍ମଗୁରୁ । ହିନ୍ଦୁ ଧର୍ମର ପ୍ରତିଷ୍ଠାତା ଜଣେ କେହି ଧର୍ମଗୁରୁ ନୁହଁନ୍ତି । ସୁଦୀର୍ଘ ସମୟ ଧରି ନାନା ପୂଜା-ପଦ୍ଧତି, ଈଶ୍ୱର ବିଶ୍ୱାସ, ଆତ୍ମାର ଅବିନଶ୍ୱରତାର ବିଶ୍ୱାସ ଇତ୍ୟାଦି ଆହୁରି ବହୁଧରଣର ପଥ ଓ ମତ ନାନା ଭାବରେ ମିଳିମିଶି ହିନ୍ଦୁଧର୍ମ ନାମରେ ପରିଚିତ ହୋଇଆସିଛି । ହିନ୍ଦୁ ମାନଙ୍କ ମଧରେ ଅନେକେ ଦାବି କରନ୍ତି- ହିନ୍ଦୁଧର୍ମ ଗୋଟାଏ way of life, ଅର୍ଥାତ୍ ଜୀବନ ଚର୍ଯ୍ୟା । ଅନ୍ୟାନ୍ୟ ଧର୍ମପରି କୌଣସି ଏକ ଧର୍ମଗୁରୁ ଦ୍ୱାରା ନିର୍ଦ୍ଦେଶିତ କର୍ତ୍ତବ୍ୟ, ଅକର୍ତ୍ତବ୍ୟ ମଧରେ

ସୀମାବଦ୍ଧ ନୁହେଁ । ଗୋଟିଏ ବା ଦୁଇଟି ଧର୍ମଗ୍ରନ୍ଥ ମଧ୍ୟରେ ଧର୍ମର ଦର୍ଶନ ସହ ଉପଦେଶାବଳୀ ଗଣ୍ଡିବଦ୍ଧ ନୁହେଁ ଅଥବା ହୋଇନାହିଁ ।

ଆର୍ଯ୍ୟମାନେ ହିଁ ଭାରତକୁ ସଭ୍ୟତାର ଆଲୋକ ଆଣିଥିଲେ, ଅର୍ଥାତ୍ ସେମାନେ ଥିଲେ ସଭ୍ୟତାର ପ୍ରବର୍ତ୍ତକ । ଆର୍ଯ୍ୟମାନେ ୪ଟି ବେଦ ସୃଷ୍ଟି କରିଥିଲେ । ତାହା ୬ଟି ଶାଖାରେ ବିଭକ୍ତ, ଯଥା-ଷଡ଼ଦର୍ଶନ ଏବଂ ମନୁସଂହିତା, ଉପନିଷଦ ଇତ୍ୟାଦି । ସର୍ବଜ୍ଞାନ ଭଣ୍ଡାରର ଗ୍ରନ୍ଥଗୁଡ଼ିକର ହାତ ଧରି ସୃଷ୍ଟି ହୋଇଛି ହିନ୍ଦୁଧର୍ମ । ଏହି ଧରଣର ତଳତଳିଆ ସମ୍ଭ୍ରମପୂର୍ଣ୍ଣ ଧାରଣା ଆଜି ହିନ୍ଦୁଧର୍ମୀମାନଙ୍କ ମଧ୍ୟରେ ରହିଛି । ପ୍ରାୟ ୧୦୦ ବର୍ଷ ସରିକି ଏହି ଧାରଣା ପ୍ରବଳ ଭାବରେ ପରିଲକ୍ଷିତ ହେଉଥିଲା । ବର୍ତ୍ତମାନ ନୂଆ କରି ହିନ୍ଦୁ ଧର୍ମ ଜାଗରଣର ଯେଉଁ ପ୍ରକ୍ରିୟା ଚାଲିଛି, ସେଥିରୁ ଅଦୂର ଭବିଷ୍ୟତରେ ଏହି ନୂତନତ୍ୱର ପରିପ୍ରକାଶ ପ୍ରବଳତର ହୋଇ ଜନଚେତନା ଘୋଡ଼ାଇ ଦେଇ ପାରେ । ମାତ୍ର ଏହି ସମସ୍ତ ଧାରଣାହିଁ ଗୋଟିଏ ମିଥ୍ୟା ଭିତ୍ତି ଉପରେ ଦଣ୍ଡାୟମାନ ।

ଆର୍ଯ୍ୟମାନେ ଯେ ଭାରତରେ ପ୍ରଥମ ସଭ୍ୟତାର ଆଲୋକ ପ୍ରଜ୍ୱଳିତ କରିଥିଲେ, ଏଇ ଧାରଣାଟି ଭୁଲ । ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ ପ୍ରମାଣ କରୁଛି ଯେ ଆର୍ଯ୍ୟ ଯାଯାବର ମାନେ ଭାରତକୁ ଆସିବାର ବହୁ ପୂର୍ବରୁ ଭାରତ ଗୋଟିଏ ସୁସଭ୍ୟ ଦେଶ ଥିଲା । ସେତେବେଳର ସେଇ ସଭ୍ୟତା ଥିଲା 'ମିଶର' ଓ 'ସୁମେରୀୟ' ସଭ୍ୟତାର ପ୍ରାୟ ସମସାମୟିକ । ମହେଞ୍ଜୋଦାରୋ, ହରପ୍ପା ନଗର ସଭ୍ୟତାର ଧାର ମାଡ଼ିଲା ଭଳି ଯୋଗ୍ୟତା ଭାରତକୁ ଆଗତ ଯାଯାବର ଆର୍ଯ୍ୟ ମାନଙ୍କର ଥିଲା ନାହିଁ ।

ଆର୍ଯ୍ୟମାନେ ଘୋଡ଼ା ଓ ଲୁହାର ବ୍ୟବହାର ଜାଣିଥିଲେ । ଏହି ଦୁଇଟି ବସ୍ତୁର ବ୍ୟବହାର ଆର୍ଯ୍ୟମାନଙ୍କୁ ଭାରତବର୍ଷର ଉତ୍ତରଭାଗ ତଥା ଆର୍ଯ୍ୟାବର୍ତ୍ତକୁ ଜୟ କରିବାରେ ସାହାଯ୍ୟ କରିଥିଲା ।

ପ୍ରାକ୍ ଆର୍ଯ୍ୟ ଯୁଗର ଏଇ ସଭ୍ୟତାରୁ ଆର୍ଯ୍ୟମାନେ ବୟନ, ଲେଖନ, ଭାସ୍କର୍ଯ୍ୟ, ଗୃହନିର୍ମାଣ ଶିକ୍ଷା କରିଥିଲେ । ପୁଣି ଗ୍ରହଣ କରିଥିଲେ ଧର୍ମୀୟ ବିଶ୍ୱାସ, ପୂଜାର ରୀତି-ନୀତି । ସୃଷ୍ଟିକର୍ତ୍ତା ବ୍ରହ୍ମା, ପାଳନ କର୍ତ୍ତା ବିଷ୍ଣୁ, ପ୍ରଳୟ ବା ସଂହାର କର୍ତ୍ତା ରୁଦ୍ର ବା ମହେଶ୍ୱର- ଏଇତିନି ପିତୃଦେବତା ଏବଂ ଦେବୀ ମାତୃ ବା ମା' ରୂପରେ ଅମ୍ବା, ଭବାନୀ ଓ ଶକ୍ତି ସମସ୍ତେ ଥିଲେ ପ୍ରାକ୍ ଆର୍ଯ୍ୟ ଯୁଗର ଆରାଧ୍ୟ ଦେବଦେବୀ । ଆର୍ଯ୍ୟମାନେ ପ୍ରାକ୍-ଆର୍ଯ୍ୟମାନଙ୍କ ଏହି ଧର୍ମୀୟ ଚିନ୍ତନକୁ ଗ୍ରହଣ କରିଥିଲେ । ପୁରୁଷ ଓ ପ୍ରକୃତିତତ୍ତ୍ୱରୁ ହିଁ ମନୁଷ୍ୟ ଜୀବନ ଉଦ୍‌ଭବ ହୋଇଛି । ସାଂଖ୍ୟ ଦର୍ଶନର ମୂଳ ଏହିଠାରୁ ହିଁ ମିଳିଥାଏ ।

ପ୍ରାକ୍-ଆର୍ଯ୍ୟ ଧର୍ମୀୟ ଧାରଣା ଓ ଆର୍ଯ୍ୟ ଧର୍ମୀୟ ଧାରଣା ମିଶି ହିନ୍ଦୁ ଧର୍ମ ସୃଷ୍ଟି ହୋଇଛି । ଫଳରେ ହିନ୍ଦୁ ଧର୍ମରେ ଏକ ଈଶ୍ୱରବାଦ (ଏକମୁଖୀ ବାଦ) ପରିବର୍ତ୍ତରେ ଆମ୍ଭେ ପାଇଛୁ (ବହୁମୁଖୀବାଦ) ବହୁ ଈଶ୍ୱରବାଦ ।

ହିନ୍ଦୁ ଧର୍ମରେ ଏକା ସାଙ୍ଗରେ ଅବସ୍ଥାନ କରୁଛି ନିରାକାର ଏକେଶ୍ୱରବାଦ ଏବଂ ସାକାର ବହୁ ଦେବ-ଦେବୀ ମାନଙ୍କର ବିଶ୍ୱାସ । ଧର୍ମଗୁରୁମାନେ କେହି ମାତୃ ଉପାସକ, କେହି ପିତୃ ଉପାସକ । କେହି ନିରାମିଷ ଖାଦ୍ୟ ଗ୍ରହଣ କରି ଧର୍ମୀୟ ନିର୍ଦ୍ଦେଶ ପାଳନ କରନ୍ତି ତ କେହି ବା ମଦ-ମାଂସ ଛଡ଼ା ଧର୍ମର ପଥରେ ଆଗେଇ ପାରନ୍ତି ନାହିଁ । କେହି ତ୍ୟାଗ, ବୈରାଗ୍ୟ ଓ ସନ୍ୟାସକୁ ମୋକ୍ଷଲାଭର ପଥବୋଲି ଭାବନ୍ତି । କାହା ପାଖରେ ମଦ ଓ ମାଂସ ଓ ମଦ ଖାଇଲା ପରେ ଚୂଡ଼ାନ୍ତ ସଙ୍ଗମରେ ହିଁ ହୁଏ ସାଧନା ଓ ମୋକ୍ଷ ।

ଅନ୍ୟାନ୍ୟ ପ୍ରଧାନ ଧର୍ମ ଗୁଡ଼ିକରେ ଯେଉଁ ଧରଣର ସ୍ୱବିରୋଧିତା ଥିଲେ ମଧ ହିନ୍ଦୁ ଧର୍ମ ଭଳି ବହୁ ପରିମାଣରେ ସ୍ୱବିରୋଧିତା ନାହିଁ । ତେଣୁ ଏହା ଗୋଟିଏ ଗାଡ଼ିରେ ଯୋଡ଼ା ଯାଇଥିବା ଦଶଟି ଘୋଡ଼ା ଦଶ ଦିଗକୁ ଦୌଡ଼ିବା ଭଳି ମନେ ହୁଏ ।

ବେଦରେ ସବୁ ରହିଛି । ହିନ୍ଦୁମାନଙ୍କ ମଧ୍ୟରେ ଏହି ଧାରଣା ବଳବତ୍ତର । ଆଧୁନିକ ବିଜ୍ଞାନ ଯାହା କିଛି ଆବିଷ୍କାର କରିଛି, ତାହା ସମ୍ପୂର୍ଣ୍ଣ ଭାବେ ଲିପିବଦ୍ଧ ରହିଛି ବେଦରେ । ବିଦେଶୀ ଶକ୍ତି ବେଦକୁ ନେଇଯାଇ ତାହାର ଅର୍ଥ ପାଠୋଦ୍ଧାର କରି ବିଜ୍ଞାନର ନିତ୍ୟ ନୂତନ ଆବିଷ୍କାର କରିଚାଲିଛି । ବେଦରେ କଣ ଅଛି ସେ ସମ୍ପର୍କରେ ଏକ ଆଲୋଚନା ନିମ୍ନରେ ପ୍ରଦତ୍ତ ହେଲା ।

ବେଦ ଚାରିଟି- ଋକ, ସାମ,ଯଜୁ, ଅଥର୍ବ ।

(୧) ଋକବେଦ -

ଏଥିରେ ଅଛି, ଦେବତାମାନଙ୍କ ଉଦ୍ଦେଶ୍ୟରେ ରଚିତ ନାନା ସ୍ତୋତ୍ର । ଋକବେଦର ପାଞ୍ଚଟି ଶାଖାର ନାମ ହେଲା (କ) ଶାକଲ, (ଖ) ବାସ୍କଲ, (ଗ) ଆଶ୍ୱଲାୟନ (ଘ) ସଂଖ୍ୟାୟନ, (ଙ) ମାଣ୍ଡୁକ । ବର୍ତ୍ତମାନ ଋକବେଦର ଶାକଲ ଶାଖାଟି କେବଳମାତ୍ର ତିଷ୍ଠିରହିଛି । ଏବେ ଯେଉଁ ଋକବେଦ ମିଳୁଛି ତହିଁରେ ୧୦୨୮ଟି ସୂକ୍ତ ବା ଅଧ୍ୟାୟ ରହିଛି । ୧୦୨୮ ସୂକ୍ତରେ ଦଶହଜାରରୁ ଉର୍ଦ୍ଧ୍ୱ ଶ୍ଳୋକ ରହିଛି । ଶ୍ଳୋକଗୁଡ଼ିକରେ ଦେବତା ମାନଙ୍କର ଗୁଣଗାନ ଓ ସେମାନଙ୍କର କରୁଣାଭିକ୍ଷା କରାଯାଇଛି । ଏହି ଦେବତା ମାନେ ତିନି ଶ୍ରେଣୀର । ସ୍ୱର୍ଗର ଦେବତା, ଯେଉଁମାନଙ୍କ ଗହଣରେ ପ୍ରଧାନ ହେଉଛନ୍ତି ମିତ୍ର, ପୁଷା, ବିଷ୍ଣୁ, ଉଷା, ଆଦିତ୍ୟଗଣ । ଆକାଶର

ଦେବତା ଯଥା-ଇନ୍ଦ୍ର, ରୁଦ୍ର, ବାୟୁ, ପର୍ଜନ୍ୟ ଓ ମରୁଦ୍‌ଗଣ । ପୃଥିବୀର ଦେବତା, ଯଥା-ଅଗ୍ନି, ସୋମ, ପୃଥିବୀ ଇତ୍ୟାଦି । ଋକବେଦର ଗୋଟିଏ ବୈଶିଷ୍ଟ୍ୟ ହେଲା, ପ୍ରାକୃତିକ ଶକ୍ତି ଗୁଡ଼ିକୁ ଯେପରି ଦେବତ୍ୱ ଆରୋପ କରାଯାଇଛି, ସେହିପରି ମାନବତ୍ୱ ଆରୋପର ପ୍ରୟାସ ମଧ୍ୟ ଥିଲା । ଯେପରି ଉଷା ଏକ ସୁନ୍ଦରୀ ଯୁବତୀ, ଯେ ତାର ପ୍ରେମିକ ପାଖରେ ନିଜର ସ୍ତନ ଉନ୍ମୁକ୍ତ କରି ଦିଏ । ଅଗ୍ନି ଋକ୍ତାଭ କେଶର ଜଣେ ବ୍ରାହ୍ମଣ ଯାହାଙ୍କ ଦେହରେ ପୁରୋହିତଙ୍କର ପୋଷାକ ।

(୨) ସାମବେଦ-

ସାମବେଦକୁ ଋକବେଦରେ ରଚିତ ସ୍ତୋତ୍ରଗୁଡ଼ିକର ସ୍ୱରଲିପି ଗ୍ରନ୍ଥ କୁହାଯାଏ । ଏଥିରେ ସ୍ତୋତ୍ରଗୁଡ଼ିକର ଗାନକରିବାର ବିଧି ଓ ଆବୃତ୍ତିର ବିଧି ସନ୍ନିବେଶିତ ହୋଇଛି । ସାମବେଦର ମୋଟ ତିନୋଟି ଶାଖା । ଯଥା (କ) କୌଥୁମ (ଖ) ରାଣାୟନୀୟ (ଗ) ଜୈମିନୀୟ ବା ତାଲବକାର । ସାମବେଦର କୌଥୁମ ଶାଖାଟି ବେଶି ପ୍ରଚଳିତ । ସାମ ଶବ୍ଦର ଅର୍ଥ ହେଲା ସଙ୍ଗୀତ । ସାମବେଦର ଋକ ବା ସ୍ତବକ ଗୁଡ଼ିକ 'ଯୋନି' ଆଖ୍ୟା ଦିଆ ଯାଇଛି । ଯଜ୍ଞବେଦୀକୁ ମଧ 'ଯୋନି' ଆଖ୍ୟା ଦିଆଯାଇଛି । ପୁରୁଷ ଓ ପ୍ରକୃତି ତତ୍ତ୍ୱ ଏବଂ ଯାଦୁବିଶ୍ୱାସର ସମ୍ପର୍କ ପରିପ୍ରେକ୍ଷୀରେ 'ଯୋନି' ଶବ୍ଦଟିର ବ୍ୟବହାର ଯଥେଷ୍ଟ ତାତ୍‌ପର୍ଯ୍ୟପୂର୍ଣ୍ଣ ।

(୩) ଯଜୁର୍ବେଦ -

ଏଥିରେ ଅଛି ନାନା ଯାଗ-ଯଜ୍ଞର ବିସ୍ତୃତ ନିୟମାବଳୀ, ପଦ୍ଧତି ଓ ଅନୁଶାସନ । ଯଜୁର୍ବେଦ ଦୁଇଭାଗରେ ବିଭକ୍ତ ଯଥା- (କ) ଶୁକ୍ଳ (ଖ) କୃଷ୍ଣ । ଶୁକ୍ଳ ଯଜୁର୍ବେଦର ଗୋଟିଏ ମାତ୍ର ଶାଖା ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଏ । ଶାଖାଟିର ନାମ-ବାଜସନେୟ । କୃଷ୍ଣ ଯଜୁର୍ବେଦର ଚାରୋଟି ଶାଖା ଯଥା- (କ) କାଠକ ସଂହିତା (ଖ) କପିଷ୍ଟଲକଠ-ସଂହିତା, (ଗ) ତୈତ୍ତିରୀୟ ସଂହିତା ବା ଆପସ୍ତମ୍ବ ସଂହିତା (ଘ) ମୈତ୍ରାୟଣୀ ସଂହିତା । ଯଜୁର୍ବେଦର ମନ୍ତ୍ରଗୁଡ଼ିକ ସ୍ଥାନବିଶେଷରେ ଶ୍ଳୋକ ଓ ସ୍ଥାନ ବିଶେଷରେ ଗଦ୍ୟ ଭାବରେ ରଚିତ ।

(୪) ଅଥର୍ବବେଦ -

ପ୍ରାଚୀନତ୍ୱରେ ଏହା ଋକ ବେଦର ପ୍ରାୟ ସମକାଳୀନ । ଅଥର୍ବବେଦର ପ୍ରାଚୀନ ନାମ 'ଅଥର୍ବାଙ୍ଗି ରସ' । ଅଥର୍ବବେଦର ଦୁଇଟି ଶାଖାର ସୂଚନା ମିଳେ । ଯଥା- (କ) ଶୌନକ (ଖ) ପୈପ୍ପଲାଦ । ଅଥର୍ବ ବେଦରେ ଅଛି- ତୁଟୁକା-ତୁଟୁକି, ଝାଡ଼ଫୁଙ୍କ, ମାରଣ-ଉଚାଟନ, ଗୃହବନ୍ଧନ, ଗ୍ରାମବନ୍ଧନ, ବଶୀକରଣ ଇତ୍ୟାଦିର ପ୍ରୟୋଗ ପଦ୍ଧତି ।

ଅଥର୍ବ ବେଦରେ ଆହୁରି ଅଛି ନାରୀର ସୁପ୍ରସବ ପାଇଁ ମନ୍ତ୍ର, ଜ୍ୱର ଭଲହେବାର ମନ୍ତ୍ର, ଗୋରୁ ଗାଈ ରୋଗ ଭଲକରିବାର ମନ୍ତ୍ର, ରାକ୍ଷସ ଓ ପିଶାଚମାନଙ୍କର ନିରାକରଣ ତଥା ବିନାଶ ପାଇଁ ମନ୍ତ୍ର, ବାତ, ପିତ, ଶ୍ଳେଷ୍ମ ଭଲହେବାର ମନ୍ତ୍ର, ହୃଦ୍‌ରୋଗ ଓ କୁଷ୍ଠ ଭଲହେବାର ମନ୍ତ୍ର, ଶତ୍ରୁନାଶ, ଦସ୍ୟୁନାଶ, ଦୀର୍ଘାୟୁ ଲାଭକରିବାର ମନ୍ତ୍ର, ବିବାଦର ଜୟ ପାଇଁ ମନ୍ତ୍ର, କୃମି ରୋଗରୁ ଶାନ୍ତି-ମନ୍ତ୍ର, ଶତ୍ରୁସେନା ସମ୍ମୋହନ ପଦ୍ଧତି, ଯକ୍ଷ୍ମା-ନାଶକ ମନ୍ତ୍ର, ଶତ୍ରୁର ପତ୍ନୀକୁ ବାଂଝ ତଥା ବନ୍ଧ୍ୟା କରିବାର ମନ୍ତ୍ର ଇତ୍ୟାଦି । ଅଥର୍ବ ବେଦରେ ବିଭିନ୍ନ ରୋଗ ଭଲହେବା ପାଇଁ ନାନା ପ୍ରକାର ଚେର, ମୂଳି ଓ ଧାତୁର ବ୍ୟବହାର ବିଷୟ ଅଛି । ଏଇଥିରୁ ରସାୟନ ଶାସ୍ତ୍ରର ସୂଚନା ମିଳିଥାଏ । ଏଇ ବେଦରେ ଅଛି ରୋଗଟିକୁ ରୋଗୀ ପାଖକୁ ଚାଲାଣ କରିଦେବା, ଅଥବା ଅପଦେବତା ବା ଦେବତାମାନଙ୍କ ପାଖରେ ମାର୍ଜନା କରିବା । ଅଥର୍ବବେଦ 'ଯୋଗଦର୍ଶନ' ବା 'ତନ୍ତ୍ର ଦର୍ଶନ' ର ମୂଳ ଉତ୍ସ । ଏଗୁଡ଼ିକ କୁସଂସ୍କାର ଓ ଭ୍ରାନ୍ତ ବିଶ୍ୱାସ ଛଡ଼ା ଆଉ କିଛି ନୁହେଁ ।

ଋକ୍, ସାମ୍, ଯଜୁ ଓ ଅଥର୍ବ ସ୍ଥୂଳତଃ କୁସଂସ୍କାର ଉପରେ ପର୍ଯ୍ୟବଶିତ ।

ବେଦର ବ୍ୟାଖ୍ୟା ମାଧମରେ ବ୍ରାହ୍ମଣ୍ୟ ଗ୍ରନ୍ଥସମୂହ ରଚିତ ହୋଇଥିଲା । ଏହିସବୁ ଗ୍ରନ୍ଥରେ ସନ୍ନିବେଶିତ ହୋଇଛି ନାନା ପ୍ରକାର ଯାଗ-ଯଜ୍ଞର ବିଷୟ ଏବଂ ଯଜ୍ଞକୁ ମହାଜାଗତିକ ଶକ୍ତି ହିସାବରେ ଗଣ୍ୟ କରିବାର ବିଧି ।

ଧର୍ମକୁ ନେଇ ଲୋକ ବିଶ୍ୱାସ, ଅନ୍ଧବିଶ୍ୱାସ, ସଂସ୍କାର ଏବଂ କୁସଂସ୍କାର ସମ୍ବନ୍ଧରେ କେତେକ ପ୍ରବାଦର ଦୃଷ୍ଟାନ୍ତ ସହିତ ତତ୍ ସଂଲଗ୍ନ ଗଳ୍ପ ଏବଂ ସେଗୁଡ଼ିକର ସଂକ୍ଷିପ୍ତ ସମୀକ୍ଷା ନିମ୍ନରେ ପ୍ରଦତ୍ତ ହେଲା ।

## (୧) ଅଗସ୍ତ୍ୟ ଯାତ୍ରାରେ ଯିବ
## ଯଦି ମାସର ପହିଲା ଯିବା

ଗୋଟିଏ ଲୋକବିଶ୍ୱାସ ରହିଛି ଯେ ପାହାଡ଼ ପର୍ବତ, ସମୁଦ୍ର ନଦୀ, ସୂର୍ଯ୍ୟ, ଚନ୍ଦ୍ର ଇତ୍ୟାଦି ପ୍ରତ୍ୟେକଙ୍କର ପ୍ରାଣ ଅଛି । ସେମାନେ ନିଜ ନିଜ ମଧ୍ୟରେ କଥାବାର୍ତ୍ତା କରନ୍ତି। ଆଦିଭାଷା ସଂସ୍କୃତରେ ସେମାନେ କଥା କହନ୍ତି କି ? ଯେତେବେଳେ ଭାଷା ସୃଷ୍ଟି ହୋଇଥିଲା, ସେତେବେଳେ କ'ଣ ଏମାନେ ମୂକ ଥିଲେ ? ଏଇ ପ୍ରଶ୍ନର ଉତ୍ତର କିଏ ଦେବ ?

ଲୋକ ବିଶ୍ୱାସ ଏସବୁ ଯୁକ୍ତିର ଧାର ଧାରେ ନାହିଁ। ଏହିପରି ଗୋଟିଏ

ଲୋକବିଶ୍ୱାସ ହେଉଛି - ଦିନେ ବିନ୍ଧ୍ୟ ପର୍ବତ ଇଚ୍ଛା କଲେ ଯେ ସୂର୍ଯ୍ୟ ଯେପରି ଉଦୟ ଓ ଅସ୍ତ ସମୟରେ ସୁମେରୁ ପର୍ବତକୁ ପ୍ରଦକ୍ଷିଣ କରନ୍ତି (ସୂର୍ଯ୍ୟ ଯେ ପୃଥିବୀକୁ ବା ତାର କୌଣସି ଅଂଶକୁ ଆଦୌ ପ୍ରଦକ୍ଷିଣ କରନ୍ତି ନାହିଁ, ଏକଥା ଆର୍ଯ୍ୟ ଯୁଗର ସର୍ବଜ୍ଞ ମୁନି-ଋଷିମାନଙ୍କୁ ଜଣା ନଥିଲା ), ସେହିପରି ବିନ୍ଧ୍ୟ ପର୍ବତକୁ ମଧ ପ୍ରଦକ୍ଷିଣ କରନ୍ତୁ। ବିନ୍ଧ୍ୟପର୍ବତ ତାଙ୍କର ଅଭିଳାଷ ସୂର୍ଯ୍ୟଙ୍କୁ ଜଣାଇଲେ । ସୂର୍ଯ୍ୟଦେବ ବିନ୍ଧ୍ୟଙ୍କର ଏହି ପ୍ରସ୍ତାବକୁ କର୍ଣ୍ଣପାତ କଲେ ନାହିଁ । ଫଳରେ ବିନ୍ଧ୍ୟପର୍ବତ ଅତୀବ କ୍ରୋଧିତ ହୋଇ ନିଜ ବପୁକୁ ଏପରି ଭାବରେ ପ୍ରସାରିତ କଲେ ଯେ ସୂର୍ଯ୍ୟଙ୍କ ଗତିପଥ ଅବରୁଦ୍ଧ ହୋଇ ପଡ଼ିଲା । ଏହାଦେଖି ସୂର୍ଯ୍ୟ ଓ ଅନ୍ୟାନ୍ୟ ଦେବତା ମାନେ ଭୀତତ୍ରସ୍ତ ହେଲେ । ଏହାର ପ୍ରତିକାର ପାଇଁ ସମସ୍ତେ ବିନ୍ଧ୍ୟ ପର୍ବତଙ୍କ ଗୁରୁ ଅଗସ୍ତ୍ୟ ଋଷିଙ୍କ ପାଖକୁ ଦୌଡ଼ିଲେ ।

ଋକବେଦ ଅନୁଯାୟୀ ଅଗସ୍ତ୍ୟଙ୍କର ଦୁଇଟି ପିତାଥିଲେ-ସୂର୍ଯ୍ୟ ଓ ବରୁଣ । ଥରେ ଉର୍ବଶୀଙ୍କୁ ଦେଖି ସୂର୍ଯ୍ୟ ଓ ବରୁଣଙ୍କର ବୀର୍ଯ୍ୟପାତ ଘଟିଲା । ଏହି ବୀର୍ଯ୍ୟ ଯଜ୍ଞ କୁଣ୍ଡରେ ପଡ଼ି ସେଥିରୁ ଅଗସ୍ତ୍ୟଙ୍କର ଜନ୍ମହେଲା । କୁଣ୍ଡରୁ ଜନ୍ମିଥିବାରୁ ଅଗସ୍ତ୍ୟଙ୍କର ଆଉ ଏକ ନାମ ହେଲା 'କୁଣ୍ଡଯୋନୀ' (ଦୁଇଜଣଙ୍କର ଦୁଇଟି ଶୁକ୍ରକୀଟ ଗୋଟିଏ ଡ଼ିମ୍ବାଣୁରେ ପଶି ଗୋଟିଏ ଗର୍ଭ ଉତ୍ପାଦନ ବିଜ୍ଞାନ ବିରୋଧୀ । ଯଜ୍ଞକୁଣ୍ଡରୁ ଗର୍ଭ ଉତ୍ପାଦନ ଏହା ଯେତିକି ହାସ୍ୟକର, ସେହିପରି ଗୋରୁ ଗଛ ଚଢ଼ିଲା ପରି ଅସମ୍ଭବ କଥା) । ଅଗସ୍ତ୍ୟ ପିତା ସୂର୍ଯ୍ୟ ଓ ଅନ୍ୟାନ୍ୟ ଦେବତାଙ୍କର ସବୁ କଥା ଶୁଣିଲେ । ସେମାନଙ୍କୁ ସାନ୍ତ୍ୱନା ଦେଇ ବିନ୍ଧ୍ୟ ପର୍ବତ ପାଖରେ ପହଞ୍ଚିଲେ, ବିନ୍ଧ୍ୟ ଗୁରୁଙ୍କୁ ଦେଖି ସାଷ୍ଟାଙ୍ଗ ପ୍ରଣାମ କଲେ । ଅଗସ୍ତ୍ୟ କହିଲେ - ମୁଁ ଯେତେବେଳେଯାଏ ନ ଫେରିଛି, ତୁମେ ଏହିପରି ସାଷ୍ଟାଙ୍ଗ ପ୍ରଣାମ ଭଙ୍ଗୀରେ ଥାଅ । ତାପରେ ଅଗସ୍ତ୍ୟ ଆଉ ଫେରିଲେ ନାହିଁ। ବିନ୍ଧ୍ୟ ପର୍ବତ ଏବେବି ଗୁରୁଙ୍କ ଆଦେଶରେ ମଥାନତ କରି ରହିଛନ୍ତି । ଫଳରେ ସୂର୍ଯ୍ୟ ତାଙ୍କର ଗତିପଥରେ ପ୍ରଦକ୍ଷିଣ କରୁଛନ୍ତି । ଅଗସ୍ତ୍ୟଙ୍କର ଏହି ବିଦାୟର ଦିନ ଥିଲା - ଭାଦ୍ରବମାସ ପ୍ରଥମ ଦିନ । ଏଥିପାଇଁ ଭାଦ୍ରବମାସ ପ୍ରଥମ ଦିନ ଯାତ୍ରା ନିଷିଦ୍ଧ । ପରବର୍ତ୍ତୀ କାଳରେ ପ୍ରତ୍ୟେକ ମାସର ପ୍ରଥମ ଦିନ ଯାତ୍ରା ନିଷିଦ୍ଧ ବୋଲି ପ୍ରଚଳିତ ଲୋକ ବିଶ୍ୱାସ, କୁସଂସ୍କାର ଛଡ଼ା ଆଉ କ'ଣ କୁହାଯାଇ ପାରିବ ।

## (୨) ଅଘଟଣ ଘଟାଏ ବିଧି

ସମୟ ଥିଲା, ଯେତେବେଳେ ପ୍ରକୃତି ଉପରେ ମନୁଷ୍ୟ ଜୀବନର ଭଲ-ମନ୍ଦ, ସୁଖ-ଦୁଃଖ ନିର୍ଭରଶୀଳ ଥିଲା । ରୌଦ୍ର କୃଷି ଭିତ୍ତିକ ସମାଜରେ ଅତିବୃଷ୍ଟି, ଅନାବୃଷ୍ଟି, ପ୍ଲାବନ, ଝଡ଼-ବାତ୍ୟା, ସର୍ପାଘାତ ହିଂସ୍ର ଜନ୍ତୁ ଉପଦ୍ରବ ପ୍ରଭୃତି ମନୁଷ୍ୟର ଜୀବନକୁ

ପ୍ରଭାବିତ କରୁଥିଲା । ପ୍ରାକୃତିକ ବିପର୍ଯ୍ୟୟରୁ ଜୀବନ ତଛନଛ ହେଲେ ତାହାକୁ ମନୁଷ୍ୟର ଅଘଟଣ, ଅଦୃଷ୍ଟର ଲିଖନ ବା ବିଧି ବୋଲି ମନେ କରା ଯାଉଛି ।

ଅଦୃଷ୍ଟବାଦର ଉତ୍ପତ୍ତି ହୋଇଛି ଅଶିକ୍ଷାରୁ । ଅନିଶ୍ଚୟତାରୁ ସାଂସ୍କୃତିକ ପରିବେଶ ଅଦୃଷ୍ଟବାଦକୁ ସଂକ୍ରମିତ କରିଛି । ଏହି ଉକ୍ତି ବା ଯୁକ୍ତିର ସତ୍ୟତା ଉପଲବ୍ଧି କରିବା ପାଇଁ ଆମ୍ଭମାନଙ୍କର ଟିକିଏ ସଚେତନତା ଯଥେଷ୍ଟ ।

ପ୍ରତିବର୍ଷ ବିଶେଷ କରି ଗ୍ରାମମାନଙ୍କରେ ବହୁ ଲୋକ ସାପ କାମୁଡ଼ାରେ ମୃତ୍ୟୁ ବରଣ କରନ୍ତି, କାରଣ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରଗୁଡ଼ିକରେ ସର୍ପାଘାତର ଜୀବନ ରକ୍ଷାକାରୀ ଇଞ୍ଜେକସନ ମିଳେ ନାହିଁ ବା ନଥାଏ । ଫଳରେ ବହୁ କ୍ଷେତ୍ରରେ ଲୋକେ ବାଧ୍ୟବାଧକତାରେ ଅନ୍ତିମ ଚେଷ୍ଟା ପାଇଁ ଗୁଣିଆମାନଙ୍କର ଦ୍ୱାରସ୍ଥ ହୁଅନ୍ତି, ରୋଗୀ ମରେ । ଲୋକେ ଦାରିଦ୍ର୍ୟର କଷାଘାତରେ ପଡ଼ି କହିଥାନ୍ତି-**ଜନ୍ମ, ମୃତ୍ୟୁ, ବାହା, ତିନିଙ୍କି ବିଧାତା ସାହା,** ଅର୍ଥାତ୍ ଏହି ଅପମୃତ୍ୟୁକୁ ଭାଗ୍ୟର ଲିଖନ ବୋଲି ଧରି ନେଇ କୁହାଯାଏ-**ଭାଗ୍ୟର ଲିଖନ କେ କରିବ ଆନ** । ଏହି ଅନ୍ଧବିଶ୍ୱାସରୁ ସାମ୍ବିଧାନିକ ଚିକିତ୍ସା ଅଧିକାରରୁ ସେମାନେ ଓହରି ଯାଇଥାନ୍ତି ଏବଂ ଦାରିଦ୍ର୍ୟ ପୀଡ଼ିତ ମନୁଷ୍ୟ ଶୋକ ପାଳନ କରି କର୍ତ୍ତବ୍ୟ ସାଧନ କରିଥାନ୍ତି । ସେମାନେ ଜାଣନ୍ତି ନାହିଁ ଯେ ସେମାନଙ୍କର ମହାନ ଦେଶର ମହାନ ସଂବିଧାନ ନାଗରିକଙ୍କୁ ଚିକିତ୍ସାଲାଭର ଅଧିକାର ବ୍ୟତୀତ ଦେଇଛି ବାସଗୃହ ଖାଦ୍ୟ, ପାନୀୟ, ଶିକ୍ଷା, ସ୍ୱାସ୍ଥ୍ୟର ଅଧିକାର । ଯେଉଁମାନେ ଏସବୁ ସୁବିଧାରୁ ବଞ୍ଚିତ, ସେହିମାନେ ହିଁ ଦୁର୍ଘଟଣାକୁ ଭାଗ୍ୟର ଲିଖନ ବୋଲି କହିଥାନ୍ତି । ଅନ୍ୟପକ୍ଷରେ ଶିଳ୍ପୀ, ସଙ୍ଗୀତଜ୍ଞ, ଆଇନଜୀବୀ, ଉଚ୍ଚ ପଦାଧିକାରୀମାନଙ୍କ ମଧ୍ୟରୁ ଅନେକେ ଆନ୍ତରିକତା ସହିତ ଭାଗ୍ୟ ଉପରେ ବିଶ୍ୱାସ କରିଥାନ୍ତି । ଜୀବନ ଯୁଦ୍ଧରେ ଅନିଶ୍ଚିତତା ହେତୁ ଏହି ବିଶ୍ୱାସ ସେମାନଙ୍କ ମସ୍ତିଷ୍କ ସ୍ନାୟୁକୋଷରେ ଦାନା ବାନ୍ଧିଥାଏ । କର୍ମଜୀବନର ଉତ୍‌ଥାନ ଓ ପତନକୁ ଏମାନେ ବିଧି ବା ଭାଗ୍ୟ ବୋଲି ଧରିନିଅନ୍ତି । ଯେତେବେଳେ ଅତି ସାଧାରଣ ଅଭିନେତା ବା ଅଭିନେତ୍ରୀ 'ସୁପର ଷ୍ଟାର' ସ୍ତରକୁ ଉନ୍ନୀତ ହୁଅନ୍ତି, କଠୋର ସଂଗ୍ରାମ ମାଧ୍ୟମରେ ଉନ୍ନତି କରିଥିଲେ ମଧ୍ୟ ସେମାନେ ଏହାକୁ ସୁଯୋଗ ନ ଭାବି ଭାଗ୍ୟ ବୋଲି ଧରି ନିଅନ୍ତି ।

ପ୍ରତ୍ୟେକ ଘଟଣା ପଛରେ ଥାଏ କାର୍ଯ୍ୟ ଆଉ କାରଣର ସମ୍ପର୍କ । ଗୋଟିଏ କାରଖାନା ବନ୍ଦ ହୋଇ ବହୁଜଣଙ୍କର କର୍ମହାନି, ଲଟେରିରେ ଅର୍ଥଲାଭ, ପ୍ରତ୍ୟେକ ଘଟଣା ପଛରେ ରହିଛି କାର୍ଯ୍ୟ ଆଉ କାରଣର ସମ୍ପର୍କ । ଏହି ସମ୍ପର୍କ ଗୁଡ଼ିକୁ ଖୋଜି ବାହାର କରିବାକୁ ଚେଷ୍ଟା କଲେ ନିଶ୍ଚିତ ଭାବେ ମିଳିବ । ନ ଖୋଜି ଏଗୁଡ଼ିକୁ 'ବିଧି' ବା 'ଭାଗ୍ୟ' କହିଲେ ତାହା ଭୁଲ ହେବ ।

ଗୋଟିଏ କାରଖାନା ବନ୍ଦ ହୋଇପାରେ ବିଭିନ୍ନ କାରଣରୁ, ଯଥା - ପରିଚାଳନା କର୍ତ୍ତୃପକ୍ଷଙ୍କ ଅକ୍ଷମତା, ମାନ୍ଦା ବଜାର, ଅର୍ଥନୈତିକ ସଙ୍କଟ, ଶ୍ରମିକ ଅଶାନ୍ତି, ପ୍ରତିଦ୍ୱନ୍ଦୀ ବ୍ୟବସାୟୀ ମାନଙ୍କର ସଂଘବଦ୍ଧ ବିରୋଧ, ଆକସ୍ମିକ ଦୁର୍ଘଟଣା ଇତ୍ୟାଦି ।

ବେକାର ରହିବା ପଛରେ ମଧ ରହିଛି କାରଣ । ସ୍ୱାଧୀନତା ପ୍ରାପ୍ତିର ଅର୍ଦ୍ଧ ଶତାବ୍ଦୀ ପରେ ମଧ ସବୁ ପରିକଳ୍ପନାର ପ୍ରାୟ ସମସ୍ତ ଅର୍ଥ ହଜି ଯାଇଛି । ଏଥିପାଇଁ ମନ୍ତ୍ରୀଠାରୁ ବିଲ୍‌ପାସ୍ କରୁଥିବା କିରାଣିମାନେ ହିଁ ଦାୟୀ ।

ଲଟାରି ଉଠାଣ କ୍ଷେତ୍ରରେ ପ୍ରଥମ ପୁରସ୍କାରଟି ଗୋଟିଏ ନମ୍ବରକୁ ମିଳିନି, ଗୋଟିଏ ଟିକଟକୁ ପ୍ରଥମ ପୁରସ୍କାର ଦେବା ପାଇଁ ଉଠାଣ ହେଲେ ତାର ଜଣେ ନିଶ୍ଚିତ ଭାବରେ କ୍ରେତା ଥିବେ । ଏହା ଏକ ପଦ୍ଧତିଗତ ଘଟଣା ମାତ୍ର । ଏହାଠାରୁ ବେଶି କିଛି ନୁହେଁ । ଯେତେ ବେଶି ବେଶି ଲଟାରି କମ୍ପାନୀ ସୃଷ୍ଟିହେବ, ସେତେ ବେଶି ବେଶି ଲୋକ 'ବିଜେତା' ହେବେ । ପୁଣି ଆଇନ ପ୍ରଣୟନ କରି ଲଟାରି ବ୍ୟବସ୍ଥା ବନ୍ଦ କରିଦେଲେ ଲଟାରି ଜିତେଇ ଦେବାର ଭାଗ୍ୟବି ବିମୁଖ ହୋଇ ଯିବ ।

ଗୋଟିଏ ବିମାନ ଦୁର୍ଘଟଣା ବା ନୌକା ବୁଡ଼ି, ଯାହା ଘଟୁନା କାହିଁକି ତା ପଛରେ ବି କାରଣ ନିହିତ । ବିମାନ ଦୁର୍ଘଟଣା କ୍ଷେତ୍ରରେ ବିମାନର କାରିଗରି ତ୍ରୁଟି, ବୈମାନିକ ଟ୍ରେନିଂର ଅଭାବ, ଦୁର୍ଯୋଗ, ଅନ୍ତର୍ଘାତୀ କାର୍ଯ୍ୟ ଇତ୍ୟାଦି କାରଣ ଥାଇ ପାରେ । ପୁଣି ଦୁର୍ଘଟଣା ହେଲେ ସବୁ ସମୟରେ ସମସ୍ତେ ମରନ୍ତି ନାହିଁ । ଏ କ୍ଷେତ୍ରରେ ଦୁର୍ଘଟଣାର ବ୍ୟାପକତର ଅନେକ କାରଣ ନିହିତ । ଦୁର୍ଘଟଣାରେ କିଛି ମରନ୍ତି, କିଛି ବଞ୍ଚନ୍ତି । ଏଇ ମରିବା ବା ବଞ୍ଚିବା କୌଣସି ହିସାବରେ ବିଧି ବା ଭାଗ୍ୟ ଉପରେ ନିର୍ଭରଶୀଳ ନୁହେଁ ।

ନୌକା ବୁଡ଼ିରେ ଝଡ଼ ବର୍ଷା ଜଳଉଚ୍ଛ୍ୱାସ, କ୍ଷମତାଧିକ ଯାତ୍ରୀ ବହନ ଇତ୍ୟାଦି କାରଣ ଥାଇପାରେ । କ୍ଷମତା ଅପେକ୍ଷା ଦୁଇ ତିନିଗୁଣ ଯାତ୍ରୀ ବହନ କଲେ ଅନେକ ସମୟରେ ନୌକା ବୁଡ଼େ । ଅତି ଲୋଭ ଓ ପ୍ରଶାସନର ଗଫ୍‌ଲତିକୁ 'ବିଧି ଘଟାଇବା ଅଘଟଣ' କହିବା କଣ ଠିକ ? ସମ୍ବାଦପତ୍ର ଗୁଡ଼ିକ ବୁଡ଼ି ଯିବା ନୌକାକୁ 'ଅଭିଶପ୍ତ' ବୋଲି ଚିହ୍ନିତ କରିଥାନ୍ତି । 'ଅଭିଶପ୍ତ' ନା 'ଗଫ୍‌ଲତି' କେଉଁଟା ଠିକ୍ ?

ଶ୍ରୀଯୁକ୍ତ ମାଫିଆ ସର୍ଦ୍ଦାରମାନେ ଜେଲ ଭିତରେ ଥାଇ ସେଲଲାର (ମୋବାଇଲ) ଫୋନଯୋଗେ ନିର୍ଦ୍ଦେଶ ଦେଇ ନିଜର ଦଳକୁ ପରିଚାଳିତ କରି ପାରେ କିପରି ? କିପରି ଜାଣିପାରେ କେବେ ଓ କେତେବେଳେ ଏକ ପ୍ରଦେଶର ପୁଲିସ ବାହିନୀ ଅନ୍ୟପ୍ରଦେଶକୁ ଯାଇ ତା ଦଳଉପରେ ଚଢ଼ାଉ କରିବେ ? କିପରି ଏହି

ଖବର ଜେଲ ଭିତରେ ବସି ସେ ଅନ୍ୟ ପ୍ରଦେଶରେ ଥିବା ତା ଦଳକୁ ପଠାଇ ପାରେ ? ଉପରସ୍ଥ ପୋଲିସ ଓ ଶୀର୍ଷ ରାଜନୈତିକ ନେତାମାନଙ୍କର ସକ୍ରିୟ ସହଯୋଗିତା ନଥିଲେ ଏପରି ଘଟିବା ଅସମ୍ଭବ । ଏଇ ଅସମ୍ଭବ ବା ଅଘଟଣ କିଏ ଘଟାଉଛନ୍ତି ? ବିଧି , ନା ପୋଲିସ୍ ଓ ରାଜନୈତିକ ନେତା ?

ଏଠାରେ ଗୋଟିଏ ପ୍ରଶ୍ନ ଉଠିପାରେ, ସହସ୍ର ସହସ୍ର ବର୍ଷ ଧରି ମନୁଷ୍ୟ କ'ଣ ତାହାହେଲେ ଗୋଟିଏ ଭୁଲ ଧାରଣାକୁ ବହନକରି ଚାଲିଛି ? କାହିଁକି ? କ'ଣ ତାର କାରଣ ?

ଉତ୍ତରଟି ହେଲା - ଅନ୍ଧବିଶ୍ୱାସ ପ୍ରଣୋଦିତ ମନୋଭାବ ।

ପ୍ରକୃତପକ୍ଷେ ଏଇ ଭାଗ୍ୟବାଦୀର ଉଚ୍ଛ୍ୱାସ ଗୋଟିଏ ଦିନରେ ଆମ୍ଭମାନଙ୍କ ମୁଣ୍ଡରେ ପଶି ଯାଇନି । ଆମ୍ଭମାନଙ୍କର ପରିବେଶହିଁ ଆମ୍ଭମାନଙ୍କୁ ଭାଗ୍ୟଉପରେ ବିଶ୍ୱାସ କରିବା ପାଇଁ ପ୍ରଶ୍ରୟ ଦେଇଛି ବା ପ୍ରବର୍ତ୍ତାଇଛି ।

ମନୁଷ୍ୟ ଜୀବନରେ ପରିବେଶର ପ୍ରଭାବ ଅପରିସୀମ । ଏଇ ପରିବେଶକୁ ଆମ୍ଭେ ଦୁଇ ଭାଗରେ ବିଭକ୍ତ କରିପାରୁ । ପ୍ରଥମ-ଆର୍ଥିକ ସାମାଜିକ ପରିବେଶ, ଦ୍ୱିତୀୟ-ସମାଜ ସାଂସ୍କୃତିକ ପରିବେଶ ।

ଯେଉଁ ଅଞ୍ଚଳଟି ଉର୍ବର, ପ୍ରାକୃତିକ ସମ୍ପଦରେ ଭରପୁର, ସେ ଅଞ୍ଚଳର ମନୁଷ୍ୟମାନଙ୍କର ଜୀବନଯାତ୍ରାର ମାନ ଉନ୍ନତ ହେବା ସ୍ୱାଭାବିକ୍ । ଆଉ ଶିକ୍ଷା, ସଂସ୍କୃତି, ଓ ବିଜ୍ଞାନରେ ଅଗ୍ରଗାମୀ ହେବାର ଏହା ହେଉଛି ମୂଳ ଉତ୍ସ । ଯେଉଁ ଅଞ୍ଚଳ ଦୁର୍ଗମ, ମରୁ ବା ମେରୁ, ସେହି ଅଞ୍ଚଳର ମନୁଷ୍ୟମାନେ ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ବଞ୍ଚି ରହିବା ପାଇଁ ସଂଗ୍ରାମ କରିଥାନ୍ତି । ଫଳରେ ତାଙ୍କୁ ଅନ୍ନଚିନ୍ତା ଛଡ଼ା ଅନ୍ୟ କୌଣସି ଚିନ୍ତା କରି ମନର ଖୋରାକ ମେଣ୍ଟାଇବା ପାଇଁ ଅବକାଶ ମିଳେ ନାହିଁ ।

ଯେଉଁ ସମାଜ ବ୍ୟବସ୍ଥାରେ ଏପରି ଅସାମ୍ୟ ପ୍ରକଟିତ, ସେହି ଅଞ୍ଚଳରେ ଶୋଷିତ ମନୁଷ୍ୟମାନଙ୍କୁ ଶିକ୍ଷା, ସଂସ୍କୃତିରେ ପଛେଇ ରଖିବାର ଚେଷ୍ଟା କେତେକ ମୁଷ୍ଟିମେୟ ମନୁଷ୍ୟ ଚାହିଁବେ ହିଁ ଚାହିଁବେ । ଫଳରେ ସେମାନେ ଶାସକ ଶ୍ରେଣୀର ସ୍ୱାର୍ଥ ରକ୍ଷା ପାଇଁ ହତିଆର 'ଅଦୃଷ୍ଟ ବାଦରେ' ପ୍ରଗାଢ଼ ବିଶ୍ୱାସ କରିଥାନ୍ତି । ସମାଜ-ସଂସ୍କୃତି ଶିଶୁ ଉପରେ ଜନ୍ମହେବାଠାରୁ ପ୍ରଭାବ ବିସ୍ତାର କରିଥାଏ । ସମାଜ-ସଂସ୍କୃତିର ପ୍ରଭାବ ଫଳରେ ମାନବିକ ଆଚାର - ଆଚରଣ ଓ ମାନବିକତା ବିକଶିତ ହୁଏ । ଶିଶୁକୁ ଚାଲିବା ଶିଖାଇବାକୁ ପଡ଼େ, ତେଣୁ ଚାଲେ । କେଉଁ ଭାଷାରେ ସେ କଥା କହିବ, କିପରି ଖାଦ୍ୟାଭ୍ୟାସ କରିବ, ପ୍ରଶ୍ନାତୀତ ଆନୁଗତ୍ୟ 'ସୁବୋଧ ବାଳକ'ର ଲକ୍ଷଣ

ବୋଲି ମନେ କରାଯିବ କି ନାହିଁ ଏହି ସମସ୍ତ ଠିକ କରି ଦିଅନ୍ତି ବାପା, ମା' ଓ ଶିଶୁର ଆଖପାଖ ଲୋକେ । କୌଣସି ଶିଶୁ ଯଦି କୌଣସି କାରଣରୁ ମାନବ-ସମାଜରେ ବଡ଼ ନ ହୋଇ ପଶୁସମାଜରେ ପାଳିତ ହୁଏ, ତାହାହେଲେ ଦେଖାଯିବ ଯେ ସେ ପଶୁପରି ହାମକୁଡ଼େଇ (ଗୁରୁଣ୍ଡିଲା ଭଳି) ଚାଲିଛି, ହାତକୁ ବ୍ୟବହାର ନ କରି ସିଧା ମୁହଁ ଦ୍ୱାରା ଖାଇବା ଗ୍ରହଣ କରୁଛି । ଜିଭଦ୍ୱାରା ଚାଟିଚାଟି ପାଣି ପିଉଛି ।

ଶିଶୁ ବୟସରେ ବା ଶୈଶବରେ ମନୁଷ୍ୟ ତାର ବାପ, ମା'ଙ୍କର ବ୍ୟକ୍ତିତ୍ୱ ଓ ମାନସିକତା ଦ୍ୱାରା ପ୍ରଭାବିତ ଓ ପରିଚାଳିତ ହୁଏ । ବାପା, ମା'ର ଧର୍ମୀୟ ବିଶ୍ୱାସ ଆଞ୍ଚଳିକତା ଗୋଷ୍ଠୀପ୍ରୀତି, ଶ୍ରେଣୀ-ଚେତନା, ପ୍ରାଦେଶିକତା, ଯୁକ୍ତିବାଦୀ ଚେତନା, ମୂଲ୍ୟବୋଧ, ନୀତିବୋଧ, ସାହିତ୍ୟପ୍ରୀତି, ସଙ୍ଗୀତାଦି ପ୍ରୀତି, ଅଙ୍କନ ପ୍ରୀତି, ଅଭିନୟ-ପ୍ରୀତି, ଦୟା, ନିଷ୍ଠୁରତା, ଘର କରଣା ମାନସିକତା, ସମାଜସେବାରେ ଆଗ୍ରହ, ନିଶାପ୍ରତି ଓ ସାମାଜିକ କାର୍ଯ୍ୟକ୍ରମ ପ୍ରତି ଆଗ୍ରହ, ଭୀରୁତା, ଦୁଃସାହସିକତା, ରାଜନୈତିକ ସଚେତନତା, ସମାଜିକ ସଚେତନତା, ମିଥ୍ୟା କହିବାର ପ୍ରବଣତା, ଇତ୍ୟାଦି ସନ୍ତାନକୁ ପ୍ରଭାବିତ କରେ ।

ଶିଶୁ ବଡ଼ ହୁଏ । ପାଠ ପଢ଼ିବା ପାଇଁ ସମର୍ଥ ହେଲେ ବିଦ୍ୟାଳୟର ଶିକ୍ଷକ, ସହପାଠୀ ମାନଙ୍କର ଚିନ୍ତାଭାବନା, ଆଚାର ବ୍ୟବହାର ପ୍ରଭାବିତ କରୁଥାଏ । ବଢ଼ିଉଠୁଥିବା ଶିଶୁଟି ଉପରେ ଅନବରତ ପ୍ରଭାବ ପକାନ୍ତି ପରିବାରର ଲୋକମାନେ, ଆତ୍ମୀୟସ୍ୱଜନ, ପ୍ରତିବେଶୀ, ବନ୍ଧୁବାନ୍ଧବ, ପାଠ୍ୟ-ପୁସ୍ତକ, ପତ୍ର-ପତ୍ରିକା, ଟେଲିଭିଜନ, ସିନେମା, ଯାତ୍ରା, ତାମସା, ଥିଏଟର, ବିଦ୍ୟାଳୟ, ଧର୍ମୀୟ ପ୍ରତିଷ୍ଠାନ ଇତ୍ୟାଦି । କିଶୋର ବୟସରେ ସେ ତାର ଘନିଷ୍ଠ ବ୍ୟକ୍ତିର ଆଖି ଓ କାନ ଦ୍ୱାରା ଦେଖେ ଓ ଶୁଣେ । ତାର ପରିଚିତ ଗୋଷ୍ଠୀର ମୂଲ୍ୟବୋଧ ସହିତ ଜାତୀୟ ସ୍ୱାର୍ଥର ସଂଘାତ ହେଲେ ସେ ନିଜର ଗୋଷ୍ଠୀ ସ୍ୱାର୍ଥରେ ଜାତୀୟ ସ୍ୱାର୍ଥର ବିରୋଧିତା କରିପାରେ-ଧର୍ମୀୟ ଉନ୍ମତ୍ତତା, ଜାତି ଧର୍ମର ସଙ୍କୀର୍ଣ୍ଣତା, ଅତୀନ୍ଦ୍ରିୟତା ପ୍ରତି ବିଶ୍ୱାସ, ଇଶ୍ୱର ସତ୍ତା ତଥା ଅସ୍ତିତ୍ୱର ବିଶ୍ୱାସ, ଜ୍ୟୋତିଷ ଶାସ୍ତ୍ରରେ ବିଶ୍ୱାସ, ମନ୍ତ୍ର-ତନ୍ତ୍ରର ବିଶ୍ୱାସ, ଭୂତ-ପ୍ରେତର ଅଦ୍‌ଭୁତ କାର୍ଯ୍ୟ ପ୍ରତି ବିଶ୍ୱାସ, କବଚ -ଡ଼େଉଁରିଆରେ ବିଶ୍ୱାସ ଇତ୍ୟାଦି ପାରିପାର୍ଶ୍ୱିକ ବିଶ୍ୱାସର ପରିମଣ୍ଡଳ ମଧ୍ୟରୁ ।

ଆମ ସମାଜ ଆମ ସଂସ୍କୃତି ବାଲ୍ୟରୁ ମୃତ୍ୟୁ ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ପ୍ରଭାବିତ କରିଥାଏ । ଫଳରେ ଆମ୍ଭେମାନେ ସାଧାରଣଭାବରେ ସେଇ ସମାଜ ଓ ସଂସ୍କୃତିର ଅଂଶୀଦାର ହୋଇ ଯାଉ । ଆମ୍ଭମାନଙ୍କର ଖାଇବା ପିନ୍ଧିବା ଅଭ୍ୟାସ, ଶିକ୍ଷା-ଚେତନାର ସ୍ଫୁରଣ, ରାଜନୈତିକ ମତବାଦ ଏସବୁ ଶୂନ୍ୟରୁ ଆସେ ନାହିଁ । ସମାଜ- ସାଂସ୍କୃତିକ ପ୍ରଭାବ ଫଳରେ ଏଇ ସବୁ ଗଢ଼ି ଉଠିଥାଏ ।

ଏ ଯୁଗରେ ଅନେକେ ପ୍ରଥାଗତ ଉଚ୍ଚଶିକ୍ଷାରେ ଶିକ୍ଷିତ । ଏମାନଙ୍କ ମଧ୍ୟରୁ ଅନେକ ବିଜ୍ଞାନ ସମ୍ବନ୍ଧରେ ଗବେଷଣା କରୁଛନ୍ତି, ଡ଼କ୍ଟରେଟ ନାମକ ଡ଼ିଗ୍ରୀ ହାସଲ କରି ବିଜ୍ଞାନୀ ବୋଲାଉଛନ୍ତି, ଚିକିତ୍ସା ପେଶାରେ ସଫଳତା ଲାଭକରି ଚିକିତ୍ସା - ବିଜ୍ଞାନୀ ନାମରେ ପ୍ରଚାରିତ ହେଉଛନ୍ତି । ବିଭିନ୍ନ ଶାଖାରେ ସଫଳ ଇଂଜିନିୟରମାନେ, ପ୍ରଯୁକ୍ତି ବିଦ୍‌ମାନେ ବି ବିଜ୍ଞାନୀ ବୋଲି ପରିଚିତ ହେଉଛନ୍ତି । ଏମାନେ ବିଜ୍ଞାନର କୌଣସି ବିଭାଗକୁ ପେଶା ହିସାବରେ ଗ୍ରହଣ କରିଥିଲେ ମଧ୍ୟ ମନ-ପ୍ରାଣରେ ବିଜ୍ଞାନୀ ହୋଇ ପାରିନାହାନ୍ତି । କିମ୍ବା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ମଧ୍ୟ ଗ୍ରହଣ କରିପାରି ନାହାନ୍ତି । ପରୀକ୍ଷା, ପର୍ଯ୍ୟବେକ୍ଷଣ ପରେ କୌଣସି ମତକୁ ଗ୍ରହଣ ବା ବର୍ଜନ କରାଯିବା ବିଜ୍ଞାନୀର ଗୁଣ ମାତ୍ର ଏହା ଏମାନଙ୍କ ପାଖରେ ଦୁଲଭ । ଏଇମାନେ ହିଁ ଆମ ସମାଜର ଆପଣଙ୍କର ଆଉ ଆମ ଘରର ପିଲାମାନେ । ଶିଶୁ ଅବସ୍ଥାରେ ପାଠପଢ଼ିବା ଆରମ୍ଭରେ ସରସ୍ୱତୀଙ୍କୁ ଆରାଧନା କରି ହାତରେ ଖଡ଼ିଛୁଆଁ ହୋଇଛି, ପୁଣି ଶିଶୁଟି ଦେଖିଛି ତା ବାପା, ମା' ଆତ୍ମୀୟ ସ୍ୱଜନ ଜଣାଶୁଣା ଲୋକ ଦେବ-ଦେବୀ ଭଳି ପ୍ରଭୂତ ଦୈବୀ ସମ୍ପ୍ରଦାୟ ପାଖରେ ପରମଭକ୍ତି ସହକାରେ ଭୂମିରେ ଲୋଟି ସାଷ୍ଟାଙ୍ଗ ପ୍ରଣିପାତ କରୁଛନ୍ତି । ପଢ଼ା ବହି ମଧ୍ୟରେ ନାନା ପୁରାଣର ଗଳ୍ପ ମଧ୍ୟରେ କାଳ୍ପନିକ ଅଲୌକିକ କାହାଣୀ ବାରମ୍ବାର ଶିଶୁଟିର ମାନସପଟରେ ଗ୍ରଥିତ ହେଉଛି । ପୁଣି ଦେଖିଛି - କୋଷ୍ଠି-ଜାତକ, ହାତରେଖା ପ୍ରତି ତାର ପରିଚିତ ଗୋଷ୍ଠୀ ଗର୍ଭରେ ଅଗାଧ ବିଶ୍ୱାସ । ଅନବରତ ଆଖପାଖ ଲୋକମାନଙ୍କୁ ଦେଖୁଛି ସେମାନେ ସମସ୍ତେ ଭାଗ୍ୟର ଦୁହାଇ ଦେଇ ଚାଲିଛନ୍ତି । **ଅଘଟଣ ଘଟାଏ ବିଧି , ବିଧି ହେଲେ ବାମ , କପାଳ ଲିଖନ କେ କରିବ ଆନ** ଏହି ଜାତୀୟ ପ୍ରବାଦ ଗୁଡ଼ିକ ମାଧ୍ୟମରେ ଯେ କୌଣସି ବିଶ୍ୱାସ କୁସଂସ୍କାର ସଂରକ୍ଷଣ କରାଯାଇଛି ।

ତେଣୁ ଆମ୍ଭମାନଙ୍କୁ ମନେ ରଖିବାକୁ ହେବ ଯେ - ବିଜ୍ଞାନ ପାଖରେ ବ୍ୟକ୍ତି-ବିଶ୍ୱାସ ବା ସଂଖ୍ୟାଧିକ ଲୋକ ବିଶ୍ୱାସ ମୂଲ୍ୟହୀନ, ବହୁଲୋକ ବିଶ୍ୱାସକୁ ମର୍ଯ୍ୟାଦା ଦେଇଥିଲେ ଆଜି ବି ଆମ୍ଭେମାନେ ସେହି ବିଶ୍ୱାସର ବଶ ହୋଇ କହୁଥାନ୍ତୁ ଯେ - ସୂର୍ଯ୍ୟ ପୃଥିବୀର ଚାରିପାଖରେ ବୁଲୁଛି ।

**ଅଛୁଆ, ଅସ୍ପୃଶ୍ୟ -** ପୃଥିବୀର ଏକମାତ୍ର ପ୍ରଧାନ ଧର୍ମ 'ହିନ୍ଦୁ' । ଏହି ଧର୍ମ ବର୍ଣ୍ଣ-ବିଭାଜନ ବା ଭିନ୍ନ ଭିନ୍ନ ଜାତିଆଣ ପ୍ରଥା ପ୍ରଚଳନ କରାଇଥିଲା । ଏହି ବିଭାଜନ କେତେଦୂର ବର୍ବରୋଚିତ ଥିଲା, ତା'ର ପରିଚୟ ଜାଣିବାକୁ ହେଲେ ବୈଦିକ ସାହିତ୍ୟର ସାହାଯ୍ୟ ନେବାକୁ ପଡ଼ିବ ।

ଜଣେ ଶୂଦ୍ରର ତପସ୍ୟା ବଳରେ ମନୁଷ୍ୟର ଆଦର୍ଶ ଯେ ରାମରାଜ୍ୟରେ ମଧ୍ୟ ଅମଙ୍ଗଳର କାଳିମା ଘଟାଇ ଥିଲା, ଏହା ରାମାୟଣରୁ ଉପଲବ୍ଧି କରିଥାଉ । କଥାଟି ହେଉଛି ଜଣେ ବ୍ରାହ୍ମଣ ପୁତ୍ରର ଅକାଳ ମୃତ୍ୟୁ ଘଟିଲା । ମୃତ ସନ୍ତାନର ପିତା ଶ୍ରୀରାମଙ୍କ ବିରୁଦ୍ଧରେ କୁଶାସନର ଅଭିଯୋଗ ଆଣିଲେ । ଜଣାଗଲା ଯେ ତାଙ୍କର ରାଜତ୍ୱରେ ଘୋରତର ପାପ ଚାଲିଛି । ସେହି ପାପ-କର୍ମ ବନ୍ଦ ନ କରି ପାରିବାରୁ ଏହା ଅକାଳ ମୃତ୍ୟୁର କାରଣ ହୋଇଛି । ପରମ-ଦୟାମୟ, ନ୍ୟାୟବିତ୍ ବିଚାରକ ଶ୍ରୀରାମ ଯଦି ତାର ପୁଅର ଅକାଳ-ମୃତ୍ୟୁର କାରଣ, ସେଇ ପାପ-କର୍ମକୁ ବନ୍ଦ କରି ରାଜ୍ୟରେ ସୁଶାସନ ନ କରନ୍ତି, ତାହାହେଲେ ସେ (ବ୍ରାହ୍ମଣ ପିତା) ଅନଶନ କରି ମୃତ୍ୟୁବରଣ କରିବେ ।

କରୁଣାନିଧି ପତିତପାବନ ଶ୍ରୀଶ୍ରୀ ରାମଚନ୍ଦ୍ର ବ୍ରହ୍ମହତ୍ୟାର ପାପରୁ ନିଜକୁ ଓ ରାଜ୍ୟକୁ ବଞ୍ଚାଇବା ପାଇଁ, ବ୍ରାହ୍ମଣ-ସନ୍ତାନର ଅକାଳମୃତ୍ୟୁର କାରଣ କେଉଁ ପାପୀଷ୍ଠ ଦ୍ୱାରା ସଂଗଠିତ ହୋଇଛି ତାକୁ ନିଜେ ଖୋଜିବାକୁ ବାହାରି ପଡ଼ିଲେ । ଦାକ୍ଷିଣାତ୍ୟର ବିନ୍ଧ୍ୟ ପର୍ବତମାଳାର ଗୋଟିଏ ପାହାଡ଼ର ଦକ୍ଷିଣ ଦିଗରେ ଏକ ସୁନ୍ଦର ସରୋବର ତାଙ୍କର ଦୃଷ୍ଟି ଅବରୋଧ କଲା । ସେଇ ସରୋବର ତୀରରେ ଜଣେ ତପସ୍ୱୀକୁ ତପସ୍ୟାରେ ବସିଥିବାର ଦେଖିଲେ । ରାଜା ଶ୍ରୀରାମଚନ୍ଦ୍ର ତପସ୍ୱୀଙ୍କ ନିକଟକୁ ଆସି କହିଲେ, ହେ, ସୁବ୍ରତ - ଆପଣ ଧନ୍ୟ ! ହେ ତପୋବୃଦ୍ଧ ! ଆମ୍ଭେ ଦଶରଥ ନନ୍ଦନ ରାମ । କୌତୁହଳ ପାଇଁ ଆପଣଙ୍କୁ ପଚାରୁଛି, ହେ ଦୃଢ ବିକ୍ରମ ! ଆପଣ କେଉଁ ଜାତିରେ ଜନ୍ମଗ୍ରହଣ କରିଛନ୍ତି ?

ଶ୍ରୀରାମଚନ୍ଦ୍ରଙ୍କର ପ୍ରଶ୍ନର ଉତ୍ତରରେ ତପସ୍ୱୀ ଜଣାଇଲେ, ହେ ମହାଯଶସ୍ୱିନ, ଆମ୍ଭେ ଶୂଦ୍ର ଯୋନିରେ ଜନ୍ମ ନେଇଛୁ । ଆମ୍ଭର ନାମ ଶମ୍ବୁକ । ଶମ୍ବୁକଙ୍କ ଏତିକି କଥା ଶୁଣୁ ନଶୁଣୁ କରୁଣାନିଧି, ନ୍ୟାୟପରାୟଣ, ପତିତପାବନ ଶ୍ରୀ ଶ୍ରୀ ରାମଚନ୍ଦ୍ର ତାଙ୍କର ଅସ୍ତ୍ରକୋଷରୁ ତରବାରୀ କାଢ଼ି ଶମ୍ବୁକର ମସ୍ତକ ଛେଦନ କଲେ । ଶୂଦ୍ର ଶମ୍ବୁକ ନିହତ ହେବାରୁ ଇନ୍ଦ୍ର, ଅଗ୍ନି, ବାୟୁ, ବ୍ରହ୍ମା ପ୍ରଭୃତି ଦେବତାବୃନ୍ଦ 'ସାଧୁ', 'ସାଧୁ' କହି ରାମଚନ୍ଦ୍ରଙ୍କର ଏହି ମହତ୍ କାର୍ଯ୍ୟର ପ୍ରଶଂସା କରି ପୁଷ୍ପବୃଷ୍ଟି କଲେ ।

ଏହି ଅଂଶଟି ରାମାୟଣ 'ଉତ୍ତର କାଣ୍ଡ'ରୁ ଉପସ୍ଥାପିତ କରାଗଲା । ଏଇ ବୈଦିକ ସାହିତ୍ୟରୁ ଆମ୍ଭେମାନେ ବୈଦିକ ସମାଜରୁ ନ୍ୟାୟନୀତି ସମ୍ପର୍କରେ କି ପରିଚୟ ପାଇଲୁ ? ପତିତପାବନଙ୍କର ପତିତର ପାପରୁ ମୁକ୍ତ କରିବାର କି ପଦ୍ଧତିର ପରିଚୟ ଆମ୍ଭେମାନେ ପାଇଲୁ ? କରୁଣାନିଧି ରାମଚନ୍ଦ୍ର କଣ ଉଚ୍ଚବର୍ଣ୍ଣଙ୍କ ପ୍ରତି କେବଳ କରୁଣାସାଗର ? ନିମ୍ନବର୍ଣ୍ଣଙ୍କର ସାଂସ୍କୃତିକ ଚେତନା ଉନ୍ନତିର ସମସ୍ତ ପ୍ରକାର ପ୍ରଚେଷ୍ଟା ଉଚ୍ଛେଦ ମାଧ୍ୟମରେ କଣ ରହିଛି ରାମ-ରାଜତ୍ୱର ନୀତି-ବୋଧ ? ବର୍ଣ୍ଣ ପ୍ରାଧାନ୍ୟକୁ

ନିରଙ୍କୁଶ ରଖିବାର ପ୍ରଚେଷ୍ଟା ମାଧ୍ୟମରେ କଣ ରହିଛି ରାମ-ରାଜତ୍ୱର ମୂଲ୍ୟବୋଧ ? ବୈଦିକ ଧର୍ମର ସତ୍ୟ ଓ ଅହିଂସା କଣ କେବଳ ବ୍ରାହ୍ମଣ୍ୟବାଦୀମାନଙ୍କ ପାଇଁ ସଂରକ୍ଷିତ ? ବୈଦିକ ସାହିତ୍ୟରେ, ଆମ୍ଭେ ପାଉ ଉଚ୍ଚବର୍ଣ୍ଣର ସ୍ୱାର୍ଥପାଇଁ ବାରମ୍ବାର ସତ୍ୟ ଓ ଅହିଂସାକୁ ହତ୍ୟା କରାଯାଇଛି ଏବଂ ହତ୍ୟାକାରୀମାନଙ୍କୁ 'ସାଧୁ' କହି ବାରମ୍ବାର ଅଭିନନ୍ଦିତ କରାଯାଇଛି ।

'ଅସ୍ପୃଶ୍ୟ' ନଥିଲେ ଅସ୍ପୃଶ୍ୟମାନଙ୍କର ଅବସ୍ଥା ଆହୁରି ଭୟଙ୍କର ଥିଲା । ବ୍ରହ୍ମ ବୈବର୍ତ୍ତ ପୁରାଣ ଓ ଗୃହଧର୍ମ ପୁରାଣ ନାମକ ଦୁଇଟି ପବିତ୍ର ହିନ୍ଦୁ ଧର୍ମ ଗ୍ରନ୍ଥରୁ ଜଣାଯାଏ - ଶୁଦ୍ର ମାନଙ୍କ ମଧ୍ୟରେ କେଉଁମାନେ ସ୍ପୃଶ୍ୟ ଓ କେଉଁମାନେ 'ଅସ୍ପୃଶ୍ୟ' । ଶୁଦ୍ରମାନଙ୍କୁ ପୁଣି 'ସ୍ପୃଶ୍ୟ' ଉପବର୍ଣ୍ଣରେ ଶ୍ରେଣୀ ବିଭାଗ କରାଯାଇଛି, କିଛି ଉପବର୍ଣ୍ଣ ମାନଙ୍କୁ ଅଚ୍ଛବ, ଅସ୍ପଶ୍ୟ ବୋଲି ଚିହ୍ନିତ କରାଗଲା । ସନାତନ ହିନ୍ଦୁ ଧର୍ମ ବିଧାନ ଥିଲା ଯେ ଅଚ୍ଛବ ବା ଅସ୍ପୃଶ୍ୟମାନଙ୍କୁ ଛୁଇଁଲେ ବା ସ୍ପର୍ଶ କଲେ ଉଚ୍ଚବର୍ଣ୍ଣର ମନୁଷ୍ୟ ବର୍ଣ୍ଣଚ୍ୟୁତ ହେବେ, ଅର୍ଥାତ୍ ଜାତି ହରାଇବେ । ଅସ୍ପୃଶ୍ୟମାନଙ୍କର ଛୁଇଁବା ପାଣି ପିଇବା ଚଳିବ ନାହିଁ । ଏପରିକି ସେମାନଙ୍କର ଦର୍ଶନ ମଧ୍ୟ ଅଯୋଗ୍ୟ ବୋଲି ମନେକରା ଯାଉଥିଲା । ଏହି ଅସ୍ପୃଶ୍ୟମାନଙ୍କୁ ଦେଖିଲେ ଦିନଟି ପଣ୍ଡ ହୋଇଯିବାର ଲୋକ ବିଶ୍ୱାସ ସୃଷ୍ଟି ହେଲା । ଅତଏବ ଏମାନେ ସହରରେ, ଗ୍ରାମରେ ବା ପଲ୍ଲୀରେ ବାସକରିବାର ଅଧିକାର ହରାଇଲେ । ନାଗରିକ - ଜୀବନର ବାହାରେ, ପଲ୍ଲୀ-ଜୀବନର ବାହାରେ ଏମାନଙ୍କର ସ୍ଥାନ ନିରୂପିତ ହେଲା । ମୁଣ୍ଡ ଗୁଞ୍ଜିବା ପାଇଁ ତିଆରି କଲେ କୁଡ଼ିଆ, ଝୁମ୍ପୁଡ଼ି । ଏମାନେ ନାଗରିକ ନୁହଁନ୍ତି । କୌଣସି କୂଅ, ପୋଖରୀରୁ ପାଣି ନେବାର ଅଧିକାର ନଥିଲା ଏଇ ଅସ୍ପୃଶ୍ୟ ମାନଙ୍କର । ଏପରିକି କୂଅ, ପୋଖରୀକୁ ସ୍ପର୍ଶ କରିବା ଥିଲା ଅପରାଧ । କୌଣସି ନାଗରିକ ଦୟାକରି ଅସ୍ପୃଶ୍ୟର ମାଟିପାତ୍ରରେ ଜଳଦାନ କଲେ ସେଇଥିରୁହିଁ ସେମାନେ ପାଣି ପାଉଥିଲେ । ଯେଉଁ ଉଚ୍ଚବର୍ଣ୍ଣର ମନୁଷ୍ୟଟି ଜଳ 'ଦାନ' କରୁଥିଲେ, ତାକୁ ଅସ୍ପୃଶ୍ୟର ସ୍ପର୍ଶ ତ ଦୂରର କଥା ଅସ୍ପୃଶ୍ୟର ଛାଇ ସୁଦ୍ଧା ଯେପରି ତାକୁ ସ୍ପର୍ଶ ନକରେ ସେଥିପାଇଁ ଦୂରରେ ରହି ଦାନ କରିବାକୁ ପଡୁଥିଲା । ପ୍ରୟୋଜନୀୟ ଜିନିଷ କିଣିବା ପାଇଁ ଦୋକାନ ସାମନାରେ ଦୀର୍ଘ ସମୟ ଏମାନଙ୍କୁ ପ୍ରତୀକ୍ଷା କରିବାକୁ ପଡୁଥିଲା । ଦୋକାନୀ କରୁଣା କଲେ ଅଚ୍ଛବ ଭୂଇଁରେ ଅର୍ଥ ରଖିଦେଉଥିଲା । ଦୋକାନୀ ବି ଭୂଇଁରେ ଜିନିଷ ରଖି ଦେଉଥିଲା । ଅନେକ ସମୟରେ ପ୍ରୟୋଜନୀୟ ପଦାର୍ଥ କିଣିବା ଅର୍ଥ ସାଙ୍ଗକୁ ବେଠି ବେଗାରୀ ଭାବରେ କିଛି ସମୟ ଖଟି ଦେବାକୁ ପଡୁଥିଲା । ଏଇ ହେଲା ସନାତନ ବା ଶ୍ୱାଶ୍ୱତ ହିନ୍ଦୁ ଧର୍ମର ଦୟା, ତ୍ୟାଗ ଓ ଅହିଂସା । ମଣିଷ ମଣିଷ ମଧ୍ୟରେ ଏତେ ଘୃଣା, ଏତେ ହିଂସା ଯଦି 'ଅହିଂସା' ବୋଲି ଚିହ୍ନିତ ହୁଏ, ତେବେ ସେ ଅହିଂସା କୌଣସି ସତ୍ ମନୁଷ୍ୟର କାମ୍ୟ ହୋଇ ନ ପାରେ ।

ସନାତନ ହିନ୍ଦୁ ଧର୍ମ ଶୁଦ୍ରମାନଙ୍କ ମଧ୍ୟରେ ଯେଉଁମାନଙ୍କୁ ଅଚ୍ଛବ ବା ଅସ୍ପୃଶ୍ୟ ବୋଲି ଚିହ୍ନିତ କରିଥିଲା, ସେଇ ଉପବର୍ଣ୍ଣ ଗୋଷ୍ଠୀ ବା ସମ୍ପ୍ରଦାୟଗୁଡ଼ିକ ହେଲେ ବାଉରି, ହାଡ଼ି, ଡ଼ମ, ପାଣ, ଶବର, ବ୍ୟାଧ, ଚଣ୍ଡାଳ, ଚର୍ମକାର, କାଚମାର, ଆଦିବାସୀ ଇତ୍ୟାଦି ।

ଏହିସବୁ ଅସ୍ପୃଶ୍ୟ ମନୁଷ୍ୟମାନେ ଶ୍ରମଜୀବୀ ଥିଲେ । ସେମାନଙ୍କର କାମ ଥିଲା କୃଷି କାର୍ଯ୍ୟ, କାଠକଟା, ଡ଼ଙ୍ଗାତିଆରି, ଜୋତା ସିଲେଇ, ବାଉଁଶ ଚାଞ୍ଚଡ଼ା, କୁଲା ବାଉଁଶିଆ ତିଆରି, ମଦତିଆରି, ତୁଳା ଭିଣିବା, ପଶୁଶିକାର, ହାତୀ ପୋଷିବା, ଯାଦୁ ବିଦ୍ୟାର ଖେଳ ଦେଖାଇବା, ସାପଖେଳ ଦେଖାଇବା, ନାଚ-ଗୀତ ଦେଖେଇବା ଇତ୍ୟାଦି । ଏହିପରି ଅନ୍ତଜ ଅସ୍ପୃଶ୍ୟ ମାନଙ୍କ ସଙ୍ଗେ ଅନ୍ୟ ଶୁଦ୍ର ମାନଙ୍କର ବିବାହ ମଧ୍ୟ ନିଷିଦ୍ଧ କରିଥିଲା ସନାତନ ହିନ୍ଦୁଧର୍ମ । ମନୁ ଅବଶ୍ୟ ଶୁଦ୍ର ଦାସମାନଙ୍କର ଦିନଯାପନ ଯେଉଁଥିରେ ଭଲଭାବେ ହୁଏ, ତାହାର ବିଧାନ ଦେଇଥିଲେ । ସେ କହିଥିଲେ, ଶୁଦ୍ର ଭୃତ୍ୟ ମାନଙ୍କୁ ଉଚ୍ଛିଷ୍ଟ ଅନ୍ନ, ଜୀର୍ଣ୍ଣ ବାସନ, ଜୀର୍ଣ୍ଣ ଶଯ୍ୟା, ଶସ୍ୟହୀନ ଧାନ ଦାନ କରିବା ଉଚିତ ।

ବାସ୍ତବିକ, ଏସବୁକୁ କିଭଳି ମାନବିକତା କୁହାଯାଇପାରେ ? ଅବିଶ୍ରାନ୍ତ ହାଡ଼ ଭଙ୍ଗା ଖଟଣି ପରେ ସେମାନଙ୍କଠାରୁ ପରବର୍ତ୍ତୀ ଦିନର ଶ୍ରମ ନିଗାଡ଼ି ନେବା ଲାଗି ଦାସ-ମାଲିକମାନଙ୍କର ଏହା କ'ଣ ସୁନ୍ଦର ଆର୍ଯ୍ୟ ସୁଲଭ ବଦାନ୍ୟତା । ମନୁ ଆହୁରି ଏକ ଉତ୍ତମ କାର୍ଯ୍ୟ ଶୁଦ୍ରମାନଙ୍କ ଲାଗି କରିଥିଲେ । ସେମାନଙ୍କୁ ଧନ ଅର୍ଜନର ଅଧିକାର ଦେଇଥିଲେ । ଏଇ ଅଧିକାର ମଧ୍ୟରେ ଗୋଟିଏ 'କିନ୍ତୁ' ଯୋଡ଼ାଯାଇଥିଲା । ସେ କହିଥିଲେ, କିନ୍ତୁ ଶୁଦ୍ର ଦାସ ସ୍ୱଅର୍ଜିତ ସମୂହ ଧନ-ସମ୍ପଦ, ତାହାର ପ୍ରଭୁଙ୍କୁ ହିଁ ଦେବାକୁ ହେବ ।

ମନୁ ପୁଣି ନାରୀମାନଙ୍କୁ ଉପଦେଶ ଦେଇଛନ୍ତି ଯେ, ପତି ବ୍ୟଭିଚାରୀ ହେଲେ ମଧ୍ୟ ତାଙ୍କୁ ଦେବତା ଜ୍ଞାନରେ ସେବା କରିବା ଉଚିତ । କିନ୍ତୁ ପତ୍ନୀ ବ୍ୟଭିଚାରିଣୀ ହେଲେ ତାକୁ ଦେବୀ ଜ୍ଞାନରେ ସେବା କରିବା ଭଳି ନିରପେକ୍ଷତା ଆର୍ଯ୍ୟ ସଭ୍ୟତା ବା ସେମାନଙ୍କର ଆଇନ ରଚୟିତା ସମାଜକୁ ଦେଇ ପାରିନାହାନ୍ତି । ମନୁ ସଂହିତା ସମ୍ପୂର୍ଣ୍ଣ ଭାବରେ ପାଠ କଲେ ତହିଁରୁ ପ୍ରତୀୟମାନ ହୁଏ ଯେ ତାହା ପ୍ରଚଣ୍ଡ ଭାବରେ ପୁରୁଷତାନ୍ତ୍ରିକ ଅସ୍ତରଣରେ ମଣ୍ଡିତ । ବୈଦିକ ଯୁଗର ମୂଳ ସ୍ରୋତ ଥିଲା, ପୁରୁଷ ତାନ୍ତ୍ରିକତା, ସ୍ୱବର୍ଣ୍ଣର ମହିଳାମାନଙ୍କ ପ୍ରତି ମଧ୍ୟ ବୈଷମ୍ୟ ମୂଳକ ଆଚରଣ (ଗାର୍ଗୀ, ମୈତ୍ରେୟୀ ବ୍ୟତିକ୍ରମ ମାତ୍ର ।)

ଅବଶ୍ୟ ସନାତନ ହିନ୍ଦୁଧର୍ମ ମତରେ ଉଚ୍ଚବର୍ଣ୍ଣର ପୁରୁଷମାନଙ୍କର ଅଧିକାର ଶ୍ରମଜୀବୀ ନାରୀମାନଙ୍କର ଉପଭୋଗ୍ୟ ଦେହ-ସୌନ୍ଦର୍ଯ୍ୟକୁ ଭୋଗକରିବା ପାଇଁ ଉନ୍ମୁକ୍ତ ଥିଲା । ଭୋଗ ଅନ୍ତେ ପ୍ରାୟଶ୍ଚିତ୍ତ ମାଧ୍ୟମରେ ଜାତି-ବର୍ଣ୍ଣ ରକ୍ଷାପାଇଁ ପ୍ରଚଣ୍ଡ ସୁବିଧାବାଦୀ ଚାତୁରୀ ମଧ୍ୟ ନିହିତ ଥିଲା । ଏହାହିଁ ଶାଶ୍ୱତ, ସନାତନ ହିନ୍ଦୁଧର୍ମର ଜୀବନ ଚର୍ଯ୍ୟାର (Way of life) ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଅଂଶ । ଆର୍ଯ୍ୟଧର୍ମ ବା ସନାତନ ହିନ୍ଦୁଧର୍ମର ଅସ୍ପୃଶ୍ୟତା ଆଜିବି ସମଗ୍ର ଭାରତକୁ ଗ୍ରାସିଛି । ଏହି ସମସ୍ତ ଆଲୋଚନାରୁ ସ୍ୱାଧୀନ ଭାବରେ ଉପଲବ୍ଧି କରାଯାଏ ଯେ, ଶୁଦ୍ରମାନଙ୍କ ଲାଗି ଆଇନ୍ ତିଆରି ହୋଇଥିଲା, କେବଳ ମଣିଷ ମଣିଷ ମଧ୍ୟରେ ଏକ ଅସାମ୍ୟ ବିଭାଜନ କରି ବିଭେଦର ପ୍ରାଚୀର ଛିଡ଼ା କରାଇବା ପାଇଁ । ଏକ ଦିଗରେ ପୁରୁଷ ଓ ନାରୀ ମଧ୍ୟରେ ଅସାମ୍ୟ, ଅନ୍ୟ ଦିଗରେ ବର୍ଣ୍ଣର ଅସାମ୍ୟ । ହିନ୍ଦୁଧର୍ମର ଅସ୍ପୃଶ୍ୟତା ପରି କଦାର୍ଥ କୁସଂସ୍କାର ବିରୁଦ୍ଧରେ ସର୍ବପ୍ରଥମେ ଓଡ଼ିଶାର ଶ୍ରୀ ଜଗନ୍ନାଥ ଧର୍ମ ତଥା ସଂସ୍କୃତିର ଅଭ୍ୟୁଦୟ ହୋଇ ପ୍ରତିଷ୍ଠା ଲାଭ କରିଥିଲା । ଶବର (ଆଦିବାସୀ ତଥା ଅଛବ) ମାନଙ୍କର ଦେବତା ନୀଳମାଧବ ହସ୍ତ-ପଦହୀନ ଶ୍ରୀ ଜଗନ୍ନାଥ ରୂପରେ ଶବର ପୂଜକମାନଙ୍କ ଦ୍ୱାରା ପୂଜିତ ହେଲେ । ମହାପ୍ରଭୁଙ୍କ ମହାପ୍ରସାଦ (ଅନ୍ନ, ଡ଼ାଲି, ତିଅଣ, ପ୍ରଭୃତି) ବ୍ରାହ୍ମଣ ଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ଏକାଠି ବସି ଖାଇବାର ବ୍ୟବସ୍ଥା ହେଲା । ମହାପ୍ରସାଦରେ ଅଇଁଠା ବୋଲି କିଛି ରହିଲା ନାହିଁ । ପୁଣି ମହାପ୍ରଭୁ ଜାତି-ଧର୍ମ - ବର୍ଣ୍ଣ, ଧନୀ-ନିର୍ଦ୍ଧନ, ଉଚ୍ଚ-ନୀଚ ନିର୍ବିଶେଷରେ ରଥାରୂଢ଼ ହୋଇ ସର୍ବସାଧାରଣଙ୍କ ଗହଣକୁ ପତିତପାବନ ବାନା ଉଡ଼େଇ ଦେଉଳରୁ ବିଚ ଦାଣ୍ଡକୁ ବାହାରି ଆସିଲେ । ଏହାଥିଲା ଜଗନ୍ନାଥ ସଂସ୍କୃତିର ମାନବ ପ୍ରେମ । ପରବର୍ତ୍ତୀ ସମୟରେ ଶ୍ରୀ ଚୈତନ୍ୟ ଏହି ମାନବ-ପ୍ରେମର ଆବେଗ ମଥିତ ଜନ ଜାଗରଣର ଚେଷ୍ଟା କରିଥିଲେ ବୈଷ୍ଣବ ଧର୍ମ ମାଧ୍ୟମରେ । ଏଥିପାଇଁ ସେ ରକ୍ଷଣଶୀଳ ଅନ୍ଧବିଶ୍ୱାସୀ ହିନ୍ଦୁ ସମାଜ ଦ୍ୱାରା ବହୁଭାବରେ ଲାଞ୍ଛିତ ହେଲେ । ନଦୀଆ-ନବଦ୍ୱୀପ ଛାଡ଼ି ସେ ବିଭିନ୍ନ ତୀର୍ଥ ଏବଂ ଭାରତର ବିଭିନ୍ନ ପ୍ରାନ୍ତକୁ ଯାଇ ମାନବ ଧର୍ମ ପ୍ରଚାର କରି ସର୍ବ ଶେଷରେ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ଦେହରେ ଲୀନ ହୋଇ ଯାଇଥିଲେ । ମାନବବାଦୀ ବିଶ୍ୱକବି ରବୀନ୍ଦ୍ରନାଥ 'ଚଣ୍ଡାଳିକା' ଲେଖିଥିଲେ । ମହାତ୍ମାଗାନ୍ଧୀ ହରିଜନମାନଙ୍କ ପାଇଁ ଲଢ଼ିଲେ । ସ୍ୱାମୀ ବିବେକାନନ୍ଦ ଭାରତବାସୀଙ୍କୁ ଉପଦେଶ ଦେଲେ -ଚଣ୍ଡାଳ, ମୋଚି, ମେହେନ୍ତରମାନଙ୍କୁ ନିଜଭାଇ ବୋଲି ଜ୍ଞାନ କର ।

ଗାନ୍ଧିଜୀ ଓ ବିବେକାନନ୍ଦଙ୍କର ଚିନ୍ତନ ଓ କଥନ ମଧ୍ୟରେ ସ୍ପଷ୍ଟ ସ୍ୱବିରୋଧିତା ଥିଲା । ଗାନ୍ଧିଜୀ ଏକାସାଙ୍ଗରେ 'ରାମ-ରାଜତ୍ୱ' ଓ 'ହରିଜନ-ମୁକ୍ତି' ଚାହିଁଥିଲେ ।

ରାମ-ରାଜତ୍ୱ ଆସିଲେ ହରିଜନ ମୁକ୍ତି ବା ହରିଜନମାନଙ୍କର ସମାଜରେ ପ୍ରତିଷ୍ଠା କରିବା ଯେ ସମ୍ଭବପର ନୁହେଁ, ଏହି ସତ୍ୟଟିକକ କ'ଣ ବୁଝି ପାରିଲେ ନାହିଁ ଶିକ୍ଷିତ ରାଜନୀତିଜ୍ଞ ଗାନ୍ଧିଜୀ ? ସେ କ'ଣ ବୁଝିନଥିଲେ ଯେ, ରାମ-ରାଜତ୍ୱ ରହିଲେ ଅଚ୍ଛୁବ ମାନେ 'ଶମ୍ଭୁକ'ଙ୍କ ଭଳି ଉଚ୍ଚବର୍ଣ୍ଣ ହାତରେ ପ୍ରାଣ ଦେବେ, ମାନ ଦେବେ, ଲାଞ୍ଛିତ ହେବେ ? ସ୍ୱାମୀ ବିବେକାନନ୍ଦ ଏକ ସଙ୍ଗରେ ଚଣ୍ଡାଳ, ମେହେନ୍ତର, ମୋଚିମାନଙ୍କୁ ଭାଇ ବୋଲି କହିଛନ୍ତି, ପୁଣି ସନାତନ ହିନ୍ଦୁ ଧର୍ମର ଗୁଣଗାନ କରିଛନ୍ତି । ବର୍ଣ୍ଣପ୍ରଥା ବା ଜାତିପ୍ରଥା ସପକ୍ଷରେ ଓକିଲାତି କରିଛନ୍ତି । ସ୍ୱାମୀଜୀଙ୍କର ଏହି ସ୍ୱବିରୋଧିତା କଣ ରାଜନୀତିର ସ୍ୱବିରୋଧିତା ? ସେ କ'ଣ ସନ୍ୟାସୀ-ରାଜନୀତିକ ଥିଲେ ?

ସହର ଜୀବନ ସହିତ ଅଭ୍ୟସ୍ତ ଅନେକେ ଭାବିପାରନ୍ତି - ବର୍ତ୍ତମାନ ଅସ୍ପୃଶ୍ୟତା ପରି ଭେଦଭାବ ଭାରତରେ ପ୍ରାୟ ନାହିଁ କହିଲେ ଚଳେ । ଗଣ୍ଡି ବଦ୍ଧତା ପାଇଁ ଏପରି ଧାରଣା ହୋଇପାରେ, କିନ୍ତୁ ଏହା ଆଦୌ ପ୍ରକୃତ ଚିତ୍ର ନୁହେଁ । ଆଜିବି ଉଚ୍ଚବର୍ଣ୍ଣର ମନୁଷ୍ୟ ଅଚ୍ଛୁବମାନଙ୍କ ଉପରେ କାରଣ ଅକାରଣରେ ଫଇଜତ ଦେଖାଇ ହାଙ୍ଗାମା କରିଥାଆନ୍ତି । ଉଚ୍ଚବର୍ଣ୍ଣ ଲୋକର କୂଅରୁ ପାଣି କାଢ଼ିବା ପାଇଁ ଅଥବା ବାଜା ବଜେଇ ବାହାହବାକୁ ଯିବାର ଧୃଷ୍ଟତା ପାଇଁ ଉଚ୍ଚବର୍ଣ୍ଣର ଜାତ୍ୟାଭିମାନ ଜନିତ ଅଗ୍ନିଶିଖା ଏବେବି ଜଳିଉଠେ । ଅସ୍ପୃଶ୍ୟମାନଙ୍କୁ ଉଚିତ ଶିକ୍ଷା ଦେବାକୁ ସେମାନେ ଦଳବଦ୍ଧ ଆକ୍ରମଣ ଚଳାନ୍ତି । ଘରେ ନିଆଁ ଲଗାଇଦେବା, ହତ୍ୟାକରିବା, ଲୁଣ୍ଠନ କରିବା, ଧର୍ଷଣ କରିବା ପ୍ରଭୃତି ଅତ୍ୟାଚାର ମାଧ୍ୟମରେ ବାରମ୍ବାର ସୂଚାଇ ଦିଅନ୍ତି ଯେ - ସେମାନଙ୍କ ଶରୀରରେ ଏବେବି ଆର୍ଯ୍ୟ-ରକ୍ତ ପ୍ରବାହିତ । କେନ୍ଦ୍ରୀୟ ସ୍ୱରାଷ୍ଟ୍ର, ମନ୍ତ୍ରଣାଳୟର ଏକ ସମୀକ୍ଷା ଅନୁସାରେ ୧୯୮୬ ମସିହାରେ କେବଳ ଉତ୍ତର ପ୍ରଦେଶରେ ହିଁ ସବର୍ଣ୍ଣ ହିନ୍ଦୁମାନଙ୍କ ଦ୍ୱାରା ହରିଜନ (ଅସ୍ପୃଶ୍ୟ) ତଫସିଲ-ଜାତି, ଉପଜାତି ମାନଙ୍କ ଉପରେ ଅତ୍ୟାଚାରର ଘଟଣା ୪୨୦୦ଟି ଘଟିଥିଲା । ଏହି ଧରଣର ଅତ୍ୟାଚାରର ତାଲିକାରେ ୧୯୮୬ ମସିହାରେ ଦଶଟି ପ୍ରଦେଶ ଅନ୍ତର୍ଭୁକ୍ତ ଥିଲା ।

ବାରବର୍ଷପରେ ୧୯୯୮ ମସିହାରେ ତଫସିଲଜାତି ଉପଜାତି ମାନଙ୍କ ଉପରେ ସବର୍ଣ୍ଣ ହିନ୍ଦୁମାନଙ୍କର ଅତ୍ୟାଚାର ଓ ଦଳବଦ୍ଧ ଆକ୍ରମଣର ପରିମାଣ ବହୁଗୁଣ ବଢ଼ିଯାଇଛି । ଅତ୍ୟାଚାରର ଭୟଙ୍କରତା ବଢ଼ିଛି । ହିନ୍ଦୁତ୍ୱବାଦ ଯେତେ ବଢୁଛି, ସେତେ ପରିମାଣରେ ଅସ୍ପୃଶ୍ୟ-ପୀଡ଼ନ ବଢୁଛି ।

'ଶମ୍ଭୁକ'ର ଗଳା ଛେଦନର ନଜିର ଭଳି ରାମ-ରାଜ୍ୟ ହେଲେ ଅସ୍ପୃଶ୍ୟ ମାନଙ୍କର ଅଭିବୃଦ୍ଧି ବନ୍ଦ ହେବା ସ୍ୱାଭାବିକ ।

କିଛି ମନୁଷ୍ୟଙ୍କୁ ଅଛୁବ, ଅସ୍ପୃଶ୍ୟ କହି ପଶୁଠାରୁ ଅଧମ ଭାବରେ ଜୀବନ ଯାପନ କରିବା ମଧ୍ୟରେ ଗଣ୍ଡିବଦ୍ଧ ରଖିବା ପାଇଁ ଲୋକ ବିଶ୍ୱାସ ଏକ ଅତ୍ୟନ୍ତ କୁସଂସ୍କାର । ଯେଉଁମାନେ ଏଇ ଲୋକ ବିଶ୍ୱାସରେ ବିଶ୍ୱାସ କରନ୍ତି ବା ଯଦି ଅଜାଣତରେ ସମର୍ଥନ କରିବାକୁ ଚେଷ୍ଟା ମାତ୍ର କରନ୍ତି, ତାହାହେଲେ ସେମାନଙ୍କର ଭୁଲ ସଂଶୋଧନ କରିବାର ସମୟ ଆସିଛି । ନଚୁବା ଭବିଷ୍ୟତ ସେମାନଙ୍କ ଉପରେ ପ୍ରତିଶୋଧ ନେବ ।

## (୪) ଅତି ବଡ଼ ହୁଅନି, ଝଡ଼ ନବ ଉଡ଼େଇ
## ଅତି ନ୍ୟୁନ ହୁଅନି, ଛେଳି ଦେବ ଚୋବେଇ ।

ପ୍ରକଟିତ ମଧବିତ୍ତ ସୁଲଭ ମାନସିକତାରୁ ପ୍ରସ୍ତୁତ ଏହି ପ୍ରବାଦଟି ବର୍ତ୍ତମାନ ବି ଜନପ୍ରିୟ ଲୋକ ବିଶ୍ୱାସ ।

ରାଜତନ୍ତ୍ର ଯେତେବେଳେ ପ୍ରତିଷ୍ଠିତ ଥିଲା, ସେତେବେଳେ ପ୍ରବାଦଟି ତିଆରି ହୋଇଥିଲା । ଅତି ବଡ଼ ହେବାର ଚେଷ୍ଟାରୁ ବିରତ ରହିବା ପାଇଁ ଉପଦେଶ ଦିଆ ଯାଇଥିଲା । ଯେଉଁମାନେ ଅତିବଡ଼ ଅଛନ୍ତି, ସେମାନଙ୍କୁ  ନିଶ୍ଚିତ ଭାବରେ ଅତିବଡ଼ ଠାରୁ କେଇଧାପ ଓହ୍ଲାଇବାକୁ  ଉପଦେଶ ଦିଆ ଯାଇନି । ଉପଦେଶ ଦିଆଯାଇଥିଲା - ଅତି ବଡ଼ ହେବାର ଚେଷ୍ଟା ନ କରି, ମଝି ମଝିଆ ଅବସ୍ଥାରେ ରହି, ଲାଳସାହୀନ/ ଆକାଂକ୍ଷା ରହିତ/ଇଚ୍ଛା ରହିତ ଅବସ୍ଥାରେ ରହି, ଉଦ୍‌ବେଗହୀନ ଜୀବନ କଟାଇବାକୁ ହିଁ ଶ୍ରେୟ - ଜ୍ଞାନ କରିବା । ରାଜତନ୍ତ୍ରରେ  ରାଜ-ଅନୁଗ୍ରହ  ଛଡ଼ା ବଡ଼ ହେବା ଅସମ୍ଭବ ଥିଲା ।  ଏହି ଅନୁଗ୍ରହଭାଜନ ମାନେ ହିଁ ରାଜଦ୍ୱେଷ ପଡ଼ିଲେ ଧନ-ମାନ-ପ୍ରାଣ, ସବୁକିଛି ହରାଉଥିଲେ । ଆମ  ଖାମ ଖିଆଲି ରାଜାମାନଙ୍କର ବିନାକାରଣରେ ପ୍ରେମରେ ଉଚ୍ଛୁଳି ଉଠିବା, ଆଉ ରାଗରେ ଫାଟି  ପଡ଼ିବା ଅତି ସାଧାରଣ ଥିଲା । ଫଳରେ ସେ ସମୟରେ  'ଅତି ବଡ଼' ଶରୀର ପ୍ରତି ସାବଧାନବାଣୀ ମୂଲ୍ୟହୀନ ନଥିଲା ।

ସେ ଯୁଗର ସମାଜରେ ଅତିବିନୟୀ, ଅତିଗରିବ ଲୋକର ପତ୍ତା ମିଳୁନଥିଲା । ତେଣୁ ଦ୍ୱିତୀୟ ଧାଡ଼ିରେ ଉପଦେଶ  ଦିଆଯାଇଛି ।  ଅତିବଡ଼ ହେବା ଭଳି, ଅତିଛୋଟ ହେବା ମଧ୍ୟ ଖରାପ । ଅତିଛୋଟ ହେଲେ ଛେଳିପରି ନିକୃଷ୍ଟ ପ୍ରାଣୀ ମଧ୍ୟ ଚୋବାଇ ଖାଏ । ପୁଣି ଅତି ବିନୟୀ ବା ଅତି ଛୋଟ ହେଲେ  ଇତର ମନୁଷ୍ୟ ମାନଙ୍କର ମଧ୍ୟ ଅଶ୍ରଦ୍ଧାର ପାତ୍ର ହେବାକୁ ପଡ଼େ ।

ଯେଉଁ ରାଜତନ୍ତ୍ରରେ ଏହି ପ୍ରବାଦ ଦିନେ ମୂଲ୍ୟବାନ ଉପଦେଶ ବୋଲି ବିବେଚିତ ହେଉଥିଲା, ସେହି ରାଜତନ୍ତ୍ର ପୃଥିବୀର ପ୍ରାୟ ସମସ୍ତ ଦେଶରୁ ବିଦାୟ ନେଇଛି । ଆମଦେଶରେ ରାଜାମାନଙ୍କର ଯୁଗ ବହୁ ଆଗରୁ ଗତ ହୋଇ ଯାଇଛି । ତା' ସହିତ

ବଡ଼ ହେବାର ବିରୁଦ୍ଧରେ ସାବଧାନ ବାଣୀ ବି ମୂଲ୍ୟହୀନ ହୋଇ ପଡ଼ିଛି । ତେଣୁ ମଝି ମଝିଆ ମଧ୍ୟରେ ଅଟକି ରହି ନିଶ୍ଚିତ ଓ ଗତାନୁଗତିକ ଜୀବନ ବହୁ ମନୁଷ୍ୟ ପାଖରେ କାମ୍ୟ ନୁହେଁ । ଆଜି ଅମର୍ତ୍ତ୍ୟ ସେନ (ନୋବେଲ ପୁରସ୍କାର ବିଜେତା) ଠାରୁ ଶଚୀନ ତେଣ୍ଡୁଲକର ପର୍ଯ୍ୟନ୍ତ ବଡ଼ ହୋଇ ଉଠିବାର ଆକାଂକ୍ଷା ବହୁ ମନୁଷ୍ୟଙ୍କୁ ଉଦ୍ଦୀପ୍ତ କରେ । ବଡ଼ ଲେଖକ, ବଡ଼ ଗାୟକ, ବଡ଼ ନାଟ୍ୟକାର, ବଡ଼ଚିତ୍ର ଶିଳ୍ପୀ, ବଡ଼ ଅଭିନେତା, ବଡ଼ ଚଳଚିତ୍ର ପରିଚାଳକ, ବଡ଼ ଖେଳୁଆଡ଼, ବଡ଼ ବୈଜ୍ଞାନିକ ଏହିପରି ସମସ୍ତ କର୍ମକ୍ଷେତ୍ରରେ ବଡ଼ ହୋଇ ଏ ଯୁଗରେ ସମ୍ମାନ ପାଉଛନ୍ତି । ଝଡ଼ରେ ଉଡ଼ିଯିବା ବା ଭାଙ୍ଗିଯିବା ଭୟରେ ପଛେଇ ରହିବାର ଯୁଗ ଆଜି ଆଉ ନାହିଁ । ରାଜତନ୍ତ୍ର ଆମ ଦେଶରୁ ବିଲୁପ୍ତ ହେବା ଦିନଠାରୁ ଉଡ଼ିଯିବାର ଓ ଛେଳି ଖାଇବାର ଭୟ ସମାଜରୁ ବିଦାୟ ନେଇଛି ।

**ଫଳଭରେ ଅବନତ ଯଥା ତରୁଗଣ**
**ଜଳ ଭରେ ଅବନତ ବାରିଦ ଯେସନ ।**

**(ଫଳରେ ଗଛ ଯେପରି ଅବନତ ହୁଏ, ବିଦ୍ୱାନ ସେହିପରି ବିନୀତ ହୁଅନ୍ତି ।)**

ଏହି ଉପଦେଶ ମୂଳକ ପ୍ରବାଦଟି ବହୁଦିନରୁ ଆମ-ଜନତା ପାଖରେ ଗ୍ରହଣୀୟ ହୋଇ ଯାଇଛି । ସେହିପରି 'ଅତି ଛୋଟ ହୁଅନା ଛେଳି ଦେବ ଚୋବାଇ' ଉପଦେଶଟି ମଧ୍ୟ ଗ୍ରହଣଯୋଗ୍ୟ ହୋଇ ପାରିଛି । ଅଥଚ ଦୁଇଟି ଉପଦେଶରୁ ଗୋଟିଏ ଅପରକୁ ବିରୋଧ କରୁଛି, କାରଣ ଦ୍ୱିତୀୟ ବାକ୍ୟଟିରେ କିନ୍ତୁ ଅତିଛୋଟ ନହେବା କ୍ଷେତ୍ରରେ ଛୋଟ-ଜାତି ବା ଛୋଟ-ବର୍ଣ୍ଣର କଥା କହିବାର ସମ୍ଭାବନା ଶୂନ୍ୟ । ଏହି ପ୍ରବାଦ ତିଆରି ହେଲା ସମୟରେ ବର୍ଣ୍ଣପ୍ରଥା ବା ଜାତି ପ୍ରଥାକୁ ଅବନତ ମସ୍ତକରେ ସ୍ୱୀକାର କରିନେବାହିଁ ସେତେବେଳର ରୀତି-ରେଆଜ ଥିଲା । ଭାରତବର୍ଷରେ ସେ କାଳର 'ବର୍ଣ୍ଣବିଭକ୍ତ' ସମାଜ ଓ 'ଶ୍ରେଣୀ ବିଭକ୍ତ' ସମାଜ ସାମର୍ଥକ ଶବ୍ଦର ପ୍ରଚଳନ ଥିଲା । ଉଚ୍ଚବର୍ଣ୍ଣ ଓ ନିମ୍ନବର୍ଣ୍ଣର ବିଭାଜନ ଥିଲା ଶୋଷକ - ଶୋଷିତର ବିଭାଜନ । ଫଳରେ ଏହି ପ୍ରବାଦର ଦ୍ୱିତୀୟ ଅଂଶରେ ଛୋଟ ନ ହେବା ପାଇଁ ନିମ୍ନବର୍ଣ୍ଣର ମନୁଷ୍ୟମାନଙ୍କୁ ଉପଦେଶ ଦିଆ ଯାଇଛି - ଏପରି ଭାବିବା ଭୁଲ ବୋଲି କୁହାଯିବ । ତେଣୁ ଏଠାରେ 'ଅତିଛୋଟ' କହିଲେ 'ଅତି ବିନୟ' କୁ ଧରାଯିବ । ଅତି ବିନୟର ମୂଲ୍ୟ ଦେବା ଭଳି ମାନସିକତା ମଧ୍ୟମ ମାନର ବୁଦ୍ଧିଜୀବୀମାନଙ୍କର ଓ ମଧ୍ୟବିତ୍ତ ସୁଲଭ ମାନସିକତାର ମନୁଷ୍ୟମାନଙ୍କର ନାହିଁ ।

ଆଜି ଅର୍ଥର ପ୍ରାଚୁର୍ଯ୍ୟ ଓ ପ୍ରଚାର ସର୍ବସ୍ୱତା ମଧ୍ୟରେ ସାଧାରଣ ମନୁଷ୍ୟର ଚକ୍ଷୁ ବିସ୍ତାରିତ । ଆଜି ନିବେଦିତ ପ୍ରାଣ କିନ୍ତୁ ପ୍ରଚାରହୀନ ଗବେଷକ, ତାଙ୍କର ମୂଲ୍ୟ ବା କାର୍ଯ୍ୟ-କରଣ ପାଇଁ ଭଗ୍ନାଂଶ ପରିମାଣରେ ମୂଲ୍ୟ ପାଆନ୍ତି ନାହିଁ ।

ଏହି ଦୃଷ୍ଟିରୁ ବିଚାର କଲେ ପ୍ରବାଦଟିର ଦ୍ୱିତୀୟ ଅଂଶର ବ୍ୟବସ୍ଥା ଆଜିବି ସମାନ ଭାବରେ ତାତ୍ପର୍ଯ୍ୟ ପୂର୍ଣ୍ଣ ।

## (୬) ଅଦୃଷ୍ଟ ଫଳ କିଏ ଖଣ୍ଡାଇବ

ଅଦୃଷ୍ଟ ସବୁକିଛିର ନିୟନ୍ତା ଏବଂ ଆମ୍ଭମାନଙ୍କର ଅଦୃଷ୍ଟରେ ସବୁକିଛି ପୂର୍ବରୁ ନିର୍ଦ୍ଧାରିତ ହୋଇ ରହିଛି । ଆମ୍ଭେ ଯଦି ଏହାକୁ ସ୍ୱୀକାର କରିନେବୁ, ତାହାହେଲେ ମନୁଷ୍ୟ ସାମ୍ନାରେ କୌଣସି ସମସ୍ୟା ଆଉ ରହିବ ନାହିଁ । ମନୁଷ୍ୟର କରିବାର କିଛି ଆଉ ରହିଲା ନାହିଁ । ଅଦୃଷ୍ଟ ଯଦି ଅଛି ଆମ୍ଭ ପୁଅ ଡାକ୍ତର ହେବ, ତେବେ ତାକୁ କିଏ ଖଣ୍ଡାଇବ ? ଆମ୍ଭ ପୁଅ ପଢ଼ିଲେବି ଡାକ୍ତର ହେବ, ନ ପଢ଼ିଲେ ବି ଡାକ୍ତର ହେବ । ସ୍କୁଲରେ ଭର୍ତ୍ତିକରିବା ପାଇଁ ଆଗରୁ ଧରାଧରି ସୁପାରିଶ କରିବାର ପ୍ରୟୋଜନୀୟତା କିଛି ନାହିଁ । ଆଉ ଗୋଟିଏ ଦିଗରୁ ଚିନ୍ତା କରି ଦେଖିଲେ, ଅଦୃଷ୍ଟରେ ସ୍କୁଲରେ ଭର୍ତ୍ତିହେବା ପାଇଁ ଫର୍ମ ପାଇବାର ଥିଲେ ପାଇବ । ଯେଉଁଠାରୁ ହେଉ ଫର୍ମଟି ନାଚି ନାଚି ଆପେ ଆପେ ଆମ ପାଖକୁ ଆସିବ ।

ଗଳାରେ କିଛିଦିନ ଧରି ବଥା ହଉଛି । ହଠାତ୍ କଣ୍ଟାପରି କଣ ଗୋଟିଏ ଖଚ କରି ଗଳାରେ ଲାଗିଲା । ଏକଥା ଶୁଣି ଅଫିସର୍ ମେଡ଼ିକାଲ ସ୍ପେଶାଲିଷ୍ଟ ଦେଖାଇବାକୁ କହିଲେ । ସ୍ପେଶାଲିଷ୍ଟ ଦେଖାଇବାକୁ ଖର୍ଚ୍ଚ ପଡ଼େନାହିଁ । ଅତଏବ ଦେଖାଇ ନିଆଗଲା । ନାମକରା ଡାକ୍ତର ଦେଖି-ଶୁଣି କହିଲେ ଆପଣଙ୍କର ଭାଗ୍ୟ ଭଲ । ଠିକ୍ ସମୟରେ ଆସିଛନ୍ତି । ଆଉ ଦୁଇ ମାସ ଡ଼େରି କରିଥିଲେ ଆପଣଙ୍କୁ ଧନ୍ୱନ୍ତରୀ ବି ବଞ୍ଚାଇ ପାରି ନଥାନ୍ତେ । ଜର୍ଦାର କଞ୍ଚା ତମାଖୁ ଯୋଗୁଁ ଆପଣଙ୍କ ଗଳାର ପରିବର୍ତ୍ତନ ହୋଇଯାଇଛି । ବାୟୋପସି କଲେ ରେଜାଲ୍ଟ ମିଳିବ ପଜେଟିଭ । ମୁମ୍ବାଇର ଟାଟା ମେମୋରିୟାଲ କେନ୍‌ସାର୍ ଇନଷ୍ଟିଉଟକୁ ଯାଆନ୍ତୁ, ଡାକ୍ତର ଗୋୟେଲଙ୍କୁ ଚିଠି ଲେଖିଦେଉଛି। ଚିନ୍ତା କରିବାର କିଛି ନାହିଁ । ପ୍ରାଥମିକ ଷ୍ଟେଜ୍ । ବରଂ ଅଦୃଷ୍ଟକୁ ଧନ୍ୟବାଦ ଦିଅନ୍ତୁ ।

ସବୁ ଯେବେ ଅଦୃଷ୍ଟ କରାଉଛି ବା ତା ଦ୍ୱାରା ନିୟନ୍ତ୍ରିତ ହେଉଛି, ତେବେ ଟାଟା ମେମୋରିଆଲର ଡ଼ଃ ଗୋୟେଲ ପାଖକୁ କ'ଣ ପାଇଁ ଯିବି ? 'ଅଦୃଷ୍ଟର ଫଳ କିଏ ଖଣ୍ଡାଇବ' - ଏଇ କଥାରେ ଆନ୍ତରିକ ବିଶ୍ୱାସ ଥିଲେ ଟାଟା ମେମୋରିଆଲକୁ ଯିବାର ପ୍ରୟୋଜନ ନାହିଁ । ଭଲ ହବାର ଥିଲେ ଏମିତି ଭଲହେବ । ଅଦୃଷ୍ଟରେ ମୃତ୍ୟୁ ଘଟିବାର ଥିଲେ ଡ଼ଃ ଗୋୟାଲ କ'ଣ କରିବେ ? ମୁହଁରେ କହିବା ଏକ ରକମ, କର୍ମରେ କରିବା ଏକ ରକମ ? ଭଣ୍ଡାମି ଭଲଲାଗେ ନାହିଁ । ଅତଏବ ଟାଟା

ମେମୋରିଆଲ ଗଲି ନାହିଁ । ବାସ୍ତବିକ ଅଦୃଷ୍ଟରେ ମୃତ୍ୟୁ ଥିଲା, ଏହାସ୍ପଷ୍ଟ, ତେଣୁ ଅହେତୁକ ଦୌଡ଼ାଦୌଡ଼ି ଓ ଅର୍ଥବ୍ୟୟ କରାଗଲା ନାହିଁ ।

ଉଲ୍ଲିଖିତ ଗଳା କ୍ୟାନସାର କାହାଣୀଟି ସମ୍ପୂର୍ଣ୍ଣ କାଳ୍ପନିକ । ଭଣ୍ଡତ୍ୱ ପରିବର୍ତ୍ତେ ଆମ୍ଭେ ଅଦୃଷ୍ଟକୁ ଆନ୍ତରିକ ବିଶ୍ୱାସ କଲେ ଏପରି ଘଟଣା ଘଟିବା ସ୍ୱାଭାବିକ । କିନ୍ତୁ ସେପରି ଘଟୁଛି କାହିଁ ? ଯେଉଁମାନେ ଅଦୃଷ୍ଟର ସପକ୍ଷରେ ଲକ୍ଷ ଲକ୍ଷ ଯୁକ୍ତି ଫାନ୍ଦି ଓକିଲାତି କରନ୍ତି, ସେମାନେ ମଧ ରୋଗ ହେଲେ ଅଦୃଷ୍ଟ ଉପରେ ଭରସା ନ କରି ଡାକ୍ତର ପାଖକୁ ଦୌଡ଼ନ୍ତି । ବାଳକ ବ୍ରହ୍ମଚାରୀ ଠାରୁ ସୁଇଁବାବା, ସିଦ୍ଧଜନ୍ମା ଠାରୁ ଅବତାର ପ୍ରତ୍ୟେକେ ଦେହ ଖରାପ ହେଲେ ଭେଲୋର ହସପିଟାଲ ଠାରୁ ଆପୋଲୋ ହସପିଟାଲରେ ନିର୍ବିକାରରେ ଭର୍ତ୍ତି ହୋଇଯାଆନ୍ତି ।

ଅମର୍ତ୍ତ୍ୟସେନ କାହିଁକି ନୋବେଲ ପୁରସ୍କାର ପାଇଲେ ? ଲାଲୁଯାଦବ କାହିଁକି ହାୱାଲା ମାମଲାରେ ଫସିଗଲେ ? ପିଆଜର ଦାମ କାହିଁକି ବଢ଼ିଲା ? ଭାରତୀୟ କ୍ରିକେଟ ଟିମ୍ କାହିଁକି ଢ଼ାକାରେ ହାରିଲେ ? ଚାରୋଟି ପ୍ରଶ୍ନର ଉତ୍ତର ଖୋଜିଲେ ଚାରିଶହ ପୃଷ୍ଠା ମଧ କମ୍ ମନେହେବ । କେତେ କଥା ଓ ତତ୍ତ୍ୱ ଆସିବ ତାର ଠିକ ଠିକଣା ନାହିଁ । ତାପରେ ବି ମନେ ହେବ ଆହୁରି ବହୁତ କିଛି ରହିଗଲା । କିନ୍ତୁ ଏଇ ସମସ୍ତର କାରଣ ଖୋଜିବାର ପ୍ରୟାସକୁ ଉଡ଼େଇ ଦେଇ ପାରେ ଗୋଟିଏ ଶବ୍ଦ- 'ଅଦୃଷ୍ଟ' । ଚାରୋଟି ପ୍ରଶ୍ନର ଗୋଟିଏ ଉତ୍ତର - ଅଦୃଷ୍ଟରେ ଥିଲା ତେଣୁ ହେଲା -

ବାସ୍ତବିକ ଯଦି ଅଦୃଷ୍ଟ ସବୁକିଛି ନିୟନ୍ତ୍ରଣ କରନ୍ତା, ତେବେ ଆଇନ କାନୁନ ରକ୍ଷାକରିବା ପାଇଁ ପୁଲିସ ପ୍ରଶାସନ, ରୋଗଠାରୁ ରକ୍ଷାପାଇବା ପାଇଁ ଚିକିତ୍ସା ବ୍ୟବସ୍ଥା, ପାଠପଢ଼ା ପାଇଁ ସ୍କୁଲ କଲେଜ, ସୀମାନ୍ତରକ୍ଷା ବା ଦାଦାଗିରି କରିବା ପାଇଁ ସେନାବାହିନୀ, ତତ୍‌ସହିତ ବଜେଟ-ସହ ସମସ୍ତ ପ୍ରକାର ପ୍ରୟାସକୁ ବନ୍ଦ ରଖିବା ହେଉଛି ବୁଦ୍ଧିମାନର କାର୍ଯ୍ୟ ।

କ'ଣ ମନେ କରନ୍ତି ଆଜିର ଜନତା ? ସମସ୍ତ ପ୍ରକାର ପ୍ରୟାସ ମୁଲତବି ରଖିବା ବୁଦ୍ଧିମାନର କାର୍ଯ୍ୟ ନା ଅଦୃଷ୍ଟ ବିଶ୍ୱାସକୁ ଝାଟେଇଦେଇ ବିଦାୟ କରିବା ବୁଦ୍ଧିମାନ କାର୍ଯ୍ୟ ?

ଏହି ଲୋକ ବିଶ୍ୱାସ ଏକ ଭୟଙ୍କର କୁସଂସ୍କାର, ଯାହା ଶୋଷଣ ଓ ଅନ୍ୟାୟ ବିରୁଦ୍ଧରେ ମଣିଷର ସ୍ୱଉଚ୍ଚାରଣ କଣ୍ଠକୁ ଚାପିଧରେ ।

## (୭) ଅନ୍ତଃସତ୍ତ୍ୱା ଅବସ୍ଥାରେ ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣ ଦେଖିଲେ ବିକଳାଙ୍ଗ ସନ୍ତାନ ଜନ୍ମେ

ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣରୁ ସୂର୍ଯ୍ୟ ଓ ଚନ୍ଦ୍ର ବିକଳାଙ୍ଗ ହେବା ଧାରଣାରୁ ମନୁଷ୍ୟ ଠାରେ ଏପରି ଚିନ୍ତା ପ୍ରକଟିତ କରିଥିଲା । ସୂର୍ଯ୍ୟ ବା ଚନ୍ଦ୍ରଙ୍କୁ କଟାମୁଣ୍ଡ ରାହୁ ଗ୍ରାସ କରେ ନାହିଁ କିମ୍ବା ସେମାନଙ୍କୁ ବିକଳାଙ୍ଗ କରେ ନାହିଁ । ଏକଥା ଆଧୁନିକ ଯୁଗର ଶିକ୍ଷାର ସୁଯୋଗ ପାଇଥିବା ବାଳକ-ବାଳିକା ମାନଙ୍କୁ ଅଜଣା ବା ଅଛପା ନୁହେଁ । କିନ୍ତୁ ତା'ଠାରୁ ବଡ଼କଥା ହେଉଛି ଯେ-କୌଣସି ବିକଳାଙ୍ଗକୁ ଦର୍ଶନ କଲେ ବା ଦେଖିଲେ ଗର୍ଭସ୍ଥ ଶିଶୁ ବିକଳାଙ୍ଗ ହୁଏ ନାହିଁ । ଏହା ଏକ ଭୁଲ ଧାରଣା । ଏକ କୁସଂସ୍କାର ମାତ୍ର ।

## (୮) ଅନ୍ତଃସତ୍ତ୍ୱା ସୁନ୍ଦର ଶିଶୁର ଛବି ଦେଖିଲେ ସୁଦର୍ଶନ ଶିଶୁ ଜନ୍ମେ

ଶିଶୁଟି ଦେଖିବାକୁ କିପରି ହେବ ତାହା ସମ୍ପୂର୍ଣ୍ଣ ନିର୍ଭର କରେ ମା' ଓ ବାପାର (ଆହୁରି ନିର୍ଭୁଲଭାବରେ କହିଲେ ଶିଶୁଟିର ଜନ୍ମଦାତା ଓ ଜନ୍ମଦାତ୍ରୀର) ବଂଶଗତିର ଧାରା ଉପରେ 'ଦିନ'ର ପ୍ରଭାବ ଏବଂ ତା ସାଙ୍ଗରେ ଦିନର ଆଭ୍ୟନ୍ତରୀଣ ପରିବର୍ତ୍ତନ ଉପରେ ; ସୁନ୍ଦର ଶିଶୁର ଛବି ଦେଖିବା, ନ ଦେଖିବା ଉପରେ ନୁହେଁ ।

ଏକଥା ସତ୍ୟ ହେଲେ ମନ୍ଦ ହୁଅନ୍ତା ନାହିଁ । ଅନ୍ତଃସତ୍ତ୍ୱା ରହୁଥିବା ଘରର କାନ୍ଥରେ ଐଶ୍ୱର୍ଯ୍ୟା ରାୟ ଓ ମନାଲିସା ପ୍ରଭୃତି ବିଶ୍ୱସୁନ୍ଦରୀଙ୍କର ଛବି ଟଙ୍ଗାଇ ରଖିଲେ କାମଫତେ । ଅସୁନ୍ଦର ଓ ଅପୁଷ୍ଟ ବାପ-ମା' ମାନେ ବିଶ୍ୱସୁନ୍ଦରୀ ଓ ବିଶ୍ୱଶ୍ରୀ ମାନଙ୍କୁ ଜନ୍ମଦେଇ ଗୋଟିଏ ପ୍ରଜନ୍ମରେ ମୋଟା ମୋଟି ଭାରତୀୟ ମାନଙ୍କ ଚେହେରାର ହାଲ-ହକିକତ୍‌କୁ ଓଲଟାଇ ଦିଅନ୍ତେ ।

ଏକଥା କୁହାଯାଇପାରେ ଯେ - ଅନ୍ତଃସତ୍ତ୍ୱା ପାଇଁ ପ୍ରୟୋଜନ ଦୀର୍ଘ ବିଶ୍ରାମ, ଅଳ୍ପଶ୍ରମ, ପ୍ରୟୋଜନୀୟ ଖାଦ୍ୟ, ଭଲନିଦ୍ରା, ଅଶାନ୍ତିହୀନ, ଦୁଃଶ୍ଚିନ୍ତାହୀନ ସୁଖୀ ଜୀବନ । ସୁନ୍ଦର ଶିଳ୍ପ-ସାହିତ୍ୟ, ମା' ହେବାକୁ ଯାଉଥିବା ନାରୀ ପାଇଁ ଗୋଟିଏ ସୁନ୍ଦର ସାଂସ୍କୃତିକ ପରିବେଶ ସୃଷ୍ଟି କରିଥାଏ । ଅନ୍ତଃସତ୍ତ୍ୱା ନାରୀ ପାଖରେ ଏହା ମୂଲ୍ୟହୀନ ନୁହେଁ, କାରଣ ଜଣେ ଅନ୍ତଃସତ୍ତ୍ୱାର ମୁହଁ ଦୁଶ୍ଚିନ୍ତା, ଭଲବାସା ପାଇବା, ନ ପାଇବା, ଦୁଃଖ-ଆନନ୍ଦ ଗର୍ଭସ୍ଥ ଶିଶୁର ସ୍ନାୟୁ ତନ୍ତ୍ରକୁ ଓ ମାନସିକତାକୁ ଆଂଶିକ ପ୍ରଭାବିତ କରେ । ଏଥିରୁ ସ୍ପଷ୍ଟ ଯେ ଏଗୁଡ଼ିକ ଶିଶୁର ବାହ୍ୟିକ ସୌନ୍ଦର୍ଯ୍ୟକୁ ପ୍ରଭାବିତ କରେ ନାହିଁ । ଏପରିକି ଏହି ସମୟରେ ରାମାୟଣ - ମହାଭାରତ ପଢ଼ିଲେ ତାର ପ୍ରଭାବରେ ସନ୍ତାନ ବୀର ଲମ୍ପଟ କୌଣସିଟି ହେବ ନାହିଁ । ଶିଶୁଟି ଗୋଟିଏ ସୁନ୍ଦର ମନୁଷ୍ୟ ଭାବରେ ଗଢ଼ିଉଠିବା ନିର୍ଭର କରେ ସମାଜର ପରିବେଶ ଉପରେ ।

ଭାବୀ ମା'ର ରହିବାଘର କାନ୍ଥରେ ଗୋଟିଏ ଶିଶୁର ଛବି କାହିଁକି ଟଙ୍ଗାଯାଇଥାଏ । କେବେ କେବେ ଶିଶୁ ଛବି ପାଖରେ ଆଇ.ଏ. ଏସ୍. ଛାପଲାଗିଥିବା ମହାପୁରୁଷଙ୍କ ଛବି କଣ୍ଠାରେ ଝୁଲେ । ଏହି ସବୁ ଛବି ଯଦି ଅନ୍ତଃସତ୍ତ୍ୱାକୁ ନାନ୍ଦନିକ ସୌନ୍ଦର୍ଯ୍ୟ ଦେବାପାଇଁ ଟଙ୍ଗା ହୋଇଥାଏ, ତେବେ ନାନ୍ଦନିକ କୌଣସି ଫୋଟଗ୍ରାଫ ବା ପେଣ୍ଟିଙ୍ଗ କାହିଁକି ଟଙ୍ଗାହୁଏ ନାହିଁ ? ଅନ୍ତଃସତ୍ତ୍ୱାର ଓ ତାର ଗର୍ଭସ୍ଥ ଶିଶୁ ପାଇଁ ପ୍ରୟୋଜନୀୟ ପ୍ରତିଟି ବିଷୟ ପ୍ରତି ନଜର ଦେବା ସଙ୍ଗେ ସଙ୍ଗେ ଯଦି ଘରର ନାନ୍ଦନିକ ସୌନ୍ଦର୍ଯ୍ୟ ପାଇଁ କୌଣସି ଛବି ଟଙ୍ଗାଯାଏ, ତେବେ ତାହା କୁସଂସ୍କାର ବୋଲି ଗୃହୀତ ହୁଏ ନାହିଁ । କିନ୍ତୁ ସାଧାରଣ ଭାବରେ ଯେଉଁ ମାନସିକତାକୁ ଗ୍ରହଣ କରି ଛବି ଟଙ୍ଗା ହୋଇଥାଏ- ତାହା ସୁସ୍ପଷ୍ଟ କୁସଂସ୍କାର ।

## (୯) ଅନ୍ତଃସତ୍ତ୍ୱାର ଭୂତ ଭୟ ଏଡ଼ାଇବା

ଭୋର ଓ ମାଧ୍ୟାହ୍ନରେ ବା ଭୋର ଓ ସନ୍ଧ୍ୟା ମୁକୁଳା ବାଳରେ ଘର ବାହାରକୁ ବାହାରିଲେ ଭୂତ ଧରେ । ଖରାପ ଆତ୍ମା ଏହି ସମୟରେ ଭ୍ରୁଣରେ ପଶି ଜନ୍ମହେବାକୁ ଚେଷ୍ଟା କରେ । ତେଣୁ ଭୋର ଓ ମଧ୍ୟାହ୍ନରେ, ଭୋର ଓ ସନ୍ଧ୍ୟାରେ ମୁକୁଳା ବାଳରେ ବାହାରକୁ ବାହାରିବ ନାହିଁ ।

ଏହି ସମୟରେ ବାହାରକୁ ଯଦି ବାହାରିବାକୁ ପଡ଼େ, ବାଳରେ ଗଣ୍ଠି ପକେଇ ବାହାରିବା ଉଚିତ । ତାହାହେଲେ ଭୂତ ଧରିବ ନାହିଁ ।

ଶରୀରରେ ଲୁହା ଆଉ ପଣତ କାନିରେ ସୋରିଷ ଥିଲେ ମଧ୍ୟାହ୍ନରେ ଓ ସନ୍ଧ୍ୟାରେ ମୁକୁଳା ବାଳରେ ଅନ୍ତଃସତ୍ତ୍ୱାକୁ ଦେଖିଲେ ବି ଭୂତ ଆସେ ନାହିଁ ।

ଆତ୍ମା ସମ୍ପର୍କରେ ବିସ୍ତୃତ ଭାବରେ ଏତେ ତର୍କମା ଆଲୋଚନା, ପର୍ଯ୍ୟାଲୋଚନା, ଯୁକ୍ତିତର୍କ ପ୍ରଭୃତି ହୋଇଛି । ପୁଣି ବହୁ ବଚନ ପ୍ରବଚନ, ଶାସ୍ତ୍ର, ତତ୍ତ୍ୱ ପ୍ରଭୃତି ଅଛି ଯେ ତାର ଥଳ କୂଳ ମିଳେ ନାହିଁ । ଥରେ ସେଥିରେ ବୁଡ଼ିଗଲେ ନିଜର ଯୁକ୍ତି ଦ୍ୱାରା ବୁଝାଯାଏ ଯେ, ଆତ୍ମା ଅମର ନୁହେଁ । କାରଣ ଆଧ୍ୟାତ୍ମବିତ୍‌ମାନେ କହନ୍ତି - 'ଆତ୍ମା'- ମାନେ ହେଲା 'ଚେତନା' ବା 'ମନ' । ମନ ଯେହେତୁ ମସ୍ତିଷ୍କ ସ୍ନାୟୁ କୋଷରେ କାର୍ଯ୍ୟ-କର୍ମର ଫଳ, ତେଣୁ ମନୁଷ୍ୟ ମରିଲେ ଆତ୍ମା ବି ମରିବାକୁ ବାଧ୍ୟ । ଆତ୍ମା ମରିଲେ ଭୂତର ଅସ୍ତିତ୍ୱ ରୁହେ ନାହିଁ । ଭୂତ ନ ରହିଲେ ଭୂତ ଧରିବାର ପ୍ରଶ୍ନଟି ମଧ୍ୟ ରହେ ନାହିଁ । ସୁତରାଂ 'ଅନ୍ତଃସତ୍ତ୍ୱା' ପାଇଁ 'ଭୋର ମଧ୍ୟାହ୍ନ' 'ଭୋର ସନ୍ଧ୍ୟା' ପ୍ରତିଟି ବାରଣ / ନିଷେଧ ମୂଲ୍ୟହୀନ ହୋଇଥାଏ । ଅର୍ଥହୀନ ହୋଇଯାଏ, 'ବାଳରେ ଗଣ୍ଠି' 'ଲୁହା' 'ସୋରିଷ' ଇତ୍ୟାଦିର ପ୍ରସଙ୍ଗ ।

ତାହାହେଲେ ଅନ୍ତଃସତ୍ତ୍ୱା ଉପରେ ଏପରି କିଛି କ'ଣ ଘଟେ ଯାହା ଦେଖି ସାଧାରଣ ମନୁଷ୍ୟ 'ଭୂତଭୟ' ବୋଲି ଧାରଣା ହେବାର ସମ୍ଭାବନା ରହିଛି ?

ଉତ୍ତର-ହଁ ଘଟେ । ଲୋକ ବିଶ୍ୱାସ 'ଭୂତଡ଼ର' ବୋଲି ଯେଉଁ ଭଳି ଧାରଣା ପୋଷଣ କରାଯାଏ, ସେହିଭଳି ଗୋଟିଏ ଘଟଣା ଅନେକ ସମୟରେ ଅନ୍ତଃସତ୍ତ୍ୱା ଉପରେ ଘଟିଥାଏ । ସେଇଟି 'ଭୂତର ଭୟ' ନୁହେଁ । 'ଭୂତ' ଯେତେବେଳେ ନାହିଁ, ସେତେବେଳେ 'ଭୂତର ଭୟ' ସମ୍ଭବ ନୁହେଁ । ସେଇଟି ଗୋଟିଏ ରୋଗ, ଯାହା ଅନ୍ତଃସତ୍ତ୍ୱା ମାନଙ୍କର ହେବାର ସମ୍ଭାବନା ଥାଏ ଏବଂ ଅନେକ ସମୟରେ ହୁଏ ।

ରୋଗଟିର ନାମ 'ଏକଲାମ୍ପସିୟା' (Eclampsia) । ଏହି ରୋଗରେ ଅନ୍ତଃସତ୍ତ୍ୱା ମହିଳାର ନିଦ କମିଯାଏ, ରକ୍ତଚାପ ବଢ଼ିଯାଏ । ଅନେକ ସମୟରେ ରକ୍ତଚାପ ବେଶି ପରିମାଣରେ ବଢ଼ିଯାଏ । ରକ୍ତରେ ଏହି ସମୟରେ ଏକ ପ୍ରକାର ବିଷାକ୍ତ ଜୈବ-ରାସାୟନିକ ପଦାର୍ଥର ଉପସ୍ଥିତି ଘଟେ । ପାଦ ଫୁଲିଯାଏ, ରୋଗିଣୀ ସମୟ ସମୟରେ ହିଷ୍ଟିରିୟା ରୋଗୀ ବା ମୃଗୀ ରୋଗୀ ପରି ହାତପାଦ ଖଞ୍ଚିଦିଏ ଏବଂ ଅଜ୍ଞାନ ହୁଏ ।

ମା' ଓ ଶିଶୁ ଦୁଇଜଣଙ୍କର ସ୍ୱାସ୍ଥ୍ୟ ପକ୍ଷରେ ଅତିରିକ୍ତ ରକ୍ତଚାପ ଓ ରକ୍ତରେ ବିଷାକ୍ତ ପଦାର୍ଥର ଉପସ୍ଥିତି ଖୁବ୍ କ୍ଷତିକାରକ । ଏହା ଫଳରେ ଅନେକ ସମୟରେ ମା'ର ଅତିରିକ୍ତ ରକ୍ତସ୍ରାବ ହୋଇଥାଏ । ଅତିରିକ୍ତ ରକ୍ତଚାପ ଓ ରକ୍ତରେ 'ଟକସିନ' ବା ବିଷାକ୍ତ ପଦାର୍ଥର ଉପସ୍ଥିତିର କାରଣ ପାଇଁ ମାଆ ନିବୁର୍ଦ୍ଧିଆ ଶିଶୁ ଜନ୍ମାଏ । ଅନେକ ସମୟରେ ଗର୍ଭସ୍ଥ ଶିଶୁ ଓ ମା'ର ମୃତ୍ୟୁ ମଧ ଘଟିଥାଏ ।

ଲକ୍ଷଣୀୟ ବିଷୟଟି ହେଲା - 'ଏକଲପ୍ସିୟା' ରୋଗିଣୀମାନଙ୍କ ମଧରେ ଶତକଡ଼ା ପ୍ରାୟ ୭୫ ଭାଗ ହେଉଛନ୍ତି ପ୍ରଥମ ଅନ୍ତଃସତ୍ତ୍ୱା । ଏହି ରୋଗ ପ୍ରସବ ସମୟରେ, ପ୍ରସବର ଆଗରୁ ଅଥବା ପ୍ରସବର ପରେ ହୋଇପାରେ ।

ଏହି ରୋଗ 'ଅନ୍ତଃସତ୍ତ୍ୱାର' ହାତପାଦ ଖାଞ୍ଚିବା ଦେଖି, ଶରୀର ବିଜ୍ଞାନ ନ ଜାଣିବା ସାଧାରଣ ମନୁଷ୍ୟ ଧରି ନେଉଥିଲେ ଭୂତ ଧରିଛି । ଡାକ ପଡୁଥିଲା ଗୁଣି-ଗାରିଡ଼ି ବାଲାଙ୍କୁ, ତା ପରେ ଝାଡ଼-ଫୁଙ୍କ, ଲଙ୍କା ପୋଡ଼ିବା, ସୋରିଷ ବିଞ୍ଚିବା, ଝାଡୁରେ ବାଡ଼େଇବା, ଦାନ୍ତରେ କଳସିଟାଣିବା, ଇତ୍ୟାଦି ନାନା ଅତ୍ୟାଚାର ରୋଗିଣୀ ଉପରେ ଚାଲୁଥାଏ । ଫଳରେ - ଅନ୍ତଃସତ୍ତ୍ୱା ଓ ଗର୍ଭସ୍ଥ ଶିଶୁର ଆହୁରି ରକ୍ତଚାପ ବୃଦ୍ଧି ପାଇଥାଏ । ଶିଶୁର ମସ୍ତିଷ୍କ କୋଷର କ୍ଷତିର ସମ୍ଭାବନା ବୃଦ୍ଧି ପାଏ । ଶିଶୁଟି ନିର୍ବୁଦ୍ଧିଆ ହବାର ସମ୍ଭାବନା ବଢ଼ିଯାଏ ।

'ଏକଲପ୍ସିୟା' ରୋଗିଣୀର ପ୍ରୟୋଜନ ସମ୍ପୂର୍ଣ୍ଣ ବିଶ୍ରାମ, ଶାରୀରିକ ଓ ମାନସିକ । ଚିକିତ୍ସକଙ୍କର ସାହାଯ୍ୟ । ଚିକିତ୍ସକ ଏହି ସମୟରେ ରୋଗିଣୀର ମସ୍ତିଷ୍କ କୋଷର ଉତ୍ତେଜନା କମାଇବା ପାଇଁ ପ୍ରୟୋଜନୀୟ ଔଷଧପତ୍ର ଦେଇ ଥାଆନ୍ତି । ଚାରି ପାଖରେ ଥିବା ପରିବାରର ସଦସ୍ୟ ମାନେ ରୋଗିଣୀକୁ ଉତ୍ତେଜିତ ହେବା ପରି ବିଷୟରୁ ବିରତ କରାଇବା ଅଥବା ଦୂରେଇ ରଖିବା ଉଚିତ ।

ଅନ୍ତଃସତ୍ତ୍ୱା ଓ ଶିଶୁର ସ୍ୱାସ୍ଥ୍ୟକୁ ଆମ୍ଭେମାନେ ପ୍ରାଧାନ୍ୟ ଦେବା ଉଚିତ ଏବଂ ତତ୍ ସଙ୍ଗେ ସଙ୍ଗେ ଏହି ସମସ୍ତ କୁସଂସ୍କାରରୁ ନିଜନିଜକୁ ମୁକ୍ତକରିବା, ଏହି ସବୁ କୁସଂସ୍କାରରେ ଶିକାର ନ ହେବା, ମା' ଓ ଶିଶୁକୁ ରକ୍ଷା କରିବାକୁ ଅନ୍ତଃସତ୍ତ୍ୱା ଓ ତାର ପରିବାରକୁ ସେ ସମ୍ପର୍କରେ ବୁଝାଇବା ।

ଆଜିବି ବହୁ ଶିଶୁ ଆମ୍ଭମାନଙ୍କର କୁସଂସ୍କାର ଓ ଅଜ୍ଞତାର କାରଣରୁ ଭୟଙ୍କର ନିର୍ବୁଦ୍ଧିଆ ଜୀବନ ବିତାଉଛନ୍ତି ।

## (୧୦) ଅନ୍ତଃସତ୍ତ୍ୱାର ନିଶ୍ଚିନ୍ତ ପ୍ରସବ ମନ୍ତ୍ର

ଅନ୍ତଃସତ୍ତ୍ୱାର ନିଶ୍ଚିନ୍ତ ପ୍ରସବ ପାଇଁ ଅଶ୍ୱସ୍ଥ ପତ୍ରରେ ଗୋଟିଏ ବିଶେଷ ମନ୍ତ୍ର ଲେଖି ସନ୍ତାନ ସମ୍ଭାବନା ମହିଳାର ବାଳରେ ଗୁଞ୍ଜି ଦିଆଯାଏ ବା ବାନ୍ଧି ଦିଆହୁଏ । ମନ୍ତ୍ରଟି ହେଲା -

'ଅସ୍ତି ଗୋଦାବରୀ ତୀରେ ଜମ୍ଭଳା ନାମ ରାକ୍ଷସୀ
ଅସ୍ୟାଃ ଶରଣ ମାତ୍ରେଣ ମିଶଲ୍ୟା ଗର୍ଭିଣୀ ଭବେତ୍ ।

ଅର୍ଥାତ୍ - ଗୋଦାବରୀ ନଦୀ ତୀରରେ ଯେଉଁ ଜମ୍ଭଳା ନାମରେ ରାକ୍ଷସୀ ଅଛି,ତାକୁ ସ୍ମରଣ ମାତ୍ରେ ଗର୍ଭିଣୀର ସୁପ୍ରସବ ହୋଇଥାଏ । ଏହି ବିଶ୍ୱାସଟି ଏକ ସମୟରେ ଗ୍ରାମେ ଗ୍ରାମେ ଖୁବ୍ ଜନପ୍ରିୟ ହୋଇଥିଲା । ଜନପ୍ରିୟ ହେବାର ପଛରେ କାରଣ ମଧ ଥିଲା । ସେ ସମୟରେ ଦେଶରେ ୯୦ ଭାଗ ମନୁଷ୍ୟ ଗ୍ରାମରେ ବାସ କରୁଥିଲେ, ନା ଥିଲା ଡାକ୍ତର, ନା ଥିଲା ଆଧୁନିକ ଚିକିତ୍ସାର ସୁଯୋଗ । ପୁଆତିକୁ ସହରକୁ ନେଇଯିବା ପାଇଁ ଯୋଗାଯୋଗ ବ୍ୟବସ୍ଥା ଖୁବ୍ ଖରାପ, ନଗଣ୍ୟ ଏବଂ ସମୟ ସାପେକ୍ଷ ଥିଲା । ପ୍ରସବ ସମୟରେ 'ଅଭିଜ୍ଞା' ବୟସ୍କା ମହିଳାକୁ ଡକରା ପଡୁଥିଲା। ପ୍ରସବକୁ ବେଦନାହୀନ କରିବା ପାଇଁ ସେମାନେ ନାନା ପ୍ରକାରର 'ଟୁଟକା ଟୁଟକି' କରୁଥିଲେ । ଏହି ସମସ୍ତ ବ୍ୟବସ୍ଥା ମଧ୍ୟରୁ ଉଲ୍ଲିଖିତ ଯନ୍ତ୍ର-ମନ୍ତ୍ରର ବ୍ୟବହାର ହେଉଛି ଅନ୍ୟତମ, ଯାହାକି ପୁରୋହିତଙ୍କ ଦ୍ୱାରା ସମ୍ପାଦିତ ହେଉଥିଲା ।

ମାତ୍ର ମନ୍ତ୍ର କୌଣସି ଭାବରେ କାର୍ଯ୍ୟ କରିପାରୁ ନଥିଲା । କାରଣ ମନ୍ତ୍ରଦ୍ୱାରା ବେଦନାହୀନ ପ୍ରସବ ସମ୍ଭବ ନୁହେଁ । ଏହା ଏକ ଧର୍ମୀୟ କୁସଂସ୍କାର ।

## (୧୦) ଅନ୍ତଃସତ୍ୱା (ପୁଆତି) ଯୋଡ଼ା କଦଳୀ ଖାଇଲେ ଜାଁଆଁଳା ସନ୍ତାନ ଜନ୍ମାଏ

କେବଳ ପୁଆତି ପକ୍ଷରେ ଏହି ନ୍ୟାୟୋଚିତ ଉକ୍ତିଟି ଯେ ପ୍ରଯୁକ୍ତ, ତା ନୁହେଁ । ଝିଅମାନେ ଯୋଡ଼ା କଦଳୀ ଖାଇଲେ ଯାଆଁଳା ସନ୍ତାନ ଜନ୍ମଦିଅନ୍ତି । ଏହି ବିଶ୍ୱାସ ମନୁଷ୍ୟମନରେ ଏତେ ପ୍ରଭାବ ପକାଇଛି ଯେ, ବହୁ ପରିବାର କୁମାରୀମାନଙ୍କୁ ଯୋଡ଼ା କଦଳୀ ଖାଇବାକୁ ଦିଅନ୍ତି ନାହିଁ । ଯାଆଁଳା ପିଲା ହବା ସହିତ ଯମଜ କଦଳୀ ଖାଇବାର ସମ୍ପର୍କ ରହିବା ସମ୍ଭବ କି ନୁହେଁ, ଏହାକୁ ବୁଝିବାକୁ ହେଲେ ଶରୀର-ବିଜ୍ଞାନ ସମ୍ପର୍କରେ ସମ୍ୟକ ଧାରଣା ନିତାନ୍ତ ଜରୁରୀ ।

ସାଧାରଣତଃ ଜଣେ ଋତୁମତୀ ନାରୀର 'ଓଭାରି' ବା ଡ଼ିମ୍ବ ଗ୍ରନ୍ଥି ମଧରେ ଅନେକ ଗୁଡ଼ିଏ 'ଓଭାମ' ବା ଡ଼ିମ୍ବକୋଷ ଜନ୍ମନିଏ । ତା ପରେ ଆରମ୍ଭ ହୁଏ ଡ଼ିମ୍ବକୋଷ ଗୁଡ଼ିକ ମଧରେ ଯୁଦ୍ଧ । ଯୁଦ୍ଧରେ ଜୟୀ ବଳିଷ୍ଠତମ ଡ଼ିମ୍ବକୋଷ ଡ଼ିମ୍ବଗ୍ରନ୍ଥି ଠାରୁ ବାହାରି ଆସେ । ଏହା ଜରାୟୁର ସଂଯୋଗ ନଳ ବା 'ଫ୍ୟାଲୋପିୟନ ଟିଉବ' ମଧକୁ ଆସି ଅପେକ୍ଷା କରୁଥାଏ । ପ୍ରତି ଋତୁଚକ୍ରରେ ଏହି ଭାବରେ ଡ଼ିମ୍ବକୋଷ ଅପେକ୍ଷା କରେ ଏବଂ ଋତୁ ସ୍ରାବ ମାଧମରେ ଡ଼ିମ୍ବକୋଷଟିର ମୃତ୍ୟୁ ହେଲା ବୋଲି ଘୋଷିତ ହୁଏ । ଏହି ଅପେକ୍ଷାରତ ଅବସ୍ଥାରେ ୧୩-୧୪ ଦିନ ଠାରୁ ୨୪-୨୫ ଦିନ ମଧରେ (ଋତୁସ୍ରାବରେ ଦିନଟିକୁ ପ୍ରଥମ ଦିନ ବୋଲି ଧରାଯାଏ) କୌଣସି ଶୁକ୍ରକୀଟ ଡ଼ିମ୍ବକୋଷ କୁ ଆଘାତ କରି ପଶି ନ ପାରିଲେ ଡ଼ିମ୍ବକୋଷର ମୃତ୍ୟୁ ଘଟେ ।

ପୁରୁଷର ଶୁକ୍ରକୀଟର କାର୍ଯ୍ୟ-କରଣ ସମ୍ପର୍କରେ ଜଣାଯାଏ ଯେ-ଜଣେ ସୁସ୍ଥ ସବଳ ପୁରୁଷ ପ୍ରତିଥର ସଙ୍ଗମ ସମୟରେ ୧୦୦ ମିଲିୟନ ଠାରୁ ୪୦୦ ମିଲିୟନ ଶୁକ୍ରକୀଟ ବୀର୍ଯ୍ୟ ସହିତ ବାହାର କରିଥାଏ । (ଏକ ମିଲିୟନ ହେଉଛି ୧୦ ଲକ୍ଷ) । ଏହି ଶୁକ୍ରକୀଟମାନଙ୍କ ମଧରେ ମାତ୍ର ଗୋଟିଏ ସହିତ ମିଳିତ ହେବା ପାଇଁ ଅପେକ୍ଷାରତ ଥାଏ ଗୋଟିଏ ମାତ୍ର 'ଓଭାମ' ବା ଡ଼ିମ୍ବକୋଷ ।

ଦେହ-ମିଳନର ଏକ ଚୂଡ଼ାନ୍ତକ୍ଷଣରେ ଶୁକ୍ରକୀଟଗୁଡ଼ିକ ବୀର୍ଯ୍ୟ ସହିତ ଡ଼ିମ୍ବକୋଷ ଆଡ଼କୁ ଦୌଡ଼େ । ପୁଣି ଏହି ଶୁକ୍ରକୀଟଗୁଡ଼ିକ ସମସ୍ତେ ସମାନ ସବଳ ନୁହଁନ୍ତି । ଶୁକ୍ରକୀଟଗୁଡ଼ିକ ମଧରୁ ଡ଼ିମ୍ବକୋଷ ଆଡ଼କୁ ଦୌଡ଼ିଲା ବେଳେ କେହି ଆଗେଇ ଥାଏ, କେହି ପଛେଇ ଥାଏ । ଶୁକ୍ରକୀଟ ମଧରେ କେଉଁଟି ଡ଼ିମ୍ବାଣୁ ସହିତ ମିଳିତ

ହେବ, ତା ନିର୍ଭର କରେ ଶୁକ୍ରକୀଟର ଅନ୍ୟାନ୍ୟ ଚାରିତ୍ରିକ ଗୁଣ ସହିତ ମୁଣ୍ଡରେ ତୀକ୍ଷଣତା ଓ ଆଗୁଆ ଥିବା ଉପରେ । ଭୋଟା ମୁଣ୍ଡିଆ ଶୁକ୍ରକୀଟ ଆଗେଇ ଥିଲେବି ଡ଼ିମ୍ବକୋଷ ଦେହରେ ଆଘାତ କରି ଡ଼ିମ୍ବକୋଷର ଦେହ ଭେଦ କରି ଭିତରେ ପଶି ପାରେ ନାହିଁ ଶେଷ ପର୍ଯ୍ୟନ୍ତ ସବୁଠାରୁ ତୀକ୍ଷ୍ଣ ବଳିଷ୍ଠ ଓ ଶୁକ୍ରକୀଟ ଆଗେଇଥାଏ ଓ ତାର ମୁଣ୍ଡ 'ଡ଼ିମ୍ବକୋଷ' ମଧ୍ୟରେ ପ୍ରବେଶ କରେ । ଡ଼ିମ୍ବକୋଷ ଶୁକ୍ରକୀଟ ସହିତ ଏକତ୍ର ହୁଏ ।

ନାରୀ ଓ ପୁରୁଷର ଏଇ ଦୁଇଟି କୋଷର ମିଳନରୁ ଆରମ୍ଭ ହୁଏ ଜୀବନର ସ୍ପନ୍ଦନ । ଆରମ୍ଭ ହୁଏ କୋଷ ବିଭାଜନ । ଦୁଇଟିରୁ ଚାରୋଟି, ଚାରୋଟିରୁ ଆଠଟି, ଏହିପରି ହଜାରେ, ଲକ୍ଷ ଲକ୍ଷ..। ସାତଦିନ ଶେଷରେ ଗର୍ଭବତୀର କୋଷ-ସମଷ୍ଟି ସଂଯୋଗ ନଳରୁ ଜରାୟୁକୁ ଆସି ଅବସ୍ଥାନ କରେ । କ୍ରମେ କ୍ରମେ ଶିଶୁଟି ତିଆରି ହୁଏ । ଦଶ ମାସପରେ ଜରାୟୁ ମଧ୍ୟରୁ ବାହାରି ପୃଥିବୀର ଆଲୋକ ଦେଖେ ଶିଶୁଟି ।

ଏହାର ବ୍ୟତିକ୍ରମ ପ୍ରସଙ୍ଗରେ ବିଚାର କରିବା । କେବେ କେବେ ଡ଼ିମ୍ବ ଗ୍ରନ୍ଥି ବା ଡ଼ିମ୍ବାଶୟରୁ ଏକାଧିକ 'ଓଭାମ' ବା ଡ଼ିମ୍ବକୋଷ ବାହାରି ଆସି ଫ୍ୟାଲୋପାଇନ ଟିଉବରେ ଅପେକ୍ଷା କରୁଥାଏ । ଏହି ଅପେକ୍ଷାରତ ଉର୍ବର ଅବସ୍ଥାରେ ଏକାଧିକ ଡ଼ିମ୍ବକୋଷ ଭିତରେ ଗୋଟିଏ ଗୋଟିଏ କରି ଶୁକ୍ରକୀଟ ପଶିଗଲେ ଏକାଧିକ ଭ୍ରୂଣ ତିଆରି ହୁଏ । ଏହାଛଡ଼ା ଗୋଟିଏ ଡ଼ିମ୍ବକୋଷରେ ଗୋଟିଏ ଶୁକ୍ରକୀଟ ପଶି ଗୋଟିଏ ଭ୍ରୂଣ ତିଆରି କରିବା ପରେ ବି ଏକାଧିକ ସ୍ୱାଧୀନ ଭ୍ରୂଣରେ ବିଭକ୍ତ ହୋଇଯାଇ ପାରେ ।

ଏକାଧିକ ଡ଼ିମ୍ବକୋଷରେ ଏକାଧିକ ଶୁକ୍ରକୀଟ ପଶି ଯାଆଁଳା ଏକ, ଦୁଇ ବା ତିନିଟି ଶିଶୁର ଜନ୍ମ ହେଲେ ଶିଶୁଗୁଡ଼ିକରୁ କେଉଁଟି ପୁଅ ଆଉ କେଉଁଟି ଝିଅ ହୋଇ ପାରେ । ସ୍ତ୍ରୀର ସବୁ 'କ୍ରୋମୋଜୋମ ହେଉଛି' X । ମାତ୍ର ପୁରୁଷ ଶୁକ୍ରକୀଟରେ X ଓ Y ଦୁଇ ପ୍ରକାର 'କ୍ରୋମୋଜୋମ' ଥାଏ । ପୁରୁଷର ଯେଉଁ ଶୁକ୍ରକୀଟଟି ଡ଼ିମ୍ବକୋଷରେ ପ୍ରବେଶ କରିଛି, ସେଇଟି Y 'କ୍ରୋମୋଜୋମ' ହେଲେ ପୁଅ ହେବ । X 'କ୍ରୋମୋଜୋମ' ଗଲେ ଝିଅ ହେବ । ଏକାଧିକ ଡ଼ିମ୍ବକୋଷରେ ଏକାଧରଣର 'କ୍ରୋମୋଜୋମ' ପ୍ରବେଶ କଲେ ପୁଅ ଓ ଝିଅ ହୁଏ ଏବଂ ସେମାନଙ୍କ ମଧ୍ୟରେ ଚେହେରାଗତ ସାମଞ୍ଜସ୍ୟ ସାଧାରଣତଃ ନଥାଏ । କିନ୍ତୁ ଯେଉଁଠି ଗୋଟିଏ ଡ଼ିମ୍ବକୋଷରୁ ଭ୍ରୂଣ ତିଆରି ହୁଏ ଏବଂ ଭ୍ରୂଣ ବିଭାଜିତ ହୁଏ ସେପରି କ୍ଷେତ୍ରରେ ଏକାଧିକ ଯାଆଁଳା ସନ୍ତାନ ଜନ୍ମ ହୁଅନ୍ତି । ଏପରି ଯାଆଁଳା ଶିଶୁମାନେ ସମଲିଙ୍ଗୀ ଲକ୍ଷଣର ହେବ, ଯାହାକୁ ଇଂରାଜୀରେ Identical Twins ବୋଲି କହନ୍ତି। କାରଣ ଗୋଟିଏ 'କ୍ରୋମୋଜୋମ' ଠାରୁ ଶିଶୁମାନଙ୍କର ସୃଷ୍ଟି। ଏମାନଙ୍କର ମଧ୍ୟରେ ଚେହେରାଗତ ସାମଞ୍ଜସ୍ୟ ଗଭୀରଭାବରେ ପରିଲକ୍ଷିତ ହୁଏ ।

କଦଳୀ ଗୋଟିଏ ହଉ ବା ଦୁଇଟି ହଉ ତାକୁ ଖାଇବା ପରେ ତାହା ପେଟକୁ ଯାଇ ପରବର୍ତ୍ତୀ କାଳରେ କୌଣସି ଭାବରେ ତାହା ଡ଼ିମ୍ବଗ୍ରନ୍ଥି ବା ଓଭାରିରୁ ଏକାଧିକ ଡ଼ିମ୍ବକୋଷ 'ଲୋପିୟନ' ଟିଉବକୁ ପଠାଇ ପାରେ ନାହିଁ ଅଥବା ଭ୍ରୂଣ ବିଭାଜନ କରି ପାରେ ନାହିଁ । ଏହି ଉଦ୍ଭଟ ଲୋକବିଶ୍ୱାସ ଏକ ବଡ଼ ଧରଣର କୁସଂସ୍କାର ମାତ୍ର ।

## (୧୨) ଅନ୍ତଃସତ୍ତ୍ୱାର ଗର୍ଭରୁ ଇଛାନୁଯାୟୀ ପୁଅ ଝିଅ କରାଇବାର ମନ୍ତ୍ର, କବଚ, ଡ଼େଉଁରିଆ ଓ ଡୁଟୁକା ଡୁଟୁକି

ଗର୍ଭସ୍ଥ ସନ୍ତାନକୁ ଇଛାନୁସାରେ ପୁଅ ବା ଝିଅ କରାଇବାର ହଜାର ପ୍ରକାର ଫନ୍ଦି ଫିକରର ବ୍ୟବସ୍ଥା ଆମ ଦେଶର ରହିଛି । ଏ ଦେଶର ପୁରୁଷତାନ୍ତ୍ରିକ ସମାଜରେ ଆଜି ବି ଝିଅ ଜନ୍ମ ହେବାର କାରଣ 'ଅଭିଶାପ' ବୋଲି ମନେକରାଯାଏ । ଆଜିବି ଆମ ଦେଶର ଗୋଟିଏ ଝିଅକୁ ବାହାକରାଇବାକୁ ହେଲେ ଭିଟାମାଟି ପର୍ଯ୍ୟନ୍ତ ବିକିବାକୁ ପଡିଥାଏ । ଯୌତୁକ ପ୍ରଥା ବିରୋଧୀ ଆଇନ୍‌କୁ ନପୁଂସକ କରି ବରପକ୍ଷ ରକମ୍‌ରକମ୍ ଯୌତୁକ ଦାବି କରନ୍ତି । ଏହା ଏପରି ଭୟଙ୍କର ଯେ, ଝିଅଟିଏ ଜନ୍ମହେଲେ ପରିବାରରେ ଶୋକର ଛାୟା ସଞ୍ଚରି ଯାଏ । ଅନେକ ସମୟରେ ଆର୍ଥିକ ବିପର୍ଯ୍ୟୟରୁ ବର୍ତ୍ତିବା ପାଇଁ ଶିଶୁ-କନ୍ୟାକୁ ହତ୍ୟା କରାଯାଏ । ପୁଲିସ-ପ୍ରଶାସନ - ସରକାର ଏହି ଶିଶୁକନ୍ୟା ହତ୍ୟାର ସମସ୍ୟା ବିଶେଷ ଭାବରେ ଓ ଭଲଭାବରେ ଜାଣନ୍ତି, ଅଥଚ ସେମାନେ ନ ଶୁଣିଲା ଭଳି , ନ ଦେଖିଲା ଭଳି ଆଡ଼େଇ ଯାଆନ୍ତି ।

ଯେଉଁଠାରେ ଠଗ (=ଦସ୍ୟୁ) **ବାଛୁ ବାଛୁ ଗାଁ ଉଜୁଡ଼ା** ସେଠାରେ ଶିଶୁକନ୍ୟାର ହତ୍ୟାକାରୀମାନଙ୍କୁ ଧରିବାକୁ ଯାଇ ଭୋଟରମାନଙ୍କ ମନରେ ଚୋଟଦେବାର ବିଳାସିତା କୌଣସି ଭୋଟ ସର୍ବସ୍ୱ ରାଜନୈତିକ ଦଳକୁ ସୁହାଏ ନାହିଁ । ଅତଏବ ଏ ଦେଶରେ ବିନା ବାଧାରେ ଶିଶୁକନ୍ୟା ହତ୍ୟା ଚାଲିଛି, ଚାଲିବ । ତାହାରି ପାଖରେ ଜୋରଦାର ଭାବରେ ଚାଲିଛି -'ମେରା ଭାରତ ମହାନ୍' ସ୍ଲୋଗାନ ।

ଏପରି ଅବସ୍ଥାର ସୁଯୋଗକୁ କାର୍ଯ୍ୟରେ ଲଗାଇ କେତେକ ସୁଯୋଗ-ସନ୍ଧାନୀ ଧର୍ମ ନାମରେ, କିଛି ରୋଜଗାର କରିନେବାକୁ ସୁଯୋଗ ଖୋଜିବେ, ଏହା ସ୍ୱାଭାବିକ । ଫଳରେ ଗର୍ଭସ୍ଥ ସନ୍ତାନକୁ ପୁଅ କରି ଦେବା ପାଇଁ ନାନା ଧରଣର ଡୁଟୁକା-ଡୁଟୁକି - ଡ଼େଉଁରିଆ, କବଚ , ମନ୍ତ୍ର-ତନ୍ତ୍ର, ଦୁଆ, କଲମା 'ଚାଲିଛି-ଚାଲିବ' । ଯେତେଦିନ ପର୍ଯ୍ୟନ୍ତ ଅଜ୍ଞାନତା ରହିଥିବ, ସେତେଦିନ ପର୍ଯ୍ୟନ୍ତ ଏହି ଭ୍ରାନ୍ତ ଧାରଣା ବି ରହିବ । ଏହି କୁସଂସ୍କାର ଓ ଅନ୍ଧବିଶ୍ୱାସ ସର୍ବତ୍ର ରାଜୁତି କରୁଛି ।

## (୧୩) ଅନ୍ତଃସତ୍ତ୍ୱା (ପୁଅାତି) ସଙ୍ଗମ କଲେ ସନ୍ତାନ କାମୁକ ହୁଏ

ଗର୍ଭାବସ୍ଥାରେ ସଙ୍ଗମ କଲେ, ଅନେକ ସମୟରେ ଗର୍ଭସ୍ଥ ଶିଶୁ ଖରାପ ହୋଇପାରେ । ଗର୍ଭାବସ୍ଥାକୁ ଚିକିତ୍ସକମାନେ ସାଧାରଣତଃ ତିନୋଟି ଭାଗରେ ଭାଗ କରନ୍ତି । ଯଥା - (୧) ପ୍ରଥମ ତିନି ମାସକୁ କହନ୍ତି - ଫାଷ୍ଟ ଟ୍ରାଇମେଷ୍ଟର (୨) ଦ୍ୱିତୀୟ ତିନିମାସକୁ କହନ୍ତି - ସେକେଣ୍ଡ ଟ୍ରାଇମେଷ୍ଟାର ? (୩) ତାପରଠାରୁ ପ୍ରସବ ହେବା ପର୍ଯ୍ୟନ୍ତ ସମୟକୁ କହନ୍ତି - ଥାର୍ଡ଼ ଟ୍ରାଇମେଷ୍ଟାର ।

ପ୍ରଥମ ତିନିମାସ- ଅନ୍ତଃସତ୍ତ୍ୱା ବିଶ୍ରାମ ନେବା ଉଚିତ । ଏହି ସମୟରେ ଅତିରିକ୍ତ ପରିଶ୍ରମ କଲେ ଗର୍ଭପାତ ହବାର ସମ୍ଭାବନା ଥାଏ । ଏହି ସମୟରେ ଅତିରିକ୍ତ ସଙ୍ଗମରେ ମଧ ଗର୍ଭପାତ ଘଟିପାରେ ।

ଦ୍ୱିତୀୟ ତିନିମାସ - ଯୌନ ସଙ୍ଗମରେ ଗର୍ଭପାତର ସମ୍ଭାବନା ଥାଏ ନାହିଁ । ଅନ୍ତଃସତ୍ତ୍ୱାର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ଭଲ ରହିଲେ ସଙ୍ଗମରେ କ୍ଷତିର ସମ୍ଭାବନା ନାହିଁ ।

ତୃତୀୟ ଓ ଶେଷ ପର୍ଯ୍ୟାୟରେ-ସଙ୍ଗମ ନ କରିବାହିଁ ଭଲ । ସଙ୍ଗମର କାରଣରୁ ଯୋନି ପଥରେ ବା ଯୋନିପଥର ଉପର ଅଂଶରେ ଜୀବାଣୁ ବା ଫାଙ୍ଗାସ(Fungus) ଆକ୍ରମଣ ହେଲେ, ତା ପାଇଁ ପ୍ରସୂତି ଓ ନବଜାତକର କ୍ଷତି ହୋଇ ପାରେ । ସ୍ତ୍ରୀର ଉତ୍ତେଜିତ ଅବସ୍ଥା ରକ୍ତଚାପ ବୃଦ୍ଧି କରିପାରେ । ଏହି ରକ୍ତଚାପ ବୃଦ୍ଧି ଶିଶୁର ଶରୀରକୁ କ୍ଷତି କରିପାରେ ।

ଏଇସବୁ କାରଣରୁ ସମ୍ଭବତଃ ଗର୍ଭାବସ୍ଥାରେ ଯୌନସଙ୍ଗମ କରିବା ନିଷେଧ । ଏହି ସଂସ୍କାରକୁ ଆମ୍ଭେମାନେ ଉତ୍ତମ ସଂସ୍କାର ବୋଲି କହିବୁ । କାରଣ ଏହା ମନୁଷ୍ୟମାନଙ୍କ ପ୍ରତି ମଙ୍ଗଳକର । ଏହି ପ୍ରକୃତ ଅବସ୍ଥାନଟିକୁ ଆମ୍ଭେମାନେ ଭଲଭାବରେ ବୁଝି ହୃଦୟଙ୍ଗମ କରିବା ପ୍ରୟୋଜନ । ତେଣୁ ଗର୍ଭାବସ୍ଥାରେ ସଙ୍ଗମର କାରଣରୁ ଶିଶୁଟି ଭବିଷ୍ୟତରେ କାମାନ୍ଧ ହବାର ସାମାନ୍ୟତମ ସମ୍ଭାବନା ନାହିଁ ।

ସାଧାରଣ ମନୁଷ୍ୟ ଠାରୁ କେତେକ ବୁଦ୍ଧିଜୀବୀ ମଧ୍ୟରେ ଏପରି ଗୋଟିଏ ଧାରଣା ଅଛି ଯେ - ପ୍ରତ୍ୟେକ ମନୁଷ୍ୟର ଦୁଇଟି ଗୁଣ ଅଛି, ଭଲ ଓ ଖରାପ । ଗୋଟିଏ ଉତ୍କର୍ଷ ନୃଶଂସତା ପସନ୍ଦ କରେ ତ ଅନ୍ୟଟି ଶାନ୍ତି । ଗୋଟିଏ ପ୍ରେମିକ, ତ ଅନ୍ୟଟି କାମାତୁର । ମନୋଚିକିତ୍ସକମାନଙ୍କ ମତରେ - ପୁଅ ଝିଅ ପ୍ରତ୍ୟେକଙ୍କର କାମାତୁର

ସ୍ୱଭାବ ପରିଲକ୍ଷିତ ହୁଏ । ଏହା ମନୁଷ୍ୟର ସହଜାତ ପ୍ରବୃତ୍ତି । ପତ୍ନୀ ସହିତ ଯାଉଛ, ବାଟରେ ଗୋଟିଏ ସୁନ୍ଦରୀ ଝିଅ ଦେଖିଲେ ତାକୁ ଆଡ଼ ଆଖିରେ ଚାହିଁବା ସଙ୍ଗେ ସଙ୍ଗେ ସଚେତନ ବା ଅଚେତନ ମନରେ କାମନାର ନିଆଁ ଜଳି ଉଠିବ । ଏପରି ନହେଲେ, ଆପଣ ଜଣେ ସ୍ୱାଭାବିକ ପୁରୁଷ କି ନୁହେଁ, ଏ ବିଷୟରେ ସନ୍ଦେହ ଜାଗ୍ରତ ହୁଏ । ସେହିପରି ଭାବରେ, ଆପଣଙ୍କର ପତ୍ନୀ ଆକର୍ଷଣୀୟ ପୁରୁଷ ଦେଖିଲେ ମନରେ କାମନାର ଜ୍ୱାଳା ଉଠିବାକୁ ବାଧ୍ୟ ।

ମନୋଚିକିତ୍ସକମାନେ ଏହି ଧରଣର 'ଫ୍ରୟେଡ଼ୀୟ' ତତ୍ତ୍ୱକୁ ପ୍ରତିପାଦିତ କରିଥାଆନ୍ତ । ଏମାନଙ୍କ ପ୍ରତି କୌଣସି ପ୍ରକାର ଅଶ୍ରଦ୍ଧା ପୋଷଣ ନ କରି ସତ୍ୟର ଉନ୍ମୋଚନ ପାଇଁ ଆମ୍ଭେ ଏତିକି କହିବୁ ଯେ - ଫ୍ରୟେଡ଼ୀୟ ତତ୍ତ୍ୱ ଇଉରୋପ, ଆମେରିକା ଯୁକ୍ତରାଷ୍ଟ୍ର, ଜାପାନ ସହ ପ୍ରତ୍ୟେକଟି ଆଲୋକପ୍ରାପ୍ତ ଦେଶର ଆଧୁନିକ ମନୋବିଜ୍ଞାନୀ ମାନଙ୍କ ପାଖରେ ବହୁ ଦିନରୁ ବାତିଲ ହୋଇ ଯାଇଛି ।

ମନୋବିଜ୍ଞାନର ସର୍ବଶେଷ ଗୃହୀତ ତଥ୍ୟର ପ୍ରତିଷ୍ଠିତ ଭିତ୍ତିକୁ ଆଶ୍ରୟ କରି ଏହା କୁହାଯାଇ ପାରେ ଯେ ମନୁଷ୍ୟର ମନକୁ ଯେଉଁପରି ଦୁଇଟି ବିପରୀତ ମନର ସମାବେଶ ବୋଲି ଦର୍ଶା ଯାଇଛି, ତାହା ନିଛକ ଭାବରେ ଏକ ଭୁଲ କଳ୍ପନା । ମନୁଷ୍ୟର ସହଜାତ ପ୍ରବୃତ୍ତି ଯେପରି କେବଳମାତ୍ର ଯୌନତା ଉପରେ ପର୍ଯ୍ୟବେଶିତ ବା ନିର୍ଭର କରେ ନାହିଁ, ସେହିପରି 'ଭଲ ମନ' ଓ 'ମନ୍ଦ ମନ' ଯୌଥ ଅବସ୍ଥାନର ସ୍ଥଳ ନୁହେଁ । ମନୁଷ୍ୟର କିଛି ସହଜାତ ପ୍ରବୃତ୍ତି ଅଛି । ସେଇ ପ୍ରବୃତ୍ତିଗୁଡ଼ିକୁ ଦୁଇଟି ଭାଗରେ ଭାଗ କରାଯାଇ ପାରେ। (୧) ବଞ୍ଚିରହିବା ପାଇଁ ସହଜାତ ପ୍ରବୃତ୍ତି । ଯାହା ମଧ୍ୟରେ ରହିଛି ଖାଦ୍ୟ ସଂଗ୍ରହ, ମୁଣ୍ଡ ଗୁଞ୍ଜିବା ପାଇଁ ଘରର ବ୍ୟବସ୍ଥା, ଆକ୍ରମଣ ପ୍ରତିରୋଧ କରିବା । (୨) ପ୍ରଜାତି ବୃଦ୍ଧି ପାଇଁ ସହଜାତ ପ୍ରବୃତ୍ତି, ଯାହା ମଧ୍ୟରେ ରହିଛି ଯୌନ ଜୀବନ ଓ ସନ୍ତାନ ପାଳନ । ମନୁଷ୍ୟ ମଧ୍ୟରେ ଏହି ପ୍ରବୃତ୍ତିଗୁଡ଼ିକ ପ୍ରକାଶ ପାଇବା ସ୍ୱାଭାବିକ । ବଞ୍ଚିରହିବା ପ୍ରୟୋଜନରେ ଆକ୍ରମଣ ପ୍ରତିହତ କରିବା ପାଇଁ ମନୁଷ୍ୟର ପ୍ରତି ଆକ୍ରମଣକୁ 'ମନ୍ଦ ବା ଦୁଷ୍ଟ ମନର କ୍ରିୟା' ବୋଲି ଚିହ୍ନିତ କଲେ ଆମେ ଭୁଲ କରିବୁ । ସେହିପରି ସୁସ୍ଥ ସ୍ୱାଭାବିକ ଯୌନ ଜୀବନକୁ, 'ମନ୍ଦ ବା ଖରାପ ମନର କ୍ରିୟା' ବୋଲି ଭାବିବା ବି ଭୁଲ । ବରଂ ଏହା ସୁନ୍ଦର ପ୍ରେମର ଅବିଚ୍ଛେଦ ଅଙ୍ଗ । ଗୋଟିଏ ମଣିଷ ମଧ୍ୟରେ ଉଭୟ 'ଭଲ ମନ ଓ ମନ୍ଦ ମନ'ର ସହାବସ୍ଥାନ ସମ୍ପର୍କରେ ଏବେ ଯେଉଁ ଅବତାରଣା କରାଗଲା, ତାହାବି ଠିକ୍ ନୁହେଁ ।

ଶିଶୁ ପ୍ରଜାତି ସୁଲଭ ଦିନର ପ୍ରଭାବରେ ମାନବିକ ଧର୍ମ ବିକଶିତ ହେବାର ପରିପୂର୍ଣ୍ଣ ସମ୍ଭାବନା ନେଇ ଜନ୍ମି ଥାଏ । କିନ୍ତୁ ସେଇ ସମ୍ଭାବନାକୁ ବାସ୍ତବିକ ରୂପ ଦିଅନ୍ତି

ବାପା-ମା', ଭାଇ ଭଉଣୀ, ଆତ୍ମୀୟ ସ୍ୱଜନ, ଶିକ୍ଷକ, ଅଧ୍ୟାପକ, ସହପାଠୀ, ଖେଳସାଥୀ, ପରିଚିତ ଓ ଆଖପାଖର ପଡ଼ୋଶୀମାନେ, ଅର୍ଥାତ୍ ସାମାଜିକ ପରିବେଶ ।

ପୁଣି ଗୋଟିଏ ପରିବେଶ ମଧ୍ୟରେ ଗଢ଼ିଉଠୁଥିବା ବିଭିନ୍ନ ବ୍ୟକ୍ତିଙ୍କ ମଧ୍ୟରେ ବିଭିନ୍ନତାର ପରିଚୟ ଆମ୍ଭେମାନେ ପାଇଥାଉ । କାହିଁକି ଏପରି ହୁଏ ? ଏଇ ପ୍ରସଙ୍ଗରେ ମନସ୍ତତ୍ତ୍ୱ ବିଭିନ୍ନ ମଣିଷର ବିଭିନ୍ନ ପ୍ରକାରର ଭାବପ୍ରବଣତାକୁ ଆମ୍ଭର ଦୃଷ୍ଟି ଆକର୍ଷଣ କରିଥାଏ । ଗୋଟିଏ ଡ଼ିମ୍ବକୋଷରୁ ବିଭାଜିତ ହୋଇ ଜନ୍ମ ନେଇଥିବା ଯାଆଁଳା ଶିଶୁ ଏକାଧରଣର ଚେହେରା ଓ ବର୍ଣ୍ଣ, ଏକ ପ୍ରକାର ଶାରୀରିକ ଗଠନ ଏବଂ ଏକାଧରଣର ମୁଖାକୃତି ହେବା ସତ୍ତ୍ୱେ ପ୍ରତ୍ୟେକଟି ମନୁଷ୍ୟ ସ୍ୱତନ୍ତ୍ର ବ୍ୟକ୍ତିବିଶେଷ । ପ୍ରତ୍ୟେକ ମନୁଷ୍ୟର ମସ୍ତିଷ୍କରେ ସ୍ନାୟୁକୋଷର ଗତିମୟତା, ଉତ୍ତେଜନା-ନିସ୍ତେଜନା, ଆବେଗ ପ୍ରବଣତା ବା ସମ୍ବେଦନଶୀଳତା ଇତ୍ୟାଦି ଧର୍ମଗୁଡ଼ିକ ଭିନ୍ନତର । ତେଣୁ ଏକପ୍ରକାର ସାମାଜିକ ପରିବେଶର ପ୍ରଭାବରେ ବଢ଼ିଉଠିବା ଯୋଗୁଁ ସାଧାରଣ ଓ ସାମୟିକ ଭାବେ ସେଇ ପରିବେଶ ଦ୍ୱାରା ପ୍ରଭାବିତ ହେଲେ ହେଁ, ସେଇ ପ୍ରଭାବରେ ମଧ୍ୟ ନାନା ଭାବରେ ତାରତମ୍ୟ ଘଟିଥାଏ, ଏପରିକି ଭିନ୍ନତର ନୂଆଚିନ୍ତା ଓ ଭାବନାର ଉନ୍ମେଷ ମଧ୍ୟ ଦେଖାଯାଏ ।

ଶିଶୁ ଜନ୍ମଠାରୁ ଯଦି ଏପରି ପରିବାର ଓ ପରିବେଶ ମଧ୍ୟରେ ମଣିଷ ହୁଏ, ସେଠାରେ ସମସ୍ତ ପ୍ରାଣୀ ପ୍ରତି ଅକୃତ୍ରିମ ଭଲପାଇବା ଉତ୍ସାହିତ ହୁଏ । ତେବେ ସେହି ଶିଶୁ ଆତ୍ମରକ୍ଷା ପ୍ରୟୋଜନ ଛଡ଼ା କୌଣସି ପ୍ରାଣୀକୁ ଆଘାତ କରେ ନାହିଁ, ଆଘାତ କରି ଆନନ୍ଦ ପାଇବା ତ ଦୂରର କଥା, ଯେଉଁ ଶିଶୁ ଦାଣ୍ଡ କୁକୁରକୁ ଟେକା ମାରି ଆନନ୍ଦ ପାଏ, ସେ ଶିଶୁ ସାମାଜିକ ପରିବେଶ ପାଇଁ, ଅର୍ଥାତ୍ ପରିବାର ପରିଜନ ଆଖପାଖ ମନୁଷ୍ୟ ମାନଙ୍କଠାରୁ ଶିକ୍ଷା କରି ଏହି ପ୍ରକାର କାମରେ ଆନନ୍ଦ ପାଇଥାଏ । ଆହୁରି ପ୍ରାଣୀକୁ ଆଘାତ କରିବାକୁ ଦେଖିଲେ, କୌଣସି ଶିଶୁ ପ୍ରାପ୍ତମନସ୍କ ମାନସିକ ସ୍ତରରେ ଆଘାତ ପାଏ । ଏପରି ସମ୍ବେଦନଶୀଳ ମନ ସାମାଜିକ ପ୍ରଭାବରେ ତିଆରି ହୁଏ । ଆଧୁନିକ ମନୋବିଜ୍ଞାନ ମତରେ - ଶିଶୁମନର ନୃଶଂସତା ପାଇଁ ମନଭିତରେ 'ମନ୍ଦମନ' ଦାୟୀ ନୁହେଁ । ଦାୟୀ ସାମାଜିକ ପରିବେଶ ।

ଯେଉଁ ଶିଶୁ ବା କିଶୋର - କିଶୋରୀ ଝୋପଡ଼ି ପଟି ବସ୍ତିରେ ରୁହନ୍ତି, ସେ ପ୍ରତିଦିନ ଦାରିଦ୍ର୍ୟ, ରୋଜଗାର ଅନିଶ୍ଚିତତା, ବେକାରି, ଆଖ-ପାଖର ବଡ଼ମାନେ ବଞ୍ଚିରହିବା ପାଇଁ ନାନା ଅପରାଧମୂଳକ କାର୍ଯ୍ୟ କରିବାର ଦେଖୁଛି । ପୁଣି ଆଖ-ପାଖରେ ନାରୀ-ପୁରୁଷମାନଙ୍କର ନାନା ପ୍ରକାର ଅସାମାଜିକ କାର୍ଯ୍ୟ କରୁଥିବାର

ଦେଖୁଛି, ପୁଣି ଦେଖୁଛି ବସ୍ତିର ବଳୁଆ-ଦାଦାମାନେ ରାତି-ବେରାତିରେ ସାହିର ଝିଅମାନଙ୍କ ଉପରେ ହାମଲା କରିବାର । ଗୋଟିଏ ଛୋଟିଆ ଘରେ ପରିବାରର ଗଦାଏ ନାରୀ ପୁରୁଷ ସାଥିରେ ରାତି କଟେଇଲାବେଳେ ସେ ବହୁଥର ଦେଖିଛି ନାରୀ-ପୁରୁଷର ମିଳନ । ଦେଖିଛି ଆତ୍ମୀୟ- ଅନାତ୍ମୀୟ ପୁରୁଷମାନଙ୍କର ଲାଳସା, ଅନବରତ ଶୁଣିଛି ଆଦି ରସାତ୍ମକ ରସିକତା, ଶୁଣିଛି ଅସଭ୍ୟ ବୋଲି । ଫଳରେ ଏଇ ଶିଶୁ ବା କିଶୋର-କିଶୋରୀ ଭିନ୍ନ ଲିଙ୍ଗର ମନୁଷ୍ୟର ଯୌନ ଯନ୍ତ୍ରଣା ସମ୍ପର୍କରେ ଭାବିବାକୁ ଶିଖେ । ଏଇ ଧରଣର କାମୁକତା ପାଇଁ ସେମାନଙ୍କର ଜନ୍ମଗତ କୌଣସି ତ୍ରୁଟି-ବିଚ୍ୟୁତି ଦାୟୀ ନୁହେଁ । ଏପରି କୌଣସି 'ଜିନ' ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ, ସେଇ ପରିବେଶ ମଧ୍ୟରେ ଗଢ଼ିଉଠୁଥିବା କୌଣସି କିଶୋର ବା କିଶୋରୀର ଯୌନ ସମ୍ବନ୍ଧୀୟ ଅସଭ୍ୟ ବୋଲି କେହି ଶୁଣିବାକୁ ପାଇବେ ନାହିଁ । ସାଂସ୍କୃତିକ ବା ଅର୍ଥନୈତିକ ଦିଗରେ ଉନ୍ନତ ପାରିବାରିକ ଓ ପରିବେଶରେ ବଢ଼ି ଉଠୁଥିବା କିଶୋର କିଶୋରୀମାନଙ୍କ କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁକ୍ତ ।

କିନ୍ତୁ ଯଦି ବସ୍ତି ବାସିନ୍ଦାମାନଙ୍କ ତୁଳନାରେ ପରିବେଶଗତ ଭାବରେ ଆଗୁଆ ଥିବା ନାରୀ ପୁରୁଷମାନଙ୍କର ଚେତନା 'ଭୋଗବାଦୀ' ହୁଏ, ତେବେ ସେମାନଙ୍କ ପାଖରେ ଯୌନତା ଏକ ଆଡ଼ଭେନଞ୍ଚାର, ଏକ ଉତ୍ତେଜନା, ଏକ ତଥାକଥିତ ପ୍ରଗତି ବୋଲି ମନେ ହୋଇପାରେ । ଅପର ପକ୍ଷରେ ନାରୀ- ପୁରୁଷ ବିପରୀତ ଲିଙ୍ଗର ଆକର୍ଷଣୀୟ ବା ଆକର୍ଷଣୀୟା କାହାକୁ ଦେଖିଲେ ଯୌନ ଉତ୍ତେଜନା ଅନୁଭବ କରିପାରେ । ଏହିପରି ଏକ ସାମାଜିକ ଅବସ୍ଥାରେ ରହିଲେ ମନୋଚିକିତ୍ସକଙ୍କର ମତାନୁଯାୟୀ - ବିପରୀତ ଲିଙ୍ଗର ଆକର୍ଷଣୀୟ ଚେହେରାର କାହାକୁ ଦେଖିଲେ ମଧ୍ୟ ମନ୍ଦଇଚ୍ଛା ହୋଇପାରେ । କିନ୍ତୁ ଏଇ 'ମନ୍ଦ ଇଚ୍ଛା' କୌଣସି 'ଜିନ'ର ଫଳ ନୁହେଁ, ପୁଣି ସହଜାତ ପ୍ରବୃତ୍ତି ମଧ୍ୟ ନୁହେଁ । ଏହା ଆମ୍ଭମାନଙ୍କର ସାମାଜିକ ସମସ୍ୟାର ଅଂଶବିଶେଷ ।

ଏ ସମ୍ପର୍କରେ ଏକ ପ୍ରଶ୍ନ ଉଠେ । ଆମ୍ଭେମାନେ ନାଟକ ବା ସିନେମା ଦେଖୁ ଦେଖୁ ଯେତେବେଳେ ଏକାତ୍ମତା ଅନୁଭବ କରୁ, ସେତେବେଳେ କ୍ରନ୍ଦନ ଦୃଶ୍ୟରେ କାନ୍ଦୁ, ହାସ୍ୟ ଦୃଶ୍ୟରେ ହସୁ । ଆଡ଼ଭେନଞ୍ଚାରର ଉତ୍ତେଜନା ଆମକୁ ଉତ୍ତେଜିତ କରେ । ତାହାହେଲେ ନଗ୍ନ ଦୃଶ୍ୟ, ଧର୍ଷଣର ଦୃଶ୍ୟ ଦେଖିଲେ ଉତ୍ତେଜନା ଆସିବ- ଏହା ସ୍ୱାଭାବିକ ନୁହେଁ କି ? ଏହା ମଧ୍ୟରେ 'ଭୋଗବାଦୀ' ଓ 'ଅଭୋଗବାଦୀ' ଚିନ୍ତାର କୌଣସି ପ୍ରଶ୍ନ ଉଠି ପାରେ କି ?

ଆମେ ଯେତେବେଳେ ଏକାତ୍ମତା ଅନୁଭବ କରୁ, ସେତେବେଳେ କୌଣସି ଅଭିନୀତ ଦୃଶ୍ୟ ଦେଖି ହସୁ, କାନ୍ଦୁ, ଉତ୍ତେଜିତ ହଉ । ସଂସ୍କୃତିଗତ ଅଗ୍ରଗାମୀ କୌଣସି ମନୁଷ୍ୟ ନିଶ୍ଚୟ ଉଗ୍ର ଭାଣ୍ଡ ପଣିଆରେ ହସନ୍ତି ନାହିଁ, ଆବେଗପୂର୍ଣ୍ଣ ହୋଇ ଆଖି ଛଳଛଳ ହୁଏନାହିଁ, ଆଡ଼ମ୍ବରପୂର୍ଣ୍ଣ ଦୃଶ୍ୟରେ ଲୋମ ଟାଙ୍କୁରି ଉଠେନାହିଁ ।

ସାମାଜିକ ସଂସ୍କୃତିଗତ ଅଗ୍ରଣୀ ମନୁଷ୍ୟ ଯୌନ ଦୃଶ୍ୟରେ ଆଦୌ ଉତ୍ତେଜନା ଅନୁଭବ କରନ୍ତି ନାହିଁ, ବରଂ ବିରକ୍ତି ଅନୁଭବ କରନ୍ତି । ଆମ୍ଭମାନଙ୍କ ମଧ୍ୟରେ ଯଦି ପ୍ରେମ ସମ୍ପର୍କରେ ଏକ ବିଶେଷ ମୂଲ୍ୟବୋଧ ଗଢ଼ିଉଠେ, ପ୍ରେମର ଆକସ୍ମିକ ଓ ପ୍ରାଥମିକ ସର୍ତ୍ତହେଲା,-ବନ୍ଧୁତ୍ୱ, ବିଶ୍ୱାସ, ଶ୍ରଦ୍ଧା ଓ ସହଗାମିତା, ତେବେ ଧର୍ଷଣ ଦୃଶ୍ୟ ବା କାମୁକ ନାରୀପୁରୁଷର ଦେହ ମିଳନ ଦେଖି ଏକାତ୍ମତା ଅନୁଭବ ଏକାନ୍ତ ଅସମ୍ଭବ । ବରଂ ରୁଚିଗତ ପାର୍ଥକ୍ୟ ପାଇଁ ଦୃଶ୍ୟଟି ଦେଖି ପ୍ରତିକ୍ରିୟା ଉତ୍ତେଜନା ପରିବର୍ତ୍ତେ ବିରକ୍ତି । ପ୍ରେମିକ ପ୍ରେମିକାର ସ୍ୱାଭାବିକ ଓ ସୁନ୍ଦର ଦେହ ମିଳନର ଦୃଶ୍ୟ ଦେଖିଲେ ଏକାତ୍ମତା ଅନୁଭବ ଓ ଯୌନ ଉତ୍ତେଜନା ଉଦ୍ରେକ ହେବା ସ୍ୱାଭାବିକ । ଏହି ଏକାତ୍ମତା ଜଣେ ଦର୍ଶକ ସହିତ ତାର ପ୍ରେମିକ ବା ପ୍ରେମିକାର ପ୍ରେମର ସମ୍ପର୍କଠାରୁ ନିର୍ଗତ ହୁଏ । ଏହି ଏକାତ୍ମତା ପ୍ରେମିକ-ପ୍ରେମିକାର ବାସ୍ତବ ଜୀବନରେ ମଧ୍ୟ ଆମ୍ଭେ ଦେଖିବାକୁ ପାଉଁ । ପ୍ରେମିକ-ପ୍ରେମିକା ସେମାନଙ୍କର ଦେହ ମିଳନ ଆଗରୁ ପୂର୍ବରାଗ ପର୍ଯ୍ୟାୟରେ ଯଦି ବୁଝିପାରନ୍ତି, ସଙ୍ଗିନୀ ବା ସଙ୍ଗୀ ପାଖରୁ ଠିକ୍ ଭାବରେ କୌଣସି ଇସାରା ମିଳୁନାହିଁ, ସେପରି କ୍ଷେତ୍ରରେ ତାର ଉତ୍ତେଜନା ନିସ୍ତେଜନାକୁ ଓହ୍ଲାଇ ଆସିବାକୁ ବାଧ୍ୟ । ଏଇଠି କାମୁକତା ସହିତ ପ୍ରେମର ପାର୍ଥକ୍ୟ ।

କାମୁକତା ସହଜାତ ପ୍ରବୃତ୍ତି ନୁହେଁ। ଏହା ସାମାଜିକ, ପାରିବାରିକ ଓ ମନସ୍ତାତ୍ତ୍ୱିକ ସମସ୍ୟା ସହିତ ଜଡ଼ିତ । ଏହି ସମସ୍ୟା ସମାଧାନର ଅବ୍ୟର୍ଥ ଔଷଧ ରହିଛି । ଔଷଧଟି ହେଲା - ପ୍ରେମ ବିଷୟରେ ପୁରୁଷ, ସ୍ତ୍ରୀ ନିର୍ବିଶେଷରେ ସୁନ୍ଦର ଓ ସୁସ୍ଥ ମୂଲ୍ୟବୋଧ ଗଢ଼ିତୋଳିବା ।

## (୧୪) ପୁଅ ହବ କି ଝିଅ ହେବ ଜାଣିବା ପାଇଁ ମନୁସଂହିତା

ସନାତନ ହିନ୍ଦୁ ଧର୍ମର ଆଇନ ପ୍ରଣେତା ମାନବ ସୃଷ୍ଟିକାରୀ, ସମସ୍ତ ପ୍ରକୃତି ଓ ପ୍ରାଣୀକୁଳର ମୂଳ ଧାରା ଭାବରେ ମନୁ ହିନ୍ଦୁ ଧର୍ମର ମନୁଷ୍ୟ ମାନଙ୍କ ପାଖରେ ପରମ ଶ୍ରଦ୍ଧେୟ । ମନୁଙ୍କ ସ୍ମୃତିଗ୍ରନ୍ଥ 'ମନୁସଂହିତା'ରେ ଦିଆଯାଇଛି, ଇଚ୍ଛାନୁଯାୟୀ ଗର୍ଭାବସ୍ଥାରେ ପୁଅ ବା ଝିଅ ଉତ୍ପାଦନ କରିବାର ପଦ୍ଧତି । ହିନ୍ଦୁ ଧର୍ମଗୁରୁମାନେ ମନେ କରନ୍ତି 'ମନୁସଂହିତା' ବ୍ରହ୍ମାଙ୍କର ମୁହଁରୁ ନିସୃତ ବାଣୀ, ଅତଏବ ଅଭ୍ରାନ୍ତ ସତ୍ୟ ।

ତୃତୀୟ ଅଧ୍ୟାୟର ୪୮ ତମ ଶ୍ଳୋକରେ କୁହାଯାଇଛି - ନାରୀର ଋତୁସ୍ରାବର ପ୍ରଥମ ଦିନରୁ 'ଏକ' ଧରି ଛଅ, ଆଠ,ଦଶ ପ୍ରଭୃତି ଯୋଡ଼ ସଂଖ୍ୟାଭୁକ୍ତ ରାତ୍ରରେ ସ୍ତ୍ରୀ ସହବାସ କଲେ ଯଦି ଗର୍ଭ ଉଦୟ ହୁଏ, ତାହାହେଲେ ପୁଅ ଜନ୍ମେ । ପାଞ୍ଚ, ସାତ, ଏଗାର ପ୍ରଭୃତି ବେଜୋଡ଼ ସଂଖ୍ୟାଥିବା ରାତ୍ରିରେ ସ୍ତ୍ରୀ ରମଣରୁ ଗର୍ଭସଂଚାର ହେଲେ କନ୍ୟା ଜନ୍ମେ । ତେଣୁ ଋତୁ କାଳ ଅନୁସାରେ ଜୋଡ଼ ବା ବେଜୋଡ଼ ଦିନମାନଙ୍କୁ ବିଚାରକରି ସ୍ତ୍ରୀ 'ଗମନ' କଲେ, ଏହି ଧର୍ମର ଏଇ ଅଭ୍ରାନ୍ତ ସତ୍ୟ ଯେ କେତେବଡ଼ ମିଥ୍ୟା, ତାର ପ୍ରମାଣ ବାରମ୍ବାର ଆମ୍ଭେମାନେ ପାଇଛୁ ଓ ପାଉଥିବୁ ।

ମନୁ କେବଳ ମାତ୍ର ଜୋଡ଼ାଦିନମାନଙ୍କରେ ପୁତ୍ର ଓ ବେଜୋଡ଼ା ଦିନ ମାନଙ୍କରେ କନ୍ୟା କହି ଚୁପ ହୋଇ ନାହାଁନ୍ତି, ତାଙ୍କର ଏହି ବକ୍ତବ୍ୟ ଯେ ବିଜ୍ଞାନ ସମ୍ମତ ତାହା ମଧ ପ୍ରତିପାଦିତ କରିଛନ୍ତି । ମନୁସଂହିତାର ୩ୟ ଅଧ୍ୟାୟର ୪୯ ଶ୍ଳୋକରେ କହିଛନ୍ତି - ଯୁଗ୍ମରାତ୍ରି ଗୁଡ଼ିକରେ ପୁରୁଷର ବୀର୍ଯାଧିକ୍ୟତା ହେତୁ ଗର୍ଭରେ ପୁଅ ହୁଏ । ଅଯୁଗ୍ମ ରାତ୍ରିରେ ସ୍ତ୍ରୀର ବୀର୍ଯ୍ୟାଧିକ୍ୟତା ହେତୁ ଗର୍ଭରେ ଝିଅ ଉତ୍ପାଦିତ ହୁଏ । କୌଣସି କାରଣରୁ ବୀର୍ଯ୍ୟସାମ୍ୟ ହେଲେ ଜାଆଁଳା ପୁତ୍ର କନ୍ୟା ଜନ୍ମ ହୁଅନ୍ତି । ସ୍ତ୍ରୀ ଲୋକମାନଙ୍କର ବୀର୍ଯ୍ୟ- ଏ 'କିପ୍ରକାର'ର ? ଆର୍ଯ୍ୟ ଯୁଗରେ ଶରୀର ବିଜ୍ଞାନର ବହୁ ବିଷୟ ଅଜଣା ଥିଲା । ଅନୁମାନ ଉପରେ ପ୍ରାୟତଃ ସବୁକିଛି ନିର୍ଭର କରୁଥିଲେ । ସେହି ଅନୁମାନ ସମୂହକୁ ଆମ ଜନତାଙ୍କ ଦ୍ୱାରା ଗ୍ରହଣ ଯୋଗ୍ୟ କରାଇବା ପାଇଁ 'ଦେବତାମାନଙ୍କର କଥା' 'ଅଭ୍ରାନ୍ତ ସତ୍ୟ' ଇତ୍ୟାଦିର ଛାପଲଗାଇ ପରିବେଷଣ କରାଯାଉଥିଲା ।

ଆଜି ବିଜ୍ଞାନ ଯେତେବେଳେ ବହୁ ଅଗ୍ରସର ହୋଇଛି, ସେତେବେଳେ ଶରୀର ବିଜ୍ଞାନର ଯାହାକିଛି ଦ୍ୱିଧାହୀନ ଭାବରେ ଜଣା ଯାଇଛି, ପରୀକ୍ଷିତ ସତ୍ୟ ହିସାବରେ ଜଣାଯାଇଛି, ସେଗୁଡ଼ିକୁ ଅସ୍ୱୀକାର କରି କେତେ ହଜାର ବର୍ଷ ଆଗର ଅନୁମାନକୁ 'ସତ୍ୟ' ହିସାବରେ ଗ୍ରହଣ କରିବା ମୂର୍ଖତା ଛଡ଼ା କିଛି ନୁହେଁ । ଏହା ଅନ୍ଧବିଶ୍ୱାସ ।

## (୧୫) ଅନ୍ତଃସତ୍ତ୍ୱା (ପୁଆତି)ର ମନୋକାମନା ପୂରଣ ନ କଲେ ସନ୍ତାନ ଖଞ୍ଜ, ବାମନ, ବିକଳାଙ୍ଗ ବା ମାନସିକ ପ୍ରତିବନ୍ଧୀ ହୁଏ

'ସଧଖିଆ' ପ୍ରଥା ବା ସଂସ୍କାର ଆମ ସମାଜରେ ସର୍ବତ୍ର ପ୍ରାୟ ମାନ୍ୟତା ପ୍ରାପ୍ତ । ଶିକ୍ଷାର ଆଲୋକରେ ସଧଖିଆକୁ ଅନେକେ ବର୍ତ୍ତମାନ ଧର୍ମ ଆରୋପିତ କୌଣସି ରୀତି ବୋଲି ମନେ କରନ୍ତି ନାହିଁ । ଯେହେତୁ ଜନ୍ମଦେବା ସମୟରେ ମା'ର ଜୀବନ ପ୍ରତି ଆଶଂକା ଦେଖାଯାଏ, ତେଣୁ ମା' ହେବାକୁ ଯାଉଥିବା ମନୁଷ୍ୟଟିର

ଇଚ୍ଛା ମେଣ୍ଣେଇ ଖୁଆଇବାର ବ୍ୟବସ୍ଥା କରାଯାଏ । ଏହିପରି ଧାରଣାର ବଶବର୍ତ୍ତୀ ହୋଇ ପୁଆତିକୁ ଖୁଆଇଲେ 'ସଧଖିଆ'କୁ କୁସଂସ୍କାର ନ କହି ସଂସ୍କାର ବା ରୀତି ବୋଲି କୁହାଯାଇପାରେ । ବିଦାୟ ସମ୍ବର୍ଦ୍ଧନାର ଖିଆ ପିଆ ଭଳି ।

କିନ୍ତୁ ଏହା ସଂସ୍କାର ନ ହୋଇ କୁସଂସ୍କାର ହୋଇଯାଏ ଯେତେବେଳେ ହିନ୍ଦୁ ପୁରୋହିତ ସମାଜ 'ସଧଖିଆ'ର ପ୍ରୟୋଜନୀୟତା ବିଷୟରେ ବ୍ୟାଖ୍ୟା କରିଥାଆନ୍ତି ଯେ ୪ର୍ଥ ମାସରେ ଗର୍ଭସ୍ଥ ଶିଶୁର ପ୍ରତ୍ୟଙ୍ଗ ବିଭାଗ ବ୍ୟକ୍ତ ହୁଏ । ଗର୍ଭହୃଦୟର ପ୍ରବର୍ତ୍ତିତା ହେତୁ ଚେତନା ଅଭିବ୍ୟକ୍ତ ହୁଏ । ଯେହେତୁ ହୃଦୟ ଚେତନାର ସ୍ଥାନ, ଏଥିପାଇଁ ୪ର୍ଥ ମାସରେ ଗର୍ଭସ୍ଥ ଶିଶୁ ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଆଦି ବିଷୟରେ ଅଭିଳାଷ କରିଥାଏ । ୪ର୍ଥ ମାସରେ ଗର୍ଭିଣୀକୁ ଦ୍ୱିହୃଦୟ ବା ଦୁଇଟି ହୃଦୟ ଯୁକ୍ତ ବୋଲି କୁହାଯାଏ । ହୃଦୟର ଅବମାନନା ହେଲେ ଗର୍ଭସ୍ଥ ଶିଶୁ ଖଞ୍ଜ, ବାମନ, ବିକଳାଙ୍ଗ ହୋଇ ଜନ୍ମଗ୍ରହଣ କରେ, ଏହି କାରଣରୁ ଗର୍ଭବତୀ ନାରୀ ପାଇଁ ପାଞ୍ଚ, ସାତ ବା ନଅ ମାସରେ 'ସଧଖିଆ' ଅନୁଷ୍ଠିତ କରାଯାଏ । ଗର୍ଭବତୀକୁ ତାର ଇଚ୍ଛାମତେ ଭକ୍ଷ ଦ୍ରବ୍ୟ ଦେଇ ଗର୍ଭସ୍ଥ ସନ୍ତାନର ଇଚ୍ଛା ପୂରଣ କରାଯାଏ ।

ଲକ୍ଷଣୀୟ ବିଷୟ ହେଉଛି - ଯେଉଁମାନେ 'ସଧଖିଆ'କୁ ଗୋଟିଏ ସୁନ୍ଦର ନିୟମ ବା ସୁସଂସ୍କାର ବୋଲି ମନେ କରନ୍ତି, ସେମାନେ ବି ଧର୍ମୀୟ ବିଧାନ ମାନି ପାଞ୍ଚ ସାତ, ବା ୯ ମାସରେ 'ସଧଖିଆ'ର ବ୍ୟବସ୍ଥା କରିଥାଆନ୍ତି। ଏହା ଗ୍ରହଶାନ୍ତି ପାଇଁ ଗ୍ରହ ରତ୍ନ ଖଚିତ ମୁଦି ପିନ୍ଧିବା କଥା ଭଳି ଏ ସମ୍ପର୍କରେ ଭଣ୍ଡତା କରି ଲୋକକୁ କୁହାଯାଏ । ପ୍ରକୃତରେ ଏସବୁଥିରେ, ତିଳେମାତ୍ର ବିଶ୍ୱାସ ନଥିଲେ ମଧ ମା' ଦେଇଥିବାରୁ ଏପରି କରାଯାଉଛି, କାରଣ ମା'ଙ୍କ ମନରେ ଯେପରି କଷ୍ଟ ନ ହଉ ।

ସଧଖିଆ ପ୍ରସଂଗରେ ହିନ୍ଦୁଧର୍ମର ପ୍ରବକ୍ତା ଓ ପୁରୋହିତ କୁଳ ଯେଉଁସବୁ ଧାରଣା ଦେଇ ଥାଆନ୍ତି ତନ୍ମଧ୍ୟରୁ ଚାରୋଟି -

(୧) 'ଚେତନା' ହେଲା ଏକ ଧାତୁ । ବାସ୍ତବରେ ଚେତନା କୌଣସି ଧାତୁ ନୁହେଁ । ଚେତନା ହେଉଛି ମସ୍ତିଷ୍କ ସ୍ନାୟୁକୋଷର କାର୍ଯ୍ୟକର୍ମର ଫଳ । (୨) 'ଚେତନା'ର ଅବସ୍ଥାନ ହୃଦୟରେ । ଏହା ମଧ ଏକ ଭୁଲ ଧାରଣା । ଏହି ଭୁଲ ଧାରଣା ଏ ପର୍ଯ୍ୟନ୍ତ ଅନେକ ମନୁଷ୍ୟ ମନରେ ବସାବାନ୍ଧି ରହିଛି । ତନ୍ମଧ୍ୟରୁ ନିଷ୍ଠୁର ଚେତନାର ମନୁଷ୍ୟକୁ ବା ଆବେଗହୀନ ଚେତନାର ମନୁଷ୍ୟକୁ ହୃଦୟହୀନ କରିବାର ରୀତି ଚଳିଆସୁଛି । ଏ ପର୍ଯ୍ୟନ୍ତ ପ୍ରେମିକ ଓ ପ୍ରେମିକା ଭଲପାଇବା ପରି ଗୋଟିଏ ଚେତନା ସମ୍ବନ୍ଧରେ ବୁଝାଇବା ପାଇଁ ଉଭୟେ ଉଭୟଙ୍କୁ ହୃଦୟର ଛବିଥିବା ଅଭିନନ୍ଦନ ପତ୍ର ବା

Greeting Card ବିନିମୟ କରି ଥାଆନ୍ତି, କିନ୍ତୁ ଏହା ସତ୍ତ୍ୱେ ବାସ୍ତବ ସତ୍ୟ ଚେତନାର ଉତ୍ପତ୍ତି ହୃଦୟରୁ ନୁହେଁ । ଚେତନାର ଉତ୍ପତ୍ତି କେନ୍ଦ୍ର ମସ୍ତିଷ୍କ ସ୍ନାୟୁକୋଷ, (୩) ଚତୁର୍ଥମାସର ଗର୍ଭସ୍ଥ ଶିଶୁର ନାନା ରସ ଓ ଗନ୍ଧ ସହିତ ପରିଚିତ ହେବା ଯୋଗୁ ଖାଇବାର ଇଚ୍ଛା ଜନ୍ମେ । ବାସ୍ତବ ସତ୍ୟହେଲା ଆଦୌ ଏପରି ହୁଏ ନାହିଁ । (୪) ଗର୍ଭସ୍ଥ ଶିଶୁର ଇଚ୍ଛା ପୂରଣ ନ ହେଲେ ଖଞ୍ଜ, ବାମନ ଇତ୍ୟାଦି ହେବେ । ଖଞ୍ଜ, ବାମନ, ବିକଳାଙ୍ଗ ବା ପ୍ରତିବନ୍ଧୀ ହେବା କ୍ଷେତ୍ରରେ ବହୁ ବିଷୟ କାର୍ଯ୍ୟ କରେ । କିନ୍ତୁ ସେଇ ବିଷୟଗୁଡ଼ିକ ସହିତ ଗର୍ଭସ୍ଥ ଶିଶୁର ଇଚ୍ଛା ଅପୂର୍ଣ୍ଣ ରହିବା ସମ୍ପର୍କ ତିଳେମାତ୍ର ନୁହେଁ । ଏସବୁ ଶରୀର ବିଜ୍ଞାନ ଓ ଜନ୍ମ ବିଜ୍ଞାନ ଜାଣି ନଥିବା କେତେକ ମନୁଷ୍ୟର କଳ୍ପନାର ଫସଲ । ବିଜ୍ଞାନର ଏତେ ଉନ୍ନତି ସତ୍ତ୍ୱେ ଆମ୍ଭେମାନେ ଯଦି ଏହିପରି ମିଥ୍ୟ । କଳ୍ପନାକୁ ପ୍ରଶ୍ରୟ ଦେଉ, ତାହାହେଲେ ଆମପରି ଶିକ୍ଷାର ସୁଯୋଗ ପାଇଥିବା ବ୍ୟକ୍ତି ମାନଙ୍କର ଚୂଡ଼ାନ୍ତ ଅପଦାର୍ଥତା ହେବ ।

ତଥାପି ଗର୍ଭସ୍ଥ ଶିଶୁର ପୁଷ୍ଟି ଓ ବୃଦ୍ଧି ପାଇଁ ମା'ର ଭଲଖାଇବା ନିତାନ୍ତ ପ୍ରୟୋଜନ ଏହା ଧ୍ରୁବ ସତ୍ୟ । ଶାଶୁ, ଶ୍ୱଶୁର, ନଣନ୍ଦ, ଦିଅର ନେଇ ଗଢ଼ିଉଠିଥିବା ଆମ ସମାଜରେ ଭାବୀ ମା'ଯେ ନିଜ ଇଚ୍ଛାନୁସାରେ ରାନ୍ଧି ଖାଇବ, ଏହାକୁ ଆମ ସମାଜ ଏପର୍ଯ୍ୟନ୍ତ ଭାବି ପାରିନାହିଁ । ଭାବୀ ମା'-ଭୋକ ଲାଗିଲେ ଯେ ଶାଶୁ, ଶ୍ୱଶୁର ନଣଦ ଦିଅରକୁ ଉପେକ୍ଷାକରି ଖାଇବ, ଏପରି ନିର୍ଲ୍ଲଜତା ତାହାଠାରୁ ପ୍ରକାଶ ପାଏ ନାହିଁ । ଅଥଚ ନିଜର ପସନ୍ଦ ଓ ରୁଚି ଅନୁସାରେ ଖିଆପିଆ କଲେ ଗର୍ଭାବସ୍ଥାରେ ଭାବୀ ମା'ର ଶରୀର ଯେ ଭଲ ରହିବ, ଏହା କେହି ବୁଝନ୍ତୁ ବା ନ ବୁଝନ୍ତୁ, ମା' ମାଉସୀ ଖୁଡ଼ିମାନେ ଭଲ ଭାବରେ ବୁଝନ୍ତି । ସେମାନେ ଏହି କୁସଂସ୍କାରଟିକୁ ଆହୁରି ଶକ୍ତ ଭାବରେ ଧରି ରଖିଛନ୍ତି । ତେଣୁ କହନ୍ତି ଆସନ୍ନ ପ୍ରସବାର ଯାହା ଖାଇବାର ଇଚ୍ଛା ତାକୁ ଦିନେ 'ସଧଖିଆ' ଖାଇବାକୁ ଦିଆଯାଏ ।

ଏହି ସଂସ୍କାରର ମାଧ୍ୟମରେ ଚିର ଅବହେଳିତ ନାରୀ ଜୀବନର ଯେଉଁ କରୁଣ ଚିତ୍ର ଧରା ପଡ଼େ, ସେଥିରୁ ମୁକ୍ତିଲାଭ କରିବା ଶିକ୍ଷିତ ମନୁଷ୍ୟର କର୍ତ୍ତବ୍ୟ । ଦିନ, କ୍ଷଣ ନମାନି ସମ୍ପୂର୍ଣ୍ଣ ଗର୍ଭାବସ୍ଥାରେ ମା'ର ଖାଇବା ପିଇବା ପ୍ରତି, ତାର ଇଚ୍ଛା ଅନିଚ୍ଛା ସତ୍ତ୍ୱେ ବିଶ୍ରାମ ସକାଶେ ଗୁରୁତ୍ୱ ଦେବା ବାଞ୍ଛନୀୟ ।

ଏ ପର୍ଯ୍ୟନ୍ତ ଆମ ସମାଜରେ 'ସଧ' ଖୁଆଇବାର ଯେଉଁ ଗତାନୁଗତିକ ଚଳଣି ରହିଛି, ସେ ସମ୍ପର୍କରେ କେତେକ କଥନ - ବୋଲି ମଧ୍ୟ ଶୁଣିବାକୁ ମିଳେ ଯଥା -

୧) ପାଞ୍ଚ ସାତ ରକମର ଭଜା,
ଆଉ ଥିବ ଲାଞ୍ଜମାଛ ଭଜା

(୨) ଭାତ ସଙ୍ଗେ ତିଅଣ
ଆଉ କ୍ଷିରିସା ପାଣି
ଆବର ଗଇଁଠା, ଖୋଇବ ବାଳକ, ରମଣୀ ।

ଏଥିରୁ 'ସଧଖିଆ'ର ପ୍ରକୃଷ୍ଟ ପ୍ରକାରର ଖାଦ୍ୟ ପଦାର୍ଥର ସୂଚନା ମିଳିବା ସଙ୍ଗେ ସଙ୍ଗେ ଗର୍ଭିଣୀକୁ ଏସବୁ ଏକ ବାଳକ ବା ରମଣୀ ଦ୍ୱାରା ଖୁଆଇବାର ବିଧି ପ୍ରଚଳିତ ଅଛି । ଭାବୀ ମା'କୁ ମିଠା ଭଲ ନ ଲାଗିଲେ ମଧ କ୍ଷିରିପାଣି ତାକୁ ଖୋଇବାକୁ ହେବ, ମାଛ ଲାଞ୍ଜ ଭଜା ଖାଇବାକୁ ଇଚ୍ଛା ନଥିଲେ ମଧ ଜବରଦସ୍ତ ଖୁଆଯିବ । ତାପରେ ଏହାକୁ କୁହାଯିବ 'ସଧଖିଆ' । କୌଣସି ଭାବୀ - ମା' 'ଚିକେନ-ଷ୍ଟୁ' ଓ 'ଫ୍ରାଏଡ଼ାଇସ' ପରି ସହଜ ପାକ ଖାଦ୍ୟ ଖାଇବାକୁ ଚାହିଁଲେ ତାକୁ କଣ ଆମ ସମାଜ 'ସଧଖିଆ'ରେ ଖାଇବାକୁ ଦେବ ? ତା ନ ଦେଲେ 'ସଧଖିଆ' ନାଆଁରେ ଏ ପ୍ରକାର ଭଣ୍ଡପଣିଆକୁ ଶ୍ରୀ ଜଗନ୍ନାଥଙ୍କୁ ଦୁହାଇ ଦେଇ ବନ୍ଦ କରାନ୍ତୁ ।

## (୧୬) ଅନ୍ତଃସତ୍ତ୍ୱାର ଗର୍ଭସ୍ଥ ସନ୍ତାନ ପୁଅ କି ଝିଅ ହେବ (ଖନାର ଗଣନା ପଦ୍ଧତି)

**ଖନା ବଚନ:-**

ବାଣ ପିଠିରେ ବାଣ ପେଟ ଛୁଆ ଗଣି ଆଣ
ନାମ, ମାସ କରି ଯୋଗ କର ତାକୁ ଆଠ ଭାଗ
ଭାଗଶେଷ ଏକ, ତିନି । ଗର୍ଭିଣୀର ପୁତ୍ର ଜାଣି ।
ଛ, ଚାରି ଅବା ଦୁଇ, କନ୍ୟା ଅବଶ୍ୟ ଜନ୍ମାଇ ।
ରହିଲେ ଶୁନ ବା ସାତ, ନିଶ୍ଚେ ହୁଏ ଗର୍ଭପାତ ।

**ଖନା ବଚନର ଅର୍ଥ :-**

ବାଣ ଶବ୍ଦର ଅର୍ଥ, ସଂଖ୍ୟା, ଏଠାରେ ସଂଖ୍ୟା ୫ ପିଠିରେ ୫ ଅର୍ଥାତ୍ ୫୫ । ଅନ୍ତଃସତ୍ତ୍ୱାର ନାମ ସଂଖ୍ୟା ଓ ଗର୍ଭ ଯେତେ ମାସର ହୋଇଥିବ, ତାର ସଂଖ୍ୟାକୁ ୫୫ ସହିତ ଯୋଗ କର । ମୋଟ ସଂଖ୍ୟା ଯେତେ ହେଲା ତାକୁ ୮ ଦ୍ୱାରା ଭାଗ କର । ଶେଷ ଯଦି ୧, ୩ ବା ୫ ରହେ, ତେବେ ପୁତ୍ର ସନ୍ତାନ ହେବ । ୨,୪ ୬ ରହିଲେ କନ୍ୟାଜାତ ହେବ । ୦ (=ଶୂନ) ବା ୭ ରହିଲେ ଗର୍ଭପାତ ଘଟିବ ।

ଏହି ଅର୍ଥକୁ ଧରି ପୁରୋହିତକୁଳ ଠାରୁ ଆରମ୍ଭ କରି ପୂର୍ବକାଳର ଲୋକମାନେ ଗର୍ଭସ୍ଥ ସନ୍ତାନ ପୁଅ କି ଝିଅ ହେବ ତାହା ଗଣନା ଦ୍ୱାରା ନିଶ୍ଚିତ କରି ଆସୁଛନ୍ତି ଏବଂ

କିମ୍ବଦନ୍ତୀ ସମ୍ପୂର୍ଣ୍ଣ ଖନାର ବଚନ ଯେ ଭୁଲ ହେବାର ନୁହେଁ ଏଇ ବିଶ୍ୱାସ ନେଇ ଗଣନା କରାଯାଉଛି । ଫଳାଫଳ ମିଳିଗଲେ ଖନାର ନାମ ରଟେ । ନ ମିଳିଲେ ଗଣନାକାରୀର ଭୁଲ ବୋଲି ପ୍ରଚାରିତ ହୁଏ ।

ହିସାବ ନିକାଶ କଲେ ଏହାର ମର୍ମ ଭଲ ଭାବରେ ବୁଝିହୁଏ ।

ଧରାଯାଉ ଅନ୍ତଃସତ୍ତ୍ୱାର ନାମ 'ପ୍ରଣତି' । ଗଣନା ସମୟରେ 'ପ୍ରଣତି' ୭ ମାସର ଗର୍ଭବତୀ । ଏଥର ଅଙ୍କଟି କଷିବା -

୫୫ - ୫ ପିଠିରେ ୫ ସଂଖ୍ୟା ଅର୍ଥାତ୍ ୫୫

+ ୩ - ଗର୍ଭବତୀର ନାମର ଅକ୍ଷର ମୋଟ ସଂଖ୍ୟା

+ ୭ - ଗର୍ଭ ମାସର ସଂଖ୍ୟା ।

୬୫ ମୋଟ ସଂଖ୍ୟା

୬୫ କୁ ୮ ଦ୍ୱାରା ଭାଗ କଲେ ଭାଗଶେଷ ୧ ରହିବ । ଅର୍ଥାତ୍ ପ୍ରଣତିର ପୁଅ ଜନ୍ମିବ । ପୁଣି ପ୍ରଣତି ଯଦି ଗଣନା ସମୟରେ ୮ ମାସର ଅନ୍ତଃସତ୍ତ୍ୱା ହୋଇଥାଏ, ତେବେ ଏହା ଉତ୍ତର ନିମ୍ନୋକ୍ତ ଅଙ୍କରୁ ବାହାରିବ ।

୫୫ - ୫ ପିଠିରେ ୫ ସଂଖ୍ୟା ଅର୍ଥାତ୍ ୫୫

+ ୩ - ଭର୍ଗବତୀର ନାମର ମୋଟ ଅକ୍ଷର ସଂଖ୍ୟ ।

+ ୮ - ଗର୍ଭ ମାସର ସଂଖ୍ୟା ।

୬୬ - ମୋଟ ସଂଖ୍ୟା ।

୬୬ କୁ ୮ ଦ୍ୱାରା ଭାଗ କଲେ ଭାଗଶେଷ ୨ ରହିବ ଅର୍ଥାତ୍ 'ପ୍ରଣତି'ର କନ୍ୟା ଜନ୍ମିବ ।

ସେହିପରି 'ପ୍ରଣତି' ଗଣନା ସମୟରେ ଯଦି ୬ ମାସର ଅନ୍ତଃସତ୍ତ୍ୱା ହୋଇଥାଏ, ତେବେ ନିମ୍ନୋକ୍ତ ଅଙ୍କକଷାରୁ ଏହାର ଉତ୍ତର ମିଳିବ ।

୫୫ - ୫ ପିଠିରେ ୫ ସଂଖ୍ୟା, ଅର୍ଥାତ୍ ୫୫

+ ୩ - ଗର୍ଭବତୀର ନାମର ମୋଟ ଅକ୍ଷର ସଂଖ୍ୟ ।

+ ୬ - ଗର୍ଭ ମାସର ସଂଖ୍ୟ ।

୬୪ ମୋଟ ସଂଖ୍ୟା

୬୪ କୁ ୮ ଦ୍ୱାରା ଭାଗ କଲେ ଭାଗଶେଷ ଶୂନ୍ୟ ରହିବ ଅର୍ଥାତ୍ ପ୍ରଣତିର ଗର୍ଭପାତ ଘଟିବ ।

ଖନା ବଚନରେ ନିର୍ଦ୍ଦେଶାନୁଯାୟୀ ଆମେ ସ୍ପଷ୍ଟ ତିନୋଟି ଉତ୍ତର ପାଇଲୁ - ପୁଅହେବ, ଝିଅ ହେବ, ଗର୍ଭପାତ ହେବ । ଗୋଟିଏ ଝିଅ ପ୍ରଶ୍ନ ଷେତ୍ରରେ ତିନିଥର ତିନିରକମର ଉତ୍ତର ବାହାରିଲା, କେଉଁ ଉତ୍ତରଟିକୁ ଆମେ ଗ୍ରହଣ କରିବୁ ? ଏଠାରେ ଉତ୍ତରଟି ଦ୍ୱିଧାହୀନ - ଯେଉଁ ଗର୍ଭମାସରେ ଗଣନା କରାଗଲା ସେହି ଗର୍ଭମାସର ସଂଖ୍ୟା ଧରି ଫଳାଫଳ ନିଶ୍ଚିତ ।

ବିଭିନ୍ନ ଗର୍ଭମାସରେ ଗର୍ଭଧାରଣର ଫଳ ବିଭିନ୍ନ ରକମର ହୋଇପାରେ, ସେ କ୍ଷେତ୍ରରେ ଉଲ୍ଲିଖିତ ତିନୋଟିରୁ କେଉଁଟିକୁ ଧରିବ ?

ଖନା ଯଦି ବଞ୍ଚି ଥାଆନ୍ତେ ତାହାହେଲେ ଉତ୍ତରଟି ତାଙ୍କଠାରୁ ଜଣା ପଡ଼ିଥାଆନ୍ତା । ବର୍ତ୍ତମାନ ଆମେ ସେ ସୁଯୋଗରୁ ବଞ୍ଚିତ । ଖନା ବଚନକୁ ଧରି ଯେଉଁମାନେ ଗଣନା କରନ୍ତି, ସେମାନଙ୍କୁ ପଚାରିଲେ ସେମାନେ ସମସ୍ତେ 'ଢଁ', ଆଉ 'ହଁ' ଶବ୍ଦ ମୁହଁରେ ଉଚ୍ଚାରଣ କରି ଦକ୍ଷିଣ ଭାରତୀୟ ରୀତିରେ ଦୁଇ ଆଡ଼କୁ ମୁଣ୍ଡ ହଲାନ୍ତି ଓ ସ୍ଥାନ ତ୍ୟାଗ କରନ୍ତି । ଖନା ବଚନର ବିଶ୍ୱାସୀ ରାଜନୀତିଜ୍ଞଙ୍କୁ ତାଙ୍କ ପଦବୀରୁ ହଟାଇବା ପାଇଁ ଇଚ୍ଛୁକ ବିରୋଧୀମାନେ 'ଟୁଟକା' ହିସାବରେ ଏଇ ପ୍ରଶ୍ନଟି ସେମାନଙ୍କୁ ପଚାରି ପାରନ୍ତି ।

ଅପଚ୍ଛ ସେବାଚାରି, ନାହିଁ ସନ୍ଧ (=ସୁଗନ୍ଧ)
ବାଂଝ, ଧୋବା, ତେଲି, ମାକୁନ୍ଧ (=ମାକୁନ୍ଧା) ।

ବାଂଝ, ଧୋବା, ତେଲି ଓ ମାକୁନ୍ଧା ଏହିଚାରିଙ୍କୁ ନେଇ ବହୁ ବଚନ ଓ ଲୋକବିଶ୍ୱାସ । ଅନେକ କୁସଂସ୍କାର ପୂର୍ବେ ପ୍ରବଳ ଭାବରେ ଥିଲା, ବର୍ତ୍ତମାନ ବି ଆମସମାଜ ଏହି ଲୋକବିଶ୍ୱାସ ତଥା କୁସଂସ୍କାରରୁ ସମ୍ପୂର୍ଣ୍ଣ ଭାବେ ମୁକ୍ତ ହୋଇନାହିଁ ।

ଦନାଇ ବଚନ, ଖନାବଚନ, ଡାକରଷି ବଚନମାନଙ୍କରେ ଧୋବା, ତେଲି, ମାକୁନ୍ଧାମାନଙ୍କୁ ଅପଚ୍ଛ ବୋଲି କୁହାଯାଇଛି । ବାଂଝ ମହିଳାମାନଙ୍କ ଉପଲକ୍ଷ୍ୟରେ ଏକାଧିକ ବଚନ ରହିଛି ।

ବୈଦିକ ସମାଜରେ ଜାତିପତିର ବୈଷମ୍ୟ ତିଆରି କରିବା ପାଇଁ କିଛି କିଛି ପେଷା ଆମ ସମାଜରେ ଗୃହୀତ ହୋଇଛି । ସମାଜର କିଛି ମନୁଷ୍ୟ କେତୋଟି ପେଷାର ମନୁଷ୍ୟଙ୍କୁ 'ଅପଚ୍ଛ' ବୋଲି ଚିହ୍ନିତ କରିଛନ୍ତି । ଏହି ଘୃଣ୍ୟ କାର୍ଯ୍ୟର ଫଳ ଦୀର୍ଘ ସମୟ ଧରି ଭୋଗ କରିଛନ୍ତି ଧୋବା ଓ ତେଲି ପରି ପେଷାର ମନୁଷ୍ୟ । କୌଣସି କାମରେ ବାହାରିଲେ ଅର୍ଥାତ୍ ଅନୁକୂଳ କରି ବାହାରିଲା ବେଳେ ଧୋବା ଓ ତେଲିମାନଙ୍କୁ ଦେଖିଲେ କାମଟି ପଣ୍ଡ ହେବ - ଏହି ଧାରଣା ସ୍ପଷ୍ଟଭାବରେ କୁସଂସ୍କାର ।

ଯାତ୍ରାପଥରେ ବାଂଝ ଓ ମାକୁନ୍ଦା ଦର୍ଶନ ଅଶୁଭ ବୋଲି ଯେଉଁ ସଂସ୍କାର ପ୍ରଚଳିତ ଅଛି, ତା ମଧ୍ୟ କୁସଂସ୍କାର ଛଡ଼ା କିଛି ନୁହେଁ ।

ବାଂଝ ବା ବନ୍ଧ୍ୟା ନାରୀ ଅର୍ଥାତ୍ ବିବାହର କେତେ ବର୍ଷ ପରେ ମା' ନ ହୋଇ ପାରିବା ନାରୀର କୌଣସି ଶୁଭ କର୍ମରେ ଉପସ୍ଥିତିକୁ ଆମ ସମାଜ ଭଲ ଚକ୍ଷୁରେ ଦେଖେନାହିଁ ।

ଆମର ଏହି ପୁରୁଷତାନ୍ତ୍ରିକ ସମାଜରେ ସନ୍ତାନ ଜନ୍ମଦେଇ ନ ପାରିଲେ ଏକମାତ୍ର ନାଟୀକୁହିଁ ଏଥିପାଇଁ ଦାୟୀ କରାଯାଏ । କିନ୍ତୁ ପୁରୁଷକୁ ନୁହେଁ । ପୁରୁଷକୁ 'ବନ୍ଧ' ହିସାବରେ ସମାଜ ଘୋଷଣା କରେ ନାହିଁ । ଅଥଚ ସନ୍ତାନ ନ ହେବାରୁ ନାରୀ ଅଥବା ପୁରୁଷ ଅଥବା ଦୁହିଁଙ୍କର କୌଣସି ଶାରୀରିକ ଅକ୍ଷମତା ଦାୟୀ ହୋଇ ପାରେ, ଏହି କାରଣରୁ ସନ୍ତାନ ନ ହେଲେ ବା କ'ଣ ଯାଏ ଆସେ । ପୂର୍ବେ ମାନବ ପ୍ରଜାତିର ରକ୍ଷା ନିମିତ୍ତ ବଂଶ ବୃଦ୍ଧିର ଜରୁରୀ ଆବଶ୍ୟକତା ଥିଲା, କିନ୍ତୁ ବର୍ତ୍ତମାନ ପରିବାର ନିୟନ୍ତ୍ରଣ ଯେତେବେଳେ ଜରୁରୀ, ସେତେବେଳେ ଯେଉଁ ମାନେ ଶାରୀରିକ ଅକ୍ଷମତା ଯୋଗୁଁ ବଂଶ ବିସ୍ତାର କରୁନାହାନ୍ତି, ସେମାନେ ବାସ୍ତବିକ ବର୍ତ୍ତମାନ ସମାଜର ମଙ୍ଗଳ କରୁଛନ୍ତି । ଏହି ମଙ୍ଗଳକାରୀମାନଙ୍କୁ ଅମଙ୍ଗଳର କାରଣ ହିସାବରେ ଚିହ୍ନିତ କରିବା ଏକ ବଡ଼ଧରଣର 'କୁ ସଂସ୍କାର' ।

ଏହି ଶରୀର ବିଜ୍ଞାନର ସଚେତନତାର ଅଭାବହିଁ ହିନ୍ଦୁ ଧର୍ମର ଆଇନ ରଚୟିତା 'ମନୁ' ବନ୍ଧ୍ୟା ନାରୀର ସ୍ୱାମୀକୁ ପୁଣି ବିବାହ କରିବାର ବିଧାନ ଦେଇଛି । ଏହି ସଚେତନାର ଅଭାବହିଁ ବନ୍ଧ୍ୟାନାରୀ ନାନା ଅବତାର, ପୀର ଇତ୍ୟାଦିଙ୍କର ଶରଣାପନ୍ନ ହୋଇ ମାନସିକ କରନ୍ତି, ବଳିଦିଅନ୍ତି, ପୂଜାକରନ୍ତି, ଡ଼େଉଁରିଆ ପିନ୍ଧନ୍ତି, ଯଜ୍ଞ କରନ୍ତି, ଆହୁରି କେତେକଣ । ସେମାନେ ଭାବି ନିଅନ୍ତି ବନ୍ଧ୍ୟା ଜୀବନର ଅଭିଶାପରୁ ମୁକ୍ତି ପାଇବାର ଏଗୁଡ଼ିକ ଗୋଟିଏ ଗୋଟିଏ ପଥ । ଏହି ସମସ୍ତ ଅଜ୍ଞାନର ମୂଳୋତ୍ପାଟନ ଲାଗି ସନ୍ତାନ ନ ହେବାର ପ୍ରକୃତ କାରଣ ଗୁଡ଼ିକ ଜାଣିବା ପ୍ରୟୋଜନ । ଏ ବିଷୟରେ ଗୋଟିଏ ସ୍ୱଷ୍ଟ ଧାରଣା ସୃଷ୍ଟି ହେଲେ ସନ୍ତାନ କାମନା ଲାଗି ପୂଜା, ବ୍ରତ, ଉପବାସ, କିମ୍ବା ବାବାଜିମାନଙ୍କ ପାଖକୁ ଦୌଡ଼ା ଦୌଡ଼ି କରିବାରେ ଅହେତୁକ ଅର୍ଥ ଓ ସମୟର ଅପଚୟ କରିବାକୁ ହେବ ନାହିଁ ।

ପୁରୁଷ ଯେଉଁ ସବୁ କାରଣରୁ ସନ୍ତାନ ଜନ୍ମଦେଇ ପାରେ ନାହିଁ, ତନ୍ମଧ୍ୟରୁ **ପ୍ରଥମତଃ- ଧ୍ୱଜଭଙ୍ଗ ।** ବହୁକାରଣରୁ ଏହା ହୋଇପାରେ, ଯେପରିକି ମାନସିକ କାରଣରୁ ଅବଚେତନ ମନରେ ସହବାସ ପ୍ରତି ଭୀତି, ବୀର୍ଯ୍ୟକ୍ଷୟରେ ଶରୀର କ୍ଷୟ ଭଳି ଭୁଲ ଧାରଣା, ଯୌନରୋଗରେ ଲିଙ୍ଗ ସଂଶ୍ଳିଷ୍ଟ ସ୍ନାୟୁର କ୍ଷତି ବା ସଂଶ୍ଳିଷ୍ଟ ଧମନୀର

ସ୍ଥାୟୀ ପରିବର୍ତ୍ତନ, ମଧୁମେହ, ଅଣ୍ଡାରେ ଆଘାତ ଇତ୍ୟାଦି । **ଦ୍ୱିତୀୟତଃ** - ଅଣ୍ଡ କୋଷଠାରୁ ଜନନକୋଷ ଠିକ ଭାବରେ ଗଠିତ ନ ହେବା । **ତୃତୀୟତଃ** - କୌଣସି କାରଣରୁ ଅଣ୍ଡକୋଷର ବିଶେଷ କୋଷ ଗୁଡ଼ିକର ଅଭାବ ।

**ଚତୁର୍ଥତଃ** - ଫଲିକଲ ଷ୍ଟିମୁଲେଟିଂ ହରମୋନ, (F.S.H.) ଲୁଟିନାଇଜିଂ ହରମୋନ (L.H.) ଇତ୍ୟାଦିର ଅଭାବରୁ ପ୍ରଜନନ କୋଷ ସମ୍ପୂର୍ଣ୍ଣ ବିକଶିତ ନହେବା ।
**ପଞ୍ଚମତଃ** - ମସ୍ତିଷ୍କ ପିଟିଉଟାରି ଗ୍ରନ୍ଥି ଠିକ ଭାବରେ କାମ ନ କରିବା ଯୋଗୁଁ ଏହି ଗ୍ରନ୍ଥିରୁ ଗୋନା ଡ୍ରୋଟ୍ରପିକ୍ ହରମୋନର ନିଃସରଣ ଠିକ ଭାବରେ ନ ହେବା ।
**ଷଷ୍ଠତଃ** - ଯୌନରୋଗ ବା ଅନ୍ୟ କୌଣସି ରୋଗର ଭାଇରାସ ସଂକ୍ରମଣ ଯୋଗୁଁ ଅଣ୍ଡକୋଷ ବା ଜନନ କୋଷ କ୍ଷତିଗ୍ରସ୍ତ ହେଲେ ।
**ସପ୍ତମତଃ** - ପରମାଣୁ ଶକ୍ତି କେନ୍ଦ୍ରରେ ବା X-Ray କରିବା କାର୍ଯ୍ୟରେ ଜଡ଼ିତ ଥିଲେ ଅଣ୍ଡକୋଷ ବା ଜନନ କୋଷ କ୍ଷତିଗ୍ରସ୍ତ ହୋଇପାରେ ।
**ଅଷ୍ଟମତଃ** - ଅଣ୍ଡକୋଷରେ ଆଘାତ ପ୍ରାପ୍ତ ।
**ନବମତଃ** - ମାତୃଗର୍ଭରେ ଶିଶୁପୁତ୍ରର ଅଣ୍ଡକୋଷ ଥାଏ ତଳପେଟରେ । ଜନ୍ମ ସମୟ ନିକଟର ହେଲେ ଗର୍ଭସ୍ଥ ଶିଶୁର ଅଣ୍ଡକୋଷ ସ୍ୱସ୍ଥାନକୁ ଓହ୍ଲାଇ ଆସେ । ଏହା ସାଧାରଣ ନିୟମ ହେଲେ ମଧ କେବେ କେବେ ଶିଶୁର ଅଣ୍ଡକୋଷ ସ୍ୱ ସ୍ଥାନକୁ ନ ଆସି ପେଟ ମଧରେ ହିଁ ରହିଯାଏ । **ଦଶମତଃ** - ପୁଂଜନନ କୋଷ ବା ଶୁକ୍ର କୋଷ ଯଦି ବୀର୍ଯ୍ୟରେ ସ୍ୱାଭାବିକ ତୁଳନାରେ କମ ଥାଏ ।

ଏହି ଧରଣର ବିଭିନ୍ନ କାରଣରୁ ସନ୍ତାନ ଜନ୍ମଦେବାରେ ପୁରୁଷ ଅକ୍ଷମ ହୁଏ । ସନ୍ତାନ ଚାହିଁଲେ କିମ୍ବା ସନ୍ତାନ ନ ହେଉଥିଲେ ବିଶେଷଜ୍ଞ ଚିକିତ୍ସକଙ୍କର ପରାମର୍ଶ ନେବା ଉଚିତ । ପ୍ରୟୋଜନ ଅନୁଯାୟୀ ଚିକିତ୍ସା କରିବ । ଏବେ ବ୍ରତ, ଉପବାସ, କିମ୍ବା ପୂଜା ଅର୍ଚ୍ଚନାରେ ଲିପ୍ତ ରହିଲେ ବି ସନ୍ତାନ ଲାଭ ହୋଇପାରିବ ନାହିଁ ।

ନାରୀ ଯେଉଁସବୁ କାରଣରୁ ସନ୍ତାନ ପ୍ରସବ କରି ପାରେ ନାହିଁ ସେଗୁଡ଼ିକ ହେଲା -(୧) ଜରାୟୁର ଗଠନ ତ୍ରୁଟିପୂର୍ଣ୍ଣ ।

(୨) ଡ଼ିମ୍ବାଶୟ ଠାରୁ ଡ଼ିମ୍ବକୋଷ ଫେଲୋପିଅନ ଟିଉବ ଦେଇ ଜରାୟୁକୁ ଆସେ । ଆଘାତ, ଜୀବାଣୁ ସଂକ୍ରମଣ ବା ଅନ୍ୟକୌଣସି କାରଣରୁ ଫେଲୋ ପିଅନ ଟିଉବଟି ରୁଦ୍ଧ ହୋଇ ଗଲେ ଡ଼ିମ୍ବକୋଷ ଆଉ ଜରାୟୁକୁ ଆସି ପାରେ ନାହିଁ । ଫଳରେ ସହବାସ ପରେ ଡ଼ିମ୍ବକୋଷ ଜରାୟୁକୁ ଆସି ପୁଂଜନନ କୋଷ ସହ ମିଳିତ ହୋଇ ସନ୍ତାନ ଉତ୍ପାଦନ କରିପାରେ ନାହିଁ ।

(୩) ଗର୍ଭପାତ ପରେ ଜୀବାଣୁ ସଂକ୍ରମଣ ଯୋଗୁଁ ଫେଲୋପିଅନ ଟିଉବ ରୁଦ୍ଧ ହୋଇଗଲେ ଡ଼ିମ୍ବାଶୟ ଠାରୁ ଡ଼ିମ୍ବକୋଷ ଜରାୟୁକୁ ଆସିପାରେ ନାହିଁ ।

(୪) ଅନେକ ସମୟରେ ଅବାଞ୍ଛିତ ମାତୃତ୍ୱରୁ ବଞ୍ଚିବା ଲାଗି, ଲୋକଲଜ୍ଜାରୁ ରକ୍ଷାପାଇବା ଲାଗି ଗୋପନରେ ଡାକ୍ତରମାନଙ୍କ ସାହାଯ୍ୟ ନେବାକୁ ଯାଇ ଡାକ୍ତରଙ୍କ ଭୁଲକ୍ରମେ ସ୍ଥାୟୀଭାବେ ମା'ହେବାର କ୍ଷମତା ହରାଇ ବସେ ।

(୫) ଜରାୟୁରେ ଟିଉମାର ହେଲେ ।

(୬) ଜରାୟୁରେ ଯକ୍ଷ୍ମା ହେଲେ ।

(୭) ଜରାୟୁ ମୁହଁରେ ଗଠନଗତ ତ୍ରୁଟି ଥିଲେ ।

(୮) ଜରାୟୁରେ କ୍ଷତ ବା ଜୀବାଣୁ ସଂକ୍ରମଣ ହେଲେ ।

(୯) ଗର୍ଭନିୟନ୍ତ୍ରଣ ଲାଗି ଔଷଧକୁ କ୍ରମାଗତ ଭାବରେ ଦୀର୍ଘଦିନ ଖାଇଲେ ।

(୧୦) କେବେ କେବେ ମାନସିକ ଉଦ୍‌ବେଗ ବା ଅସ୍ଥିରତା ଯୋଗୁଁ ଫେଲୋପିଅନ ଟିଉବ ବା ଜରାୟୁର ମୁହଁ ସଂକୁଚିତ ହୋଇଯାଏ । ଫଳରେ ବୀର୍ଯ୍ୟ ଜରାୟୁରେ ପ୍ରବେଶ କରିପାରେ ନାହିଁ ବା ଡ଼ିମ୍ବକୋଷ ବୀର୍ଯ୍ୟ ସହ ମିଳିତ ହୋଇ ପାରେ ନାହିଁ । ବେଳେ ବେଳେ ଦେଖାଯାଏ ଯେ ଦମ୍ପତି ପୋଷ୍ୟ ସନ୍ତାନ ଗ୍ରହଣ କଲାପରେ ମାନସିକ ଉଦ୍‌ବେଗ ହ୍ରାସ ପାଏ, ଫଳରେ ସେ ମଧ ମା' ହୋଇ ପାରିଛି । ଏହାର ଅର୍ଥ ନୁହେଁ ଯେ ନାରୀ ସହବାସରେ ଇଚ୍ଛୁକ ନ ହେଲେ ସନ୍ତାନ ହୁଏ ନାହିଁ । କାରଣ ଅନିଚ୍ଛୁକ ନାରୀକୁ ଧର୍ଷଣ କଲେ ସେ ଗର୍ଭବତୀ ହୋଇଥାଏ ।

ଯେତେବେଳେ ଅଲୌକିକ ଶକ୍ତି ସାଧକ, ସାଧୁ, ବାବାଜୀ, ମହାତ୍ମା ପୁରୁଷ କୌଣସି ନାରୀକୁ ଗର୍ଭବତୀ କରେ, ସେତେବେଳେ ସେ କୌଣସି ଅଲୌକିକ କ୍ଷମତାର ସାହାଯ୍ୟ ନିଏ ନାହିଁ । ସହବାସର ସାହାଯ୍ୟରେ ହିଁ ଗର୍ଭଉତ୍ପାଦନ କରିଥାଏ । ମା' ହୋଇ ବାଂଝ ହେବା ବଦନାମରୁ ବଞ୍ଚିବା ଲାଗି ନାରୀ ମନୋନୀତ ସେହିଭଳି ସାଧୁ ସହ ସହବାସ କରି ନୀରବ ରୁହେ । ଫଳରେ ସାଧୁ, ବାବାଜୀଙ୍କର ଅଲୌକିକ କ୍ଷମତାର ପ୍ରଚାର ବଢ଼ି ଚାଲେ ।

ନିଶଦାଢ଼ି ବାହାରିବା ବୟସରେ ଯଦି ନିଶ, ଦାଢ଼ି ନ ଉଠେ, ତାକୁ 'ମାକୁନ୍ଦା' କହନ୍ତି । ଲୋକ ବିଶ୍ୱାସ ଯେ ମାକୁନ୍ଦାର ମୁହଁ ଚାହିଁ ଯାତ୍ରା କଲେ କରଣୀୟ ସମସ୍ତ କାର୍ଯ୍ୟ ପଣ୍ଡ ହୁଏ । ଏହି ବିଶ୍ୱାସ ଯେ ସମ୍ପୂର୍ଣ୍ଣ ଭାବେ ଏକ ଭୁଲ ଧାରଣା ଉପରେ ପର୍ଯ୍ୟବସିତ, ତାହାର ଜ୍ୱଳନ୍ତ ଉଦାହରଣ ଜାପାନ ଶିଳ୍ପ, ବାଣିଜ୍ୟ, ଅର୍ଥନୀତିରେ

ପୃଥିବୀରେ ଅଗ୍ରଗାମୀ ଦେଶ ଜାପାନ । ସମସ୍ତ କର୍ମରେ ସଫଳତା ଅର୍ଜନ କରିଛି । ମାତ୍ର ଏଦେଶର ସମସ୍ତ ପୁରୁଷ ମାକୁନ୍ଦା । ଏମାନେ ପ୍ରଭାତରୁ ଶଯ୍ୟାତ୍ୟାଗ ଠାରୁ ଆରମ୍ଭ କରି ରାତ୍ରିରେ ଶଯ୍ୟା ଗ୍ରହଣ ପର୍ଯ୍ୟନ୍ତ କେବଳ ମାକୁନ୍ଦା ମାନଙ୍କ ସଂସ୍ପର୍ଶରେ ଆସୁଛନ୍ତି । ଯାତ୍ରାପଥରେ ଦଳଦଳ ମାକୁନ୍ଦା ଦର୍ଶନ ପରେ ମଧ କେବଳ ସଫଳତା ଆହରଣ କରୁଛନ୍ତି । ଏ ଦେଶରେ ନିଶ, ଦାଢ଼ି ଥିବା ପୁରୁଷ ଯେ କେବଳ ମୁହଁ ଦେଖିବାର ଯୋଗ୍ୟ ଏପରି ଅନ୍ଧବିଶ୍ୱାସ ନାହିଁ । ଏହି ଅନ୍ଧବିଶ୍ୱାସ ଥିଲେ ଆମ ଦେଶରେ ହୀନ ମନ୍ୟତାର ଦୁର୍ଦ୍ଦଶା ଏମାନଙ୍କୁ ମଧ ଭୋଗ କରିବାକୁ ପଡ଼ନ୍ତା ।

ସପ୍ରାଚୀନ ସଭ୍ୟତା ପାଇଁ ଖ୍ୟାତ ଓ ବର୍ତ୍ତମାନର ଅଗ୍ରଣୀ ଦେଶ ଚୀନ ଠାରୁ ଆରମ୍ଭ କରି ମଙ୍ଗୋଲିଆ ପର୍ଯ୍ୟନ୍ତ ଦେଶର ପୁରୁଷ ମାନଙ୍କର ନିଶ, ଦାଢ଼ି ବିହୀନତା କେବେ ହେଲେ କାପୁରୁଷତାର ଲକ୍ଷଣ ହୋଇ ପ୍ରତିବନ୍ଧକ ସୃଷ୍ଟି କରି ନାହିଁ ।

କାପୁରୁଷ କଥାଟି ଏଥିପାଇଁ ଉଲ୍ଲେଖନୀୟ ଯେ ଆମ ଦେଶର ଅନେକ ମାକୁନ୍ଦା ଯୁବକ ବିବାହ କରିବେକି ନାହିଁ ? ବିବାହ ପରେ ପିତା ହୋଇ ପାରିବେ କି ନାହିଁ ? ଏପରି ପ୍ରଶ୍ନର ସମ୍ମୁଖୀନ ହୋଇଥାନ୍ତି । କାରଣ ସେମାନଙ୍କର ବଦ୍ଧ ଧାରଣା ଯେ 'ମାକୁନ୍ଦା', କା- ପୁରୁଷ ଓ ପୁରୁଷତ୍ୱହୀନତା ସମାର୍ଥକ ଶବ୍ଦ ।

ଦୃଷ୍ଟାନ୍ତ ପାଇଁ ଚୀନ ଦେଶର କଥା ନିଆଯାଉ । ଜନସଂଖ୍ୟାରେ ପୃଥିବୀର ଏହା ଏକମାତ୍ର ଅଗ୍ରଣୀ ଦେଶ । ଏ ଦେଶର ମାକୁନ୍ଦା ମାନେ ଦେଶଟାକୁ ଜନସଂଖ୍ୟାରେ ଅଗ୍ରଣୀ କରିଛନ୍ତି । ଆମ ଦେଶର ଗୁର୍ଖା ରେଜିମେଣ୍ଟ କହନ୍ତୁ ବା ଗୁର୍ଖା ଦରୁଓ୍ୱାନ କହନ୍ତୁ, ତାଙ୍କ ପରି ସାହସୀ ପୁରୁଷ ମିଳିବା ଦୁରୂହ । ନିଶଦାଢ଼ି ଥିବା ଆମ ସମାଜର ପୁରୁଷ ମାନଙ୍କୁ ତାଙ୍କ ସହିତ ତୁଳନା କରିବା ହାସ୍ୟାସ୍ପଦ । ନିଶଦାଢ଼ି ଉଠିବା ନ ଉଠିବାର କାରଣ ହରମୋନ ନିଃସରଣ ଓ ବଂଶାନୁଗତିକତା ଉପରେ ନିର୍ଭର ଶୀଳ । ଆମ ମଧରେ ଏପରି ଏକ ଉଦ୍ଭଟ ଧାରଣା ନିହିତ ଯେ ଲୋମଶ ଯୁବକର ପୌରୁଷ ଓ ଶକ୍ତି ବେଶି । ପୌରୁଷର ଅର୍ଥ ଯଦି ବ୍ୟକ୍ତିତ୍ୱ ହୁଏ, ତେବେ ଶକ୍ତିମାନ ଗୁଣ୍ଡା ଓ ବଦମାସମାନେ ପୌରୁଷ ଶୂନ୍ୟ ବ୍ୟକ୍ତିତ୍ୱ ହୀନ ପଶୁ ଛଡ଼ା ଆଉ କିଛି ନୁହଁନ୍ତି । ଆଜିକାଲି କୌଣସି ଗୁଣ୍ଡା, ବଦମାସ ରାଜନୈତିକ ଆଶ୍ରୟ ଛଡ଼ା ତିଷ୍ଠିବା ଅସମ୍ଭବ । ରାଜନୀତିଜ୍ଞ ମାନେ ଯେପରି ନଚାନ୍ତି ସେପରି ନାଚନ୍ତି । ବିଶ୍ୱର ସମସ୍ତ ଭାରୋତ୍ତଳନକାରୀ, ମଲ୍ଲଯୋଦ୍ଧା, ମୁଷ୍ଟିଯୋଦ୍ଧା କେହି ଲୋମଶ ନୁହଁନ୍ତି । ତେଣୁ ଏପରି ଧାରଣାକୁ ପରିତ୍ୟାଗ କରିବା ଛଡ଼ା ଅନ୍ୟ ଉପାୟ ନାହିଁ ।

ତେଣୁ ବାଂଝ, ଧୋବା, ତେଲି ଓ ମାକୁନ୍ଦା ଏଇଚାରିଙ୍କୁ ଅପଯଶ ବୋଲି ଜ୍ଞାନ କରିବା ବୋକାମିର ପରିଚୟ । ପୁଣି ଏପରି କଥନ ଅମାନବିକତା । ଭାବିବା ଉଚିତ ଯେ ଯେଉଁମାନଙ୍କୁ ଅପଯଶ ବୋଲି ଚିହ୍ନଟ କରାଯାଉଛି, ସେମାନଙ୍କର ବଞ୍ଚିରହିବାର ଆନନ୍ଦକୁ କୁସଂସ୍କାରାଚ୍ଛନ୍ନ ଚିନ୍ତାର ବ୍ଲଟିଂ କାଗଜ ଦ୍ୱାରା କାଳିକୁ ଶୋଷିନେବା ଅନ୍ୟାୟ । ଆପଣଙ୍କର ଯଦି ସେପରି ଅବସ୍ଥା ହୁଅନ୍ତା, ତାହାହେଲେ କଣ କରନ୍ତେ -ଚିନ୍ତା କରନ୍ତୁ ।

ଲୋକବିଶ୍ୱାସ ଯେ ଅନ୍ଧ ବିଶ୍ୱାସ ଏବଂ ଏପରି ବିଶ୍ୱାସ ଯେ ଅତ୍ୟନ୍ତ ଖରାପ ଏହା ନିଃସନ୍ଦେହ । ଏହାର ସ୍ରଷ୍ଟା ଖନା, ଡାକରଷି ବା ଦନେଇ ନାମକ କୌଣସି କିମ୍ବଦନ୍ତୀ ପୁରୁଷ ଯେ ହୁଅନ୍ତୁ ପଛେ ।

*(ଏ ସମ୍ପର୍କରେ ଆହୁରି ଦୃଷ୍ଟାନ୍ତ ସହ ଆଲୋଚନା ୬ଷ୍ଠ ଖଣ୍ଡରେ ସନ୍ନିବେଶିତ ହେବ) ।*

## କୃତାଞ୍ଜଳି

ବୟୋବୃଦ୍ଧ ପ୍ରଥିତନାମା ସାରସ୍ୱତ ସାଧକ ସମାଲୋଚକ ପ୍ରବୁଦ୍ଧ ପ୍ରବକ୍ତା ବାଗ୍ମୀ ଉତ୍କଳ ବାଚସ୍ପତି ପ୍ରଫେସର ଗୌରୀକୁମାର ବ୍ରହ୍ମା ଏହି ଗ୍ରନ୍ଥର ଦୀର୍ଘ **ଭୂମିକା** ଲେଖି ମୋତେ ଅନୁଗୃହିତ କରିଛନ୍ତି । ମୋର ଅନ୍ତରଙ୍ଗ ବାଲ୍ୟବନ୍ଧୁ, ନାଟ୍ୟକାର, ନିର୍ଦ୍ଦେଶକ, ଅବସରପ୍ରାପ୍ତ କେନ୍ଦ୍ର ପୋଲିସ ପ୍ରଶାସନିକ ଅଫିସର, କଳାବିକାଶ କେନ୍ଦ୍ର, କଟକର ସାଧାରଣ ସଂପାଦକ ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି ଏହି ଗ୍ରନ୍ଥର ଅଭିମତରେ **ଟେକାଟେକି ନାହିଁ** ଲେଖି ଯେଉଁ ଅମୂଲ୍ୟ ରତ୍ନ ଓ ରସର ମହାସାଗର ସୃଷ୍ଟି କରିଦେଲେ, ସେଥିରେ ମୁଁ ମୋହିତ ହୋଇ ତାଙ୍କ ପାଖରେ ନଇଁ ପଡ଼ିଛି । ଶ୍ରୀ ଦୁର୍ଗା ପ୍ରସାଦ କର, ଆଇ.ଆର.ଏସ୍, ଆୟକର କମିସନର, ସମ୍ବଲପୁର ଓ ଟିକସ ଆଇନ ଗ୍ରନ୍ଥକାର ଏବଂ ସାହିତ୍ୟାନୁରକ୍ତ ଶ୍ରୀ ଚନ୍ଦ୍ରଶେଖର ଦାଶ, ଆଇ.ଆର.ଏସ୍. ଆୟକର କମିସନର, ରାଉରକେଲା, ମୋହଦୟମାନଙ୍କର **ମତାମତ** ଜନିତ ଅଲଭ୍ୟ ବଦାନ୍ୟତା ମୋର ସାଧନା ପଥରେ ପଥପ୍ରଦର୍ଶକ ହୋଇ ରହିବ । ଏହି ସଂକଳନଟିକୁ ସମ୍ପୂର୍ଣ୍ଣ କରିବା ପାଇଁ ଅଂଶୀଦାୟୀ ବୃନ୍ଦ, ପ୍ରଚ୍ଛଦ ଶିଳ୍ପୀ, ମୁଦ୍ରାକର ଓ ପ୍ରକାଶକ ପ୍ରଭୃତି ଯେଉଁ ସହୃଦୟମାନଙ୍କ ସାହାଚର୍ଯ୍ୟ ପାଇଛି ତାହା ଭୁଲିବାର ନୁହେଁ । ମା' ସାରଳା ସମସ୍ତଙ୍କର ମଙ୍ଗଳ ବିଧାନ କରନ୍ତୁ ଏହାହିଁ ମୋର ଆନ୍ତରିକ ପ୍ରାର୍ଥନା ।

**ବିନୋଦ ବିହାରୀ ଦାସ** (ଆଡ଼ଭୋକେଟ)

*ବାରିପଦା ଠିକଣା-* ଗାନ୍ଧୀପାର୍କ ଗେଟ୍, ବାରିପଦା - ୭୫୭୦୦୧,ଫୋନ-୨୫୨୬୮୫

*ବାଲେଶ୍ୱର ଠିକଣା-* ପ୍ରୁଫରୋଡ଼, ବାଲେଶ୍ୱର - ୭୫୬୦୦୧, ଫୋନ-୨୬୨୩୭୨

*(୧୪.୦୧.୨୦୦୩-ମକର ସଙ୍କ୍ରାନ୍ତି)*






✡
**୬୯୯୩.** ଗଇ କାଢ଼ିବା । (ଗଇ ଖୋଳିବା) ।

କାନରୁ ମଳ କାଢ଼ିବା ଭଳି ଅନ୍ୟର ଗୁପ୍ତଦୋଷ ବା କଳଙ୍କ ପଦାରେ ପକାଇବା ।

୬୯୯୪. ଗଉଡ଼ ଘର ଗୁହାଳ ଧୋଇ, ଯୋଡ଼ିଙ୍କ ବିଭାଘର ।

୬୯୯୫. *ଏକାର୍ଥରେ* - ଜଣଙ୍କର ସର୍ବନାଶ, ଆଉଜଣଙ୍କର ପୁଷମାସ ।

ମଡ଼କ ପଡ଼ିଲେ ଅନେକ ସଂଖ୍ୟାରେ ଗାଈଗୋରୁ ମରନ୍ତି । ଗଉଡ଼ଙ୍କର ଗୁହାଳ ସଫା ହୁଏ । କିନ୍ତୁ ମୋଚିଙ୍କର ମଉଛବ ଲାଗେ । ସେମାନେ ଗୋରୁ, ଗାଈଙ୍କର ଚମଡ଼ା ଉତାରି ବିକି ବେଶ ଲାଭବାନ ହୁଅନ୍ତି ।

୬୯୯୬. ଗଉଡୁଣୀ ଆପଣା ଦହିକି ଖଟା କହେ କି ?

ବିକାଳୀ କେବେ ହେଲେ ନିଜ ଜିନିଷ କୁ ଖରାପ କୁହେ ନାହିଁ, କହିଲେ ଗ୍ରାହକ କିଣିବେ ନାହିଁ । ତେଣୁ ନିଜେ ଜିନିଷ ଦେଖି କିଣିବା ଉଚିତ ।

୬୯୯୭. ଗଉଣିଏ ଖାଇ ହାକୁଟିଟାଏ, ଗଉଣିଏ ମୁଢି ପାକୁଳିଟାଏ ।

୬୯୯୮. ଗଉଡ଼ ଘରେ ଦହି, ବଣିଆ ଘରେ ବେଣୀ ସୁନ୍ଦର ମଥାରୁ ପଡ଼ିଛି ବହି ।

୬୯୯୯. ଗଛର ଛାଇ, ମଣିଷର ହାଇ, ଯେଣେ ପଡ଼େ ତେଣେ ଉଧାଏ ନାହିଁ ।

ବଡ଼ ଗଛର ଛାଇରେ ଛୋଟ ଉଧାଏ ନାହିଁ । ସେହିପରି ମଣିଷର ନିଃଶ୍ୱାସ ବା ଅଭିଶାପ ଯାହା ଉପରେ ପଡ଼େ, ତାର କୌଣସି ଉନ୍ନତି ହୁଏ ନାହିଁ ।

୭୦୦୦. ଗଛଚଢ଼ି ନ ଜାଣିଲା ଲୋକ, କୁଆ ଅଇଁଠା ଖାଏ ।

ଗଛଚଢ଼ି ଜାଣିଲା ଲୋକ ଗଛରେ ଚଢ଼ି ଆମ୍ବ, ପିଜୁଳି ପ୍ରଭୃତି ପାଚିଲା ଫଳ ଖାଏ । ଯେ ଗଛ ଚଢ଼ିବା ନଜାଣେ , ସେ କାଉ ଖଣ୍ଡିଆ ଫଳ ଖାଇଥାଏ ।

୭୦୦୧. ଗଛରେ ଚଢ଼ିବ ମରିବା ପାଇଁ, ଜାମିନ ହୋଇବ ଦେବା ପାଇଁ ।

ଗଛଚଢ଼ା ନ ଜାଣିଥିବା ଲୋକ ଗଛରୁ ପଡ଼ି ମରେ । ସେହିପରି ମାମଲତ ଜାଣି ନ ଥିବା ଲୋକ ଅନ୍ୟର ଜାମିନ ହେଲେ ତା ନିଜ ହାତରୁ ବାଜେ ।

୭୦୦୨. ଗଛ ଥାଉ, ଫଳ ପଛକେ ଯାଉ ।

ଗଛ ଥିଲେ ଫଳ ମିଳିବ । ତେଣୁ ମା' ଓ ପିଲା ଉଭୟେ ମୃତ୍ୟୁ ମୁଖରେ ପଡ଼ିଥିଲା ବେଳେ, ମା' ବଞ୍ଚୁ ବୋଲି କହନ୍ତି ।

---

✡ ଚତୁର୍ଥଖଣ୍ଡ ଗ୍ରନ୍ଥର ଶେଷ କ୍ରମିକ ନମ୍ବର-୬୯୯୨ ଉତାରୁ ଏହି ଗ୍ରନ୍ଥର କ୍ରମିକ ନମ୍ବର ଆରମ୍ଭ ।

୭୦୦୩. ଗଛରେ ଚଢ଼ାଇ ତଳୁ ଚେର କାଟିବା ।

୭୦୦୪. *ଏକାର୍ଥରେ* - ଗଛ ଚଢ଼ାଇ ମୂଳ କାଟି ଦେବା । (ସିଢ଼ି କାଢ଼ିନେବା) ।
ବିଶ୍ୱାସଘାତକତା ଚରିତ୍ରର ପ୍ରଧାନ ଲକ୍ଷଣ ।

୭୦୦୫. ଗଛ କାଟିଲା ପରି ପଡ଼ିଯିବା ।
କୌଣସି ଲୋକ ହଠାତ୍ ଗଛ କାଟିଲା ପରି ତଳେ ପଡ଼ିଯିବା ।

୭୦୦୬. ଗଛ ମୂଳରେ ବସିବା ।- ସର୍ବହରା ହୋଇଯିବା ।

୭୦୦୭. ଗଛରେ ଚଢ଼ାଇବା । - ଟେକା ଟେକି କରିବା ।

୭୦୦୮. ଗଛରୁ ପଡ଼ିଲା ମଲା ।-ସଫା କଥା ବା ସିଧା କଥା ।

୭୦୦୯. ଗଜ, ଦ୍ୱିଜ, ଶ୍ୱାନ, ମାର୍ଜାର, ସ୍ୱଜାତି ପରହିଂସୁକ ।
ଦନ୍ତାହାତୀ, ବ୍ରାହ୍ମଣ, କୁକୁର, ବିରାଡ଼ି ଓ ସ୍ୱଜାତିର ଜୀବମାନେ ପରସ୍ପରକୁ ଦେଖିଲେ ହିଂସା କରନ୍ତି ।

୭୦୧୦. ଗଜ (ହାତୀ) ଦାନ୍ତରେ ସୁନା ଛାଉଣି ହେବା ।
ମଣି-କାଞ୍ଚନ ଯୋଗ, ଅର୍ଥାତ୍ ଦୁଇଟି ମୂଲ୍ୟବାନ ଜିନିଷର ଯୋଗ ସୌଭାଗ୍ୟ ତଥା ଐଶ୍ୱର୍ଯ୍ୟ ବୃଦ୍ଧି କରିଥାଏ । ଦୁଇଟି ମୂଲ୍ୟବାନ ପଦାର୍ଥ ବା ବସ୍ତୁର ମିଳନ ।

୭୦୧୧. ଗଜ କଚ୍ଛପ ଯୁଦ୍ଧ ।
ଦୁଇ ଦୁର୍ବଳଙ୍କ ମଧରେ ଝଗଡ଼ା ଲାଗିଲେ ବଳଶାଳୀ ସୁବିଧା ଉଠାଏ । ଯେପରି କଇଁଛ ଓ ହାତୀ ମଧରେ ଯୁଦ୍ଧରେ ଉଭୟେ ବିପନ୍ନ ହେବାରୁ ଗରୁଡ଼ ଦୁହିଙ୍କୁ ଝାମ୍ପନେଇ ଆହାର କଲା । ପୁରାଣ ବର୍ଣ୍ଣିତ, ବିଭାବସୁ ଓ ସୁପ୍ରତୀକ ନାମରେ ଦୁଇଭାଇ ବିଷୟ ସମ୍ପତ୍ତି ପାଇଁ କଳହ କରି ଅବଶେଷରେ ପରସ୍ପର ପରସ୍ପକୁ ଅଭିଶାପ ଦେଲେ । ଫଳରେ ଜଣେ ଗଜ ଓ ଜଣେ କଚ୍ଛପରୂପ ଧାରଣ କରି ନିତ୍ୟ ଦ୍ୱନ୍ଦ୍ୱ ଯୁଦ୍ଧ କରୁଥିଲେ ।

୭୦୧୨. ଗଜ ଲଣ୍ଡା, ତାକୁ ଖାଇଲେ ହେବ ଭେଣ୍ଡା ।
କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ ଓ ଚତୁର୍ଦ୍ଦଶୀ ବଡ଼ ଓଷାରେ ନାନା ସ୍ୱାଦିଷ୍ଟ ପୁରରେ-ପୂର୍ଣ୍ଣ ମଣ୍ଡାପିଠା ତିଆରି ହୋଇ ଖିଆଯିବା ଉପଲକ୍ଷେ ।

୭୦୧୩. ଗଜମୂର୍ଖ ଚଲଣା ଚୋର, ଅଣ୍ଟି ନ ପୁରିଲେ ଆହୁରି ତୋଳ ।
ମୂର୍ଖ ଓ ନିର୍ବୋଧ ବ୍ୟକ୍ତି ପ୍ରତି ।

୭୦୧୪. ଗଡ଼ଜାତରେ ଯେବେ କରିବୁ ଘର, ଦାଣ୍ଡ ଘର ଖଣ୍ଡି ଅଛୁଆଁକର ।
ଦାଣ୍ଡଘର ଆଡ଼ା ଚୌଡ଼ାରେ କଲେ, ରାଜା ବଡ଼ଲୋକ ବିଚାରି ଧନ ଦୌଲତ

ଜବରଦସ୍ତି ନେଇ ଯାଉଥିଲେ । ତେଣୁ ଗଡ଼ଜାତ ଲୋକେ ଯେତେ ଧନୀ ହେଲେ ବି ବାହାରେ ଗରିବ ବୋଲି ପରିଚୟ ଦେଉଥିଲେ ।

୭୦୧୫. ଗଡ୍‌ଡ଼ାଳିକା ପ୍ରବାହ ।

(Woolner Memorial volume Lahore 1940, pp 65-67) ଗତାନୁଗତିକତା । ଅନ୍ଧଅନୁସରଣ ।

୭୦୧୬. ଗଡ୍‌ଡ଼ରିକା ପ୍ରବାହ ।

ଯେପରି ମେଣ୍ଢାପଲ ମଧ୍ୟରୁ ମେଣ୍ଢୀ ଯେଉଁ ଆଡ଼କୁ ଯାଏ, ଅନ୍ୟମେଣ୍ଢା ଗୁଡ଼ିକ କିଛି ନ ବିଚାରି ତା' ପଛେ ପଛେ ସେଇ ଆଡ଼କୁ ଯାଆନ୍ତି । ସେପରି କୌଣସି ପ୍ରଧାନ ଲୋକ ଯାହା କରେ ଅନ୍ୟ ବ୍ୟକ୍ତିମାନେ ଆଗପଛ ବିଚାର ନ କରି ତାଙ୍କରି ଅନୁବର୍ତ୍ତୀ ହେଲେ 'ଗଡ୍‌ଡ଼ରିକା ପ୍ରବାହ' ନ୍ୟାୟ ବୋଲି କୁହାଯାଏ ।

୭୦୧୭. ଗଡ଼ିଗଲା ଶିଳପୁତା, ମେଘ ଗଡ଼ି କଲିଦତା ।

ଶିଳପୁତା ଗଡ଼େଇଲେ ମେଘ ବର୍ଷେ ନାହିଁ ବୋଲି ଯାଜପୁର ବାସୀଙ୍କ ବିଶ୍ୱାସ, ତେଣୁ ଅତିରିକ୍ତ ବର୍ଷା ହେଉଥିଲେ ସେମାନେ ଶିଳପୁତା ଗଡ଼ାନ୍ତି ।

୭୦୧୮. ଗଡ଼ି ଗଡ଼ି ଗଲାବେଳ,
ଟାଙ୍ଗରା ମୁଣ୍ଡରେ ସୋରିଷ ତେଲ, ସାରୁ ବିକାଘରେ ଦେଲ ।

୭୦୧୯. ଗଣେଷ ପେଟିଆ ମହାଦେବ, ଏକ ଗୋଡ଼ିଆ ମହାଦେବ ।

ଅତୀତରେ ଅରଣ୍ୟ ଭିତରେ ଓଡ଼ିଶାରେ ବନ୍ୟଜନ୍ତୁ ତଥା ବାଘ ଉପଦ୍ରବର ଭୟ ନିବାରଣ ପାଇଁ ଭୈରବଙ୍କୁ ପୂଜା କରାଯାଉଥିଲା । ଭାଦ୍ରବ ମାସରେ ରେଖା ପଞ୍ଚମୀଦିନ କାନ୍ଥ କବାଟରେ ପେଟୁଆ ମହାଦେବ ଓ ଏକପଦ ଭୈରବଙ୍କ ଚିତ୍ର ଅଙ୍କନ କରାଯାଏ ।

୭୦୨୦. ଗଣ୍ଡିଆ (କୃପଣ) କାହାର ଘଇତା, ଦାରୀ କାହାର ମାଇପ ?

୭୦୨୧. ଗଣ୍ଡି କିଆରୀ କାଟି ଖାଇବା ।-କଙ୍କର ଜମିରେ ଭଲ ଫସଲ ହୁଏ ନାହିଁ ।

୭୦୨୨. ଗଣ୍ଡ ମଇତ୍ର, ପୁଆଳ ନିଆଁ ।

ମୂର୍ଖ ବନ୍ଧୁ ଓ କୁଟାନିଆଁ କୌଣସି କାମକୁ ଆସେ ନାହିଁ ।

୭୦୨୩. ଗଣ୍ଡପାଣି କୁମ୍ଭୀରକୁ ସହେ ।

ଗହୀର ନଈ ଗଣ୍ଡ କୁମ୍ଭୀର ପକ୍ଷେ ନିରାପଦ । ସେହିପରି ବିଚକ୍ଷଣ, ଜ୍ଞାନୀବ୍ୟକ୍ତି, ତତ୍ତ୍ୱ ବିଷୟର ଗଭୀରତାରେ ବିଚରଣ କରନ୍ତି ।

୭୦୨୪. ଗଣ୍ଡି ଘୋଡ଼ା ବେଇବା ।

ରଙ୍କାପୁଅ ତେଲି ଘଣାର ଗଣ୍ଡିରେ ତାର ଘୋଡ଼ାକୁ ବାନ୍ଧି ଦେଇ ରାତ୍ରରେ ତେଲି ଘରେ ବିଶ୍ରାମ ନେଇଥିଲା । ସକାଳେ ତେଲି ଘର ଲୋକେ ତାଙ୍କ ଘଣା ଗଣ୍ଡି ଘୋଡ଼ା ବେଇଛି ବୋଲି କହି ଘୋଡ଼ାଟିକୁ ଦାବି କଲେ । ଅସମ୍ଭବ କଥା ।

୭୦୨୫. ଗଣେଷପେଟା, ହବ ନ ଜାଣିଲେ ରକ୍ତରେ କୁଟା ।

ଗଣେଶଙ୍କୁ ଉପଲକ୍ଷ କରି ବ୍ୟକ୍ତି ବିଶେଷାଙ୍କୁ ବ୍ୟଙ୍ଗ ।

୭୦୨୬. ଗତ ସନ ମଲୁ, ଏ ବର୍ଷକୁ ବୈଦ୍ୟ ।

୭୦୨୭. ଗତାନୁଗତିକ ।

କାରଣ ନ ବୁଝି ଅନ୍ଧ ଭାବରେ ଅନୁସରଣ କରିବା ।

୭୦୨୮. ଗତସ୍ୟ ଶୋଚନା ନାସ୍ତି ।

୭୦୨୯. ଗଧ ଚନ୍ଦନ କାଠ ବୋହିବା ।

ଅଯୋଗ୍ୟ ବ୍ୟକ୍ତି ମୂଲ୍ୟବାନ ବସ୍ତୁର ଦାୟିତ୍ୱ ଗ୍ରହଣ କରିବା । ଗୁଣହୀନ ବ୍ୟକ୍ତି ଗୁଣର ମହତ୍ତ୍ୱ ବୁଝେ ନାହିଁ ।

୭୦୩୦. ଗଙ୍ଗ ଶିଉଳି, କି ଖରା ଲାଗି ତୁ ଗଲୁ ଝାଉଁଳି ।

କୋମଳାଙ୍ଗୀ ଝିଅ ଗଙ୍ଗ ଶିଉଳି ଫୁଲ ଭଳି । ଖରା, ଶାଶୁ ଘର ଅତ୍ୟାଚାରର ପ୍ରତୀକ ।

୭୦୩୧. ଗଙ୍ଗାଯା, ଗୟାଯା, କର୍ମଘେନି ବୁଲୁ ଥା ।

ଭାଗ୍ୟହୀନ ବ୍ୟକ୍ତି ଯେତେ ତୀର୍ଥ କଲେ ବି କିଛି ଫଳ ମିଳେ ନାହିଁ ।

୭୦୩୨. ଗଙ୍ଗା ଜଳରେ ଗଙ୍ଗାପୂଜା କରିବା ।

ଯାହାର ଧନ ତାହାରି ଧନରେ ତାକୁ ସନ୍ତୁଷ୍ଟ କରିବା ।

୭୦୩୩. ଗଙ୍ଗା ଗଲି ଯେତିକି ଫଳ ପାଇଲି ସେତିକି ।

ଯେତେ ତୀର୍ଥ ବ୍ରତ କରାଯାଏ, ସେଇ ପରିମାଣର ପୁଣ୍ୟ ଲାଭ ହୁଏ । ମାତ୍ର ଯାହାର ଉପକାର କରାଯାଏ, ପ୍ରତ୍ୟୁପୋକାର ନ କରି କୃତଘ୍ନ ହେବା ବ୍ୟକ୍ତିପ୍ରତି ।

୭୦୩୪. ଗଙ୍ଗାରୁ ହାଡ଼ ଫେରେ ନାହିଁ ।

ଗଙ୍ଗାରେ ଅସ୍ଥି ନ ପକାଇ ଫେରାଇ ଆଣିଲେ ଅମଙ୍ଗଳ ଘଟେ ।

୭୦୩୫. ଗଙ୍ଗା ବୋଇଲେ ଥିବି, ଗାଙ୍ଗୀ ବୋଇଲେ ଯିବି ।

୭୦୩୬. *ଏକାର୍ଥରେ* - ଗଙ୍ଗା ବୋଲୁ ବୋଲୁ ଥିବୁଟୁ ଅନବରତେ,
ଗାଙ୍ଗୀ ବୋଇଲେ ନ ଥାଉଁ ମୁଁ ତୋର ପୁରତେ ।

ବ୍ୟକ୍ତିବିଶେଷର ଦୁର୍ବଳତା କ୍ଷେତ୍ରରେ ପ୍ରଯୁଜ୍ୟ ।

୭୦୩୭. ଗଙ୍ଗାଜଳ ନେଇ ଗୋବର ଗଡ଼ିଆରେ ପକାଇବା ।

ମୂଲ୍ୟବାନ ବସ୍ତୁର ଅପବ୍ୟବହାର ।

୭୦୩୮. ଗଞ୍ଜେଇ ନିଶାରେ ମୂଷା ବିରାଡ଼ିକି ଚିହ୍ନି ନ ପାରିବା ।

ନିଶା ଭୋଳରେ ଆପଣା ପକ୍ଷ ଓ ଶତ୍ରୁ ପକ୍ଷ ଚିହ୍ନି ନ ପାରିବା ।

୭୦୩୯. ଗଞ୍ଜେଇ ଟିପ୍ପୁ ଟିପୁ ତାଲୁକା ନିଲାମ ।

ମଉଜ ମଜଲିସ ଓ ନିଶା ପାଣିରେ ସମ୍ପତ୍ତି ହରାଇବା ।

୭୦୪୦. ଗଙ୍ଗାକୁ ଡ଼େଇଁଲା ବେଳେ କିଏ ପୁଅ ମାଇପକୁ ଚାହେଁ !

ଆତ୍ମହତ୍ୟାକାରୀ ବ୍ୟକ୍ତିର ପରିବାର ପ୍ରତି ଅନାସକ୍ତି ।

୭୦୪୧. ଗନ୍ଧବାସ ନାହିଁ ପଳାଶ ଫୁଲ ।

୭୦୪୨. *ଏକାର୍ଥରେ* - ଗବ ବଢିଲେ କି ଲୁଆଳି ହୁଏ ?

ନରମା ଲୋକଦ୍ୱାରା କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସାଧିତ ହୋଇ ପାରେ ନାହିଁ ।

୭୦୪୩. ଗଙ୍ଗା କି ସ୍ନାନ, ଯମୁନା କି ପାନ ।-ଗଙ୍ଗା ଜମୁନା ଜଳ ପବିତ୍ର ଅଟେ ।

୭୦୪୪. ଗଙ୍ଗା ମାତା, ହିରଣ୍ୟକ ବାପ, କଂସ ମାମୁଁ, କର୍ଣ୍ଣ ଭାଇ ।

ଏମାନଙ୍କର ଦୟା ମାୟା ନାହିଁ ।

୭୦୪୫. ଗବ ଗଛିଆ କରିବା ।- ଅତି ମାତ୍ରାରେ ପ୍ରଶଂସା କରିବା ।

୭୦୪୬. ଗର୍ବ କଲେ ଖର୍ବ ହୁଏ, ଏ ସାର ବଚନ ।

୭୦୪୭. ଗର୍ଭିଣୀ ଗାଈ ବାଟ ଛାଡ଼ିଦେବା ।

ଦୁଷ୍ଟ ଓ ଦୁର୍ଦ୍ଦାନ୍ତ ଲୋକକୁ ସମସ୍ତେ ଭୟରେ ବାଟ ଛାଡ଼ିଦିଅନ୍ତି ।

୭୦୪୮. ଗରଜି ଗରଜି ମରଜି ପାଇଲି ନାହିଁ ।

ବହୁ ଚେଷ୍ଟା କଲେ ମଧ ଅନ୍ୟର ମର୍ମ କଥା କିଛି ଠଉରେଇ ନ ହେବା ।

୭୦୪୯. ଗରଜ ପଡ଼ିଲେ ଅରଜି ଆଣ ।

ଅଭାବରେ କରଜ ନକରି ନିଜେ ଅଧିକ ଅର୍ଜନ କରିବାକୁ ଚେଷ୍ଟିତ ହୁଅ ।

୭୦୫୦. ଗରଜ ପଡ଼ିଲେ ଗଧପାଦ ଧରିବାକୁ ପଡ଼େ ।

ଦରକାର ହେଲେ କାର୍ଯ୍ୟ ସାଧନ ପାଇଁ ତଳସ୍ତରକୁ ଓହ୍ଲାଇ ନ୍ୟୁନ ହେବାକୁ ପଡ଼ିଥାଏ । ସ୍ୱୟଂ ଭଗବାନ ନୀଚ କର୍ମ କରିବାକୁ କୁଣ୍ଠିତ ହୋଇ ନ ଥିଲେ ।

୭୦୫୧. ଗରଜ ଦିନକୁ (ମହରଗ ଦିନକୁ) ମୁଗେଇ ମୁକୁଟ (ମିଠା) ।

୭୦୫୨. ଗରିଆ (=ପିତଳ ଗରା) ପୋଡିବ ତ କରିଆ (=ଛୋଟ ଗାମୁଛା) ପିନ୍ଧ ।

ଲାକେ ପୂର୍ବେ ଚୋର ଭୟରେ ସାଇତି ରଖିବା ପାଇଁ ପିତଳ ଗରାରେ ଟଙ୍କା ରଖି ପୋତି ପକାଉଥିଲେ । ଖର୍ଚ୍ଚ ନ କରି ସବୁ ସଞ୍ଚୟକଲେ ଛୋଟଗାମୁଛା ପିନ୍ଧି ଦୁଃଖରେ କାଳାତିପାତ କରୁଥିଲେ । ମାତ୍ର ବଡ଼ଲୋକ ହିସାବରେ ପରିଗଣିତ ହେଉଥିଲେ ।

୭୦୫୩. ଗରିଆର (=ପିତଳଗରା) ଜାତିଯାଏ ନାହିଁ; ମାଠିଆର ଜାତି ଯାଏ ।

ଜାତି ଅଜାତିର ଭେଦ ଲୋକର ଆର୍ଥିକ ଅବସ୍ଥା ଉପରେ ନିର୍ଭର କରେ, କଥାରେ ଅଛି-ଜାତି କେଉଁଠି ? ନା ଟଙ୍କା ବାକ୍ସରେ ।

୭୦୫୪. ଗରିବର କଥା ପଛକୁ କାମଦିଏ ।

ପ୍ରଥମେ ଗରିବର କଥାକୁ କେହି କାନ ଦିଅନ୍ତିନି ଶେଷରେ ତା କଥାକୁ ଗ୍ରହଣ କରି ଥାଆନ୍ତି ।

୭୦୫୫. ଗରିବ ଉପରେ ସମସ୍ତଙ୍କ ଚୋଟ ।

ଗରିବ ଲୋକ ଉପରେ ସମସ୍ତେ ଦାଉ ସାଧନ୍ତି ।

୭୦୫୬. ଗରିବର ପୁଅ ହୋଇଲେ ଧନୀ, ସଭିଙ୍କୁ ନିକୁଛ ମଣଇ ପୁଣି ।

୭୦୫୭. ଗରିବ, ଠେଙ୍ଗା ଦେଲେ ମରିବ ।

୭୦୫୮. ଗରଜିଲା ମେଘ ବରଷେ ନାହିଁ,
ଭୁକିଲା କୁକୁର କାମୁଡ଼େ ନାହିଁ ।
ଗରଜିଲା ବାଘ ମଣିଷ ଖାଏ ନାହିଁ,
ଗରମ ପାଣିରେ ଘର ପୋଡ଼େ ନାହିଁ ।
ମଣିଷ ଗାଳିରେ ମଣିଷ ମରେ ନାହିଁ ।

୭୦୫୯. ଗହଣା ନାଇଲେ ଘୋଡ଼େଇଚାଲ, ପୁଅ ବେଇଥିଲେ ଓଢ଼େଇ ଚାଲ ।

ଅଳଙ୍କାର ପିନ୍ଧି ଦେଖେଇ ନ ହେବା, ପୁଅର ମା' ହୋଇ ବଡ଼ାଇ ନ କରିବା ।

୭୦୬୦. ଗହମ ଗୋଟି ଗଣିତା, ରୁଟି ଚୋରାଉଛି କିଏ ?- ଚୋଠାଲୋକ ପ୍ରତି ।

୭୦୬୧. ଗହମ ନିଦ (=ଗାଢ଼ନିଦ) ଚୋର କାଟି ନେଲା ହାତରୁ ବିଦ ।

ଏତେଗାଢ଼ ନିଦଯେ ଚୋର ବାହୁର ଅଳଙ୍କାର କାଟିନେଲେବି ଜାଣି ପାରେନାହିଁ ।

୭୦୬୨. ଗହମ ଗୋଟି ଗଣିତା ।-ବ୍ୟୟ- ସଂକୋଚର ଚରମ ସୀମା ।

୭୦୬୩. ଗ୍ରହମାନେ ଯେବେ ହୁଅନ୍ତି ଯୋଡ଼ା,
ଚେଟୀ (=ଦାସୀ) ପୁଅ ଚଢ଼ଇ ଘୋଡ଼ା ।

ଗ୍ରହ ଟାଣଥିଲେ ଗରିବ ଲୋକବି ଧନବାନ ହୁଏ ।

୭୦୬୪. ଗ୍ରହଣ ଖଣ୍ଡିଆ ।

ସୂର୍ଯ୍ୟ ପରାଗ ଓ ଚନ୍ଦ୍ର ଗ୍ରହଣ ସମୟରେ ସହବାସ କଲେ ଜନ୍ମିତ ସନ୍ତାନର ନାକ ବା ଓପର ଓଠ ନ ଥାଏ, ଏହା ଏକ ଅନ୍ଧବିଶ୍ୱାସ । (ଏ ସମ୍ପର୍କରେ ଏହି ଗ୍ରନ୍ଥର ଅବତରଣିକା ଦ୍ରଷ୍ଟବ୍ୟ) ।

୭୦୬୫. ଗୃହକୁ ଭାରିଯା, ସୁତ, ବିଭସିତ ଶିରୀ,
ଏତିକି ଯାହାର ନାହିଁ ଦରିଦ୍ର ସେ ପୁରୀ ।

ଯାହାର ସ୍ତ୍ରୀ, ପୁତ୍ର ଓ ଧନ ନାହିଁ, ସେ ଦରିଦ୍ର ପଦ ବାଚ୍ୟ ।

୭୦୬୬. ଗୃହ ଶତ୍ରୁ ବିଭୀଷଣ ।-କୁଟୁମ୍ବର ଲୋକ ଶତୃହେଲେ ଭୀଷଣ ଅନିଷ୍ଟ ହୁଏ ।

୭୦୬୭. ଗହମ ଚଲେଇ ଦେଲି, ପକେଇ ଦେଲି ଗୁଡ଼ି ।

ଅଦରକାରୀ ଜିନିଷକୁ ପରିତ୍ୟାଗ କରିବା ।

୭୦୬୮. ଗୃହ ବାସର ଯେତେ ଧର୍ମ
ଆପଦକାଳେ ସେବାକର୍ମ
ଯେଣେ ଗୋବିନ୍ଦ ତୋଷ ହୋଇ
ସେ ଧର୍ମ ଜନନୀ ବୋଲାଇ ।

୭୦୬୯. ଗୟାକୁ ଗଲେ ଲଣ୍ଡା, କଲିକତାକୁ ଗଲେ ବେଣ୍ଟି (=ଚୁରୁକି) ମୁଣ୍ଡା ।

ଗୟାରେ ଶ୍ରାଦ୍ଧ ଦେବାବେଳେ ଗାଧୋଇବା ଆଗରୁ ସଂପୂର୍ଣ୍ଣ ଲଣ୍ଡା ହେବାକୁ ପଡ଼େ । କଲିକତାରେ ଗଙ୍ଗାସ୍ନାନ ଆଗରୁ ଲଣ୍ଡାହେଲେ ମଧ୍ୟଚୁରୁକି ରହେ ।

୭୦୭୦. ଗଲାଣିତ କାଳକ, ଆଉ ଅଛି ପାଳକ ।

ମଣିଷର ବୟସ ଗଡ଼ିଚାଲେ । ବୟସ ଅତିକ୍ରାନ୍ତ ହେଲେ ତାର ଅନୁଚିନ୍ତା ।

୭୦୭୧. ଗଲାଣିତ ମୋର ଯୁବା ବୟସ, ପାଚିଲା ଆମ୍ବରେ ଥାଏ କି ରସ ।

୭୦୭୨. ଗଲା ମଲା ଏକାକଥା ।-ନିରୁଦ୍ଦିଷ୍ଟ ଓ ମୃତ ବ୍ୟକ୍ତି ଉଭୟେ ସମାନ ।

୭୦୭୩. ଗଲା କଥା ଗଲାଣି ।- ଅତୀତ ପାଇଁ ଅନୁଶୋଚନା ଅନୁଚିତ ।

୭୦୭୪. ଗଙ୍ଗା ଜଳ ଗଙ୍ଗାରେ ରହିଲା, ପିତୃଲୋକ ଉଦ୍ଧାର ପାଇଲା ।

ଗଙ୍ଗାଜଳ ଆଞ୍ଜୁଳାରେ ଟେକି ପିତୃପୁରୁଷଙ୍କୁ ତର୍ପଣ କରାଯାଏ । ସେହିଜଳ ପୁଣି ଗଙ୍ଗାରେ ପଡ଼େ, ହେଲେ ପିତୃପୁରୁଷ ମୋକ୍ଷ ଲାଭ କରନ୍ତି । ସେହିପରି କୌଣସି ପ୍ରକାର ଖର୍ଚ୍ଚାନ୍ତ ନ ହୋଇ ଉଦ୍ଦେଶ୍ୟ ସାଧିତ ହେଉଥିଲେ ଏହା ପ୍ରଯୁକ୍ତ ହୁଏ ।

୭୦୭୫. ଗଢ଼ିବାକୁ ଚାହିଲେ ଚାହେଁ ଠାକୁର, ଗଢିଲା ବେଳକୁ କୁକୁର ।

ଭଲ କରିବାକୁ ଉଦ୍ୟମ କରି ଫଳ ଭେଲ ହେଲେ ଏପରି କୁହାଯାଏ ।

୭୦୭୬. ଗଣ୍ଡୁଷ ଜଳ ମଧ୍ୟରେ, ଶଫରୀ(=କରାଣ୍ଡୀ ମାଛ) ଫର୍‌ଫରାୟତେ ।

ଅଳ୍ପ ବିଦ୍ୟା ଭୟଙ୍କରୀ ଅର୍ଥରେ ।

୭୦୭୭. ଗରେ ଥିଲେ ଭାତ ଲୁଗାର ଦୁଃଖ କ'ଣ ।

ଶ୍ରମ କରିବାକୁ ସୁସ୍ଥ ଶରୀର ଥିଲେ ତାକୁ ଅଭାବ ରୁହେ ନାହିଁ ।

୭୦୭୮. ଗୟାର ପାପ ।

ଗୟାରେ ପିଣ୍ଡ ଦାନ କଲେ ପିତୃ ପୁରୁଷଙ୍କର ପାପ ମୋଚନ ହୋଇଥାଏ । ଏହା ହିନ୍ଦୁ ମାନଙ୍କର ବିଶ୍ୱାସ । ତେଣୁ ନିତି ହଜାର ହଜାର ସଂଖ୍ୟାରେ ଲୋକେ ଗୟା ଯାଇ ପିଣ୍ଡଦାନ କରନ୍ତି । ତେଣୁ ଗୟାରେ ପାପ ପୂର୍ଣ୍ଣ ହୋଇ ରହିଛି ବୋଲି ବ୍ୟଙ୍ଗ କରାଯାଇଛି ।

୭୦୭୯. ଗୋରୁ ତତେ ବିକିବି ନା,

ଏଠିବି ଘାସ ଜଳ (ପାଣି) । ସେଠି ବି ଘାସ ଜଳ (ପାଣି) ।

କେହି ବିନା ଶ୍ରମରେ କେଉଁଠି ବି ଦାନାପାଣି ପାଏ ନାହିଁ ।

୭୦୮୦. ଗୋରୁ ଥାଇ ନ ହୁଏ ହଳ, ତାର ଦୁଃଖ ଚିରକାଳ ।

ଅଳସୁଆ ଲୋକ ପ୍ରତି କଟାକ୍ଷ ।

୭୦୮୧. ଗୋରୁ ମରିବ ଟେକି ଧରିଲେ, ମଣିଷ ମରିବ ଚାପି ଧରିଲେ ।

ଏପରି କାମ କରିବ ନାହିଁ ଯାହା ଫଳରେ ଅନ୍ୟର ଅନିଷ୍ଟ ଘଟିବ ।

୭୦୮୨. ଗଳାଧଃକରଣ ହେଲେ ଆଉ ମନେ ରୁହେ ନାହିଁ ।

ନିମକହାରାମ ତଥା ଅକୃତଜ୍ଞ ବ୍ୟକ୍ତି ପ୍ରତି ପ୍ରଯୁକ୍ତ ।

୭୦୮୩. ଗଳାରେ ଆଙ୍ଗୁଠି ମାରି କାଶିବା ।

ଜୋର ଜବରଦସ୍ତ ଭାବରେ କୌଣସି କାର୍ଯ୍ୟ ସମ୍ପାଦନ କରିବା ।

୭୦୮୪. ଗଳାରେ ପଡ଼େ ବଜାଏ ସିଦ୍ଧି, ବିପଦ ହରେ ବୁଦ୍ଧି ଶୁଦ୍ଧି ।

ମଣିଷ ଦାୟରେ ପଡ଼ିଲେ ସବୁକିଛି କରିପାରେ, ମାତ୍ର ବିପଦ ପଡ଼ିଲେ ତାର ବୁଦ୍ଧିବୃତ୍ତି ଲୋପ ପାଇଯାଏ ।

୭୦୮୫. ଗଳାରେ ଗଳାରେ ପୀରତି । - ନିବିଡ଼ ବନ୍ଧୁତା ।

୭୦୮୬. ଗରଜରୁ ଢ଼େଲା ବୋହିବା ।

ଯେଡ଼େ ବଡ଼ ଲୋକ ହେଲେ ବି ଅଭାବ ଅନଟନରେ ଛୋଟ କାମ କରିବାକୁ ପଡ଼େ ।

୭୦୮୭. ଗଛ ରାମାୟଣ ଶୁଣିବାକୁ ବଡ଼ ମିଠା ।

୭୦୮୮. ଗଛ ଚଢ଼େଇଦବାକୁ ସମସ୍ତେ ପାରନ୍ତି,
ଓହ୍ଲେଇବାକୁ କେହି ନ ପାରନ୍ତି ।

୭୦୮୯. ଗଛରେ ଚଢ଼ିଲେ ଦିଇଟା ଦିଶେ ।

୭୦୯୦. ଗଛରେ ପଣସ, ନିଶରେ ତେଲ ।

୭୦୯୧. ଗଛରେ ଚଢ଼େଇ କଚାଡ଼ିବା ।

୭୦୯୨. ଗଛରେ ନ ଚଢୁଣୁ କାନ୍ଦ ବୋବାଳି ।

୭୦୯୩. ଗଛର ଆମ୍ବ ଗଛରେ ରହିଲା, ଡ଼େମ୍ଫ ଗଲା ଖସି ।

୭୦୯୪. ଗଛ ଠାରୁ ଫଳ ଭାରି ।

୭୦୯୫. ଗଛର ଝଡ଼ା, ତଳୁ କୁଢ଼ା ।

୭୦୯୬. ଗଛର ଫଳ କି ଗଛକୁ ଭାରି କହେ ।

୭୦୯୭. ଗଧକୁ ପିଟି ଘୋଡ଼ା କରିବା ।-ମୂର୍ଖକୁ ବୁଝାଇଲେ ବି ସେ ଚାଲାକ ହୁଏନି ।

୭୦୯୮. ଗଧ ସବୁ ବୋହିପାରେ ହେଲେ ଭାତର କାଠି ବୋହିପାରେ ନାହିଁ ।

୭୦୯୯. ଗବ ମୂଳେ ଯେବେ ଆମ୍ବ ପାଇ, ଆମ୍ବ ମୂଳକୁ କିଆଁ ଯାଇ ।

୭୧୦୦. ଗଣ୍ଡି କଉଡ଼ିରେ ମଦ ଖାଏ, ଲୋକ ବୋଲନ୍ତି ମାତାଲ ।

୭୧୦୧. ଗଡ଼ିଆ ବେଙ୍ଗ କି ସ୍ୱର୍ଗ ଦେଖେ ।

୭୧୦୨. ଗରୁଡ଼ ପଛରେ ଦେଖ, ଦିଶୁଛି କଳା ଶ୍ରୀମୁଖ ।
ଶ୍ରୀମନ୍ଦିର ମଧ୍ୟରେ ଗରୁଡ଼ ଖମ୍ବ ପଛରୁ ଶ୍ରୀ ଜଗନ୍ନାଥଙ୍କୁ ପୂର୍ଣ୍ଣ ଦର୍ଶନ ମିଳେ । ଶ୍ରୀ ଚୈତନ୍ୟ ଏହି ଖମ୍ବ ପଛରୁ ଶ୍ରୀ ଜଗନ୍ନାଥଙ୍କୁ ଅବଲୋକନ କରୁକରୁ ମହାପ୍ରଭୁଙ୍କ ଶରୀରରେ ଲୀନ ହୋଇ ଯାଇଥିଲେ ।

୭୧୦୩. ଗଙ୍ଗା ଉଠେଇବା ।-ଗଙ୍ଗା ଜଳ ଆଞ୍ଜୁଳା କରି ଶପଥ କରିବା ।

୭୧୦୪. ଗଙ୍ଗା କୋଳକୁ ଯିବା ।- ମରିଯିବା ।

୭୧୦୫. ଗଙ୍ଗା କୋଳରେ ସମର୍ପିବା ।-ଶବକୁ ଗଙ୍ଗାରେ ଭସେଇ ଦବା ।

୭୧୦୬. ଗଙ୍ଗା ଜଳ ପିଇବା ।-ପବିତ୍ର ହେବା; ପାପ ଧୋଇ ଯିବା ।

୭୧୦୭. ଗଙ୍ଗା ଜଳ ଦେବା ।-ମରଣ ଉପସ୍ଥିତ ହେବା ।

୭୧୦୮. ଗଙ୍ଗା-ଯମୁନାର ଦାତା (=ସମ୍ପର୍କ)।-ସାଙ୍ଗ ହେବା ; ସୌଖ୍ୟଭାବ ।

୭୧୦୯. ଗଙ୍ଗା-ଯମୁନା ବୁହାଇବା (ବୋହିବା) ।

୭୧୧୦. *ଏକାର୍ଥରେ*-ବିଲକ୍ଷ-ବିଲକ୍ଷଣ ଭାବରେ କାନ୍ଦିବା ।

୭୧୧୧. ଗଙ୍ଗା ସ୍ନାନ ।- କୃତାର୍ଥ ହେବା । ପାପ ଧୋଇବା ।

୭୧୧୨. ଗଙ୍ଗା ପାରି ହେବା ।

ଦୋଷକୁ ବାହାର କରିଦେବା । ଇଲାକାରୁ ବାହାରି ଯିବା ।

୭୧୧୩. ଗଙ୍ଗା ବୁହାଇବା ।-ସମ୍ପଦଶାଳୀ ହେବା ।

୭୧୧୪. ଗଙ୍ଗା ଲାଭ ହେବା ।

ମରିଯିବା । ଦୁଃଖ କଷ୍ଟରେ ନ ସଢ଼ି ଗଙ୍ଗା-ଲାଭ ହେବା ଶ୍ରେୟସ୍କର ।

୭୧୧୫. ଗଞ୍ଜାଖୋର ସାଙ୍ଗ କିଏ, ଦମ ଲଗାଇ ଟାଣେ ଯିଏ ।

୭୧୧୬. ଗଣ୍ଠି ଯୋଡ଼ିବା ।-ବିବାହ କରିବା । ପାରସ୍ପରିକ ସମ୍ବନ୍ଧ ସ୍ଥାପିତ କରିବା ।

୭୧୧୭. ଗଚା ଗଚା । -ବାରବାର ସମ୍ପୂର୍ଣ୍ଣ ଭାବରେ ।

୭୧୧୮. ଗଚାଗଚ । -ଭିଡ଼-ଭାଡ଼ ।

୭୧୧୯. ଗଚା ଦେବା ।-ହାରିବା । ଲୋକସାନ କରାଇବା । ଧୋକା ଦେବା ।

୭୧୨୦. ଗଜବ ପଡ଼ିବା । (ଗଜବରେ ପଡ଼ିବା ।) - ବିପତ୍ତିରେ ପଡ଼ିବା ।

୭୧୨୧. ଗଜେ ସରି ଜବାନ୍ ।-ଅନର୍ଗଳ ପ୍ରଳାପ । ବକ ବକ ହେବା ।

୭୧୨୨. ଗଜେ ସରି ଜିଭ ।-ଖାଇବା ପାଇଁ ଅତ୍ୟନ୍ତ ଲୋଭ ।

୭୧୨୩. ଗଟ ଗଟ ଚଢ଼େଇ ଦେବା ।-ଜଲଦି ଜଲଦି ଖାଇପିଇ ଯିବା ।

୭୧୨୪. ଗଣ୍ଠି ବନ୍ଧନର ଗଣ୍ଠି ।-ବିବାହରେ ବରକନ୍ୟାଙ୍କ ଲୁଗାରେ ଗଣ୍ଠି ପଡ଼ିବା ।

୭୧୨୫. ଗଣ୍ଠିଲି କରିଦେବା ।-ହାତ ଗୋଡ଼ ଭାଙ୍ଗି ବା ବାନ୍ଧି ଗଣ୍ଠିଲି ପରି କରିଦେବା ।

୭୧୨୬. ଗଣ୍ଠିଲି କରିବା ।-ଜମା କରିବା । ଭବିଷ୍ୟତ ପାଇଁ ଦରମାରୁ କିଛି ସଞ୍ଚିବା ।

୭୧୨୭. ଗଣ୍ଠିଲି କାଟିବା ।-ଅନୁଚିତ ଭାବରେ କାହାରି ଧନ ହଡ଼ପ କରିନେବା ।

୭୧୨୮. ଗଣ୍ଠିଲି ବାନ୍ଧିବା ।- ଚାଲିଯିବା ପାଇଁ ପ୍ରସ୍ତୁତ ହେବା ।

୭୧୨୯. ଗଣ୍ଠିଲି ମୁଣ୍ଡରେ ଲଦିବା । -ଋଣ ବା କରଜରେ ଲଦି ହୋଇ ପଡ଼ିବା ।

୭୧୩୦. ଗଣ୍ଠି ପକେଇବା ।-ମନେ ରଖିବା । ଧ୍ୟାନରେ ରଖିବା ।

୭୧୩୧. ଗଡ଼ପ ହେବା ।-ପାଣିରେ, ଗଭୀର କାଦୁଅ ପଙ୍କରେ ପଶିଯିବା । କ୍ଷତି ହେବା ।

୭୧୩୨. ଗଡ଼ ପଡ଼ ହେବା ।

୭୧୩୩. ଗଡ଼ବଡ଼ ଘୋଟାଲା ।-ଚାଲବାଜୀ ।

୭୧୩୪. ଗଡ଼ଗଡ଼ କରି କଥା କହିବା ।-କଚ୍ଚନା ଜଚ୍ଚନା କରି ସତ-ମିଛ କହିବା ।

୭୧୩୫. ଗଧ ଚଢ଼ାଳିକୁ ହାତୀରେ ଚଢ଼େଇବା ।

ଅଯୋଗ୍ୟ ବ୍ୟକ୍ତିକୁ ଉଚ୍ଚ ପଦରେ ଅଧିଷ୍ଠିତ କରାଇବା ।

୭୧୩୬. ଗଧ ମୁଣ୍ଡରୁ ଶିଂଗ (ଘ) ଗାଏବ ହେବା ।-ହଠାତ୍ ଅନ୍ତର୍ଦ୍ଧ୍ୟାନ ହୋଇଯିବା ।

୭୧୩୭. ଗଧ ମୁଣ୍ଡରେ ଶିଂଗ (ଘ) ହେବା ।

୭୧୩୮. *ସମାର୍ଥରେ* - ଗଧର ଶିଂଗ(ଘ) ହେବା ।

ଶକ୍ତିହୀନକୁ ବଳବାନ ବୋଲି ଜାହିର କରିବା ।

୭୧୩୯. ଗଧକୁ (ଗଧାକୁ) ମଣିଷ କରିବା ।-ମୂର୍ଖକୁ ଚାଲାଖ କରିବା ।

୭୧୪୦. ଗଧକୁ ବାପ କହିବା ।-ମୂର୍ଖକୁ ଆଦର କରିବା ।

୭୧୪୧. ଗଧକୁ ହାଲୁଆ ଖୁଆଇ ନାତ ଖାଇବା ।

ବେକୁବକୁ ମୁଣ୍ଡରେ ବସେଇ ଦୁଃଖ ଭୋଗିବା ।

୭୧୪୨. ଗଧକୁ ହଳରେ ଯୋଚିବା ।-ବରବାଦ କରିଦେବା ।

୭୧୪୩. ଗଧ-ଜ୍ୱର(ଜର) ।-ଅତ୍ୟଧିକ ଜର ହେବା ।

୭୧୪୪. *ସମାର୍ଥରେ* -ଭାଲୁ-ଜ୍ୱର(ଜର) ।-କମ୍ପ ଜର ହୋଇ ତୁରନ୍ତ ଛାଡ଼ିଯିବା ।

୭୧୪୫. ଗଦି ମାଡ଼ି ବସିବା ।-ଅଧିକାର ବା ପଦପଦବୀ ହାସଲ କରିବା ।

୭୧୪୬. ଗପ ଉଡ଼େଇବା ।-ମିଥ୍ୟା ଖବର ପ୍ରଚାର କରିବା ।

୭୧୪୭. ଗପ-ଗପ୍ ବା ଗପା-ଗପ୍ ।-ଜଲଦି ଜଲଦି ଖାଇବା ପ୍ରସଂଗରେ ।

୭୧୪୮. ଗପ ମାରିବା ବା ହାଙ୍କିବା ।-ଅଜଥା ବକବାସ କରିବା ।

୭୧୪୯. ଗଫଲତି ନିଦରେ ଶୋଇବା ।-ନିଶ୍ଚିନ୍ତ ବା ବେଫିକର ହୋଇ ଶୋଇବା ।

୭୧୫୦. ଗର୍ଦନ ମୋଡ଼ିବା ।

ଜୀବନରୁ ମାରିବା, ଅପମାନ କରିବା, କଷ୍ଟ ଦେବା, ଅହଙ୍କାର କରିବା ।

୭୧୫୧. ଗର୍ଦନ (ଗଳା) କାଟିବା ।

ଧୋକା ଦେଇ ଟଙ୍କା ନେଇଯିବା । ଅନ୍ୟାୟ କରି ବହୁତ କଷ୍ଟ ଦେବା ।

୭୧୫୨. ଗର୍ଦନର ଢ଼ୋଲା-ଅନିଶ୍ଚିତ ଉତ୍ତର ଦାୟିତ୍ୱ ।

୭୧୫୩. ଗର୍ଦନ ଝାଡ଼ି ପଳେଇବା ।-ବଶ୍ୟତା ସ୍ୱୀକାର ନ କରିବା ।

୭୧୫୪. ଗର୍ଦନ ନତ କରିବା ।-ବିରୋଧ ନ କରି ମାନିଯିବା, ଲଜ୍ଜିତ ହେବା ।

୭୧୫୫. ଗର୍ଦନରେ (ଗଳାରେ) ଛୁରି ଚଳେଇବା ।

ସନ୍ତାପିତ, ଜୁଲମ, ଅନ୍ୟାୟ, ଅହିତ କରିବା ।

୭୧୫୬. ଗର୍ଦନରେ ଜୁଆଳି ପକେଇବା ।

କୌଣସି ଓଜନଦାର କାମ ବା ବୋଝ ମୁଣ୍ଡକୁ ନେବା ।

୭୧୫୭. ଗର୍ଦ୍ଦନରେ ବସିବା (ଚଢ଼ିବା) ।- ବାଧ୍ୟ କରିବା, ପିଛା ନ ଛାଡ଼ିବା ।

୭୧୫୮. ଗର୍ଦ୍ଦନ ବଞ୍ଚେଇବା ।-କାମରୁ ଅପସରି ଯିବା । ପିଛା ଛଡ଼େଇବା ।

୭୧୫୯. ଗର୍ଦ୍ଦନ ହଲେଇବା ।-ସ୍ୱୀକାର କରିବା ବା ଅସ୍ୱୀକାର କରିବା ।

୭୧୬୦. ଗରମା ଗରମ କଥା ।-ଉତ୍ତେଜନ ପୂର୍ଣ୍ଣ କଥା, କଠୋର ବଚନ ।

୭୧୬୧. ଗରମ ଶଯ୍ୟାଗାମୀ ହେବା ।-ସହବାସ ପାଇଁ ଅବସର ମିଳିଯିବା ।

୭୧୬୨. ଗରମ ତାୱାରେ ରୁଟି ସେକିବା ।-ଅନୁକୂଳ ପରିସ୍ଥିତିରୁ ଲାଭ ଉଠାଇବା ।

୭୧୬୩. ଗରିବର ସ୍ତ୍ରୀ ସଭିଙ୍କ ଭାଉଜ ।-ସମସ୍ତଙ୍କର ଥଟ୍ଟା-ତାମସାର ପାତ୍ରୀ ।

୭୧୬୪. *ଏକାର୍ଥରେ*- ଗରିବର ମାଇପ ସମସ୍ତଙ୍କର ଶାଳୀ ।

୭୧୬୫. ଗରଦା ଝାଡ଼ିବା ।-ଅତ୍ୟଧିକ ମାଡ଼ ମାରିବା ।

୭୧୬୬. ଗର୍ଦ୍ଦଭ ସ୍ୱର ।-କର୍କଷ ଆୱାଜ ।

୭୧୬୭. ଗରମ ପାଉଁଶ ଉପରେ ଶୋଇବା ।

ବିପଜ୍ଜନକ ସ୍ଥିତିରେ ବାସ କରିବା, ସଙ୍କଟାପନ୍ନ ବା ଦୁଃଖଦ ସ୍ଥିତିରେ ରହିବା ।

୭୧୬୮. ଗରମ ନିଶ୍ୱାସ ଛାଡ଼ିବା ।-ଦୀର୍ଘ ନିଶ୍ୱାସ ପକେଇବା ।

୭୧୬୯. ଗଳା ବାନ୍ଧି ଧନ ଉପାର୍ଜନ କରିବା ।

କୃପଣ ହୋଇ ନଖାଇ ନପିଇ ଦୁଃଖ କଷ୍ଟରେ ଧନ ସଞ୍ଚୟ କରିବା ।

୭୧୭୦. ଗଳି ଗଳି ଘୁରି ବୁଲିବା ।-ବେଠିକ ଠିକଣାରେ ବୁଲିବା ।

୭୧୭୧. ଗଳି ଗଳିରେ ଠୋକର ଖାଇବା ।- ଚାରିଆଡ଼େ ବାଧାବିଘ୍ନ ।

୭୧୭୨. ଗଳାର ହାର ।- ଚିର ସହଚର, ଦୁଃଖଦାୟୀ, କଷ୍ଟ ପ୍ରଦ ଅନିଶ୍ଚିତ ଦାୟିତ୍ୱ ।

୭୧୭୩. ଗଳାରେ ଜଞ୍ଜିର ପଡ଼ିବା ।-ବାହା ହେବା ।

୭୧୭୪. ଗଳାରେ ଫାନ୍ଦ । ବାହାହେବା ।

ଅନଶ୍ଚିତ ଦାୟିତ୍ୱ ନ ଚାହିଁଲେ ବି ଆସିବା । ଘୋର ଅହିତ ବା ଅନିଷ୍ଟ ହେବା ।

୭୧୭୫. ଗଳାରେ ଫାସି ।-ଅତ୍ୟଧିକ କଠିଣ ଅବସ୍ଥା ।

୭୧୭୬. ଗବାଇ ଦେବା ।-ସାକ୍ଷୀଦେବା ।

୭୧୭୭. ଗହକି ପଟିବା ।-ଗରାଖକୁ ପଟାପଟି କରି ସଉଦା ବିକ୍ରି କରିବା ।

୭୧୭୮. ଗହିର ଆସାମୀ ।-ଧନବାନ ଓ ଅମୀର ।

୭୧୭୯. ଗହିରିଆ ହାତ ମାରିବ । (ଲଗେଇବା) ।

ଅଧିକ ଧନ ଲୁଣ୍ଠନ କରିବା ବା ହାତେଇବା, କୌଣସି ଅମୂଲ୍ୟ ପଦାର୍ଥ ମିଳିବା ।

୭୧୮୦. ଗହିରିଆ ଆଖିରେ ଦେଖିବା ।

ଭଲ ଭାବରେ ପରୀକ୍ଷା କରି ଦେଖିବା, ସନ୍ଦେହୀ ନଜରରେ ଦେଖିବା ।

୭୧୮୧. ଗହିରକୁ ଯିବା ବା ପଡ଼ିବା ।

ଗହନଚିନ୍ତନ-ମନନରେ ପଡ଼ିବା । ସୂକ୍ଷ୍ମ ଭାବରେ ବିଚାର, ଘୋର ସଂକଟ ବା ବିପନ୍ନାବସ୍ଥାରେ ପଡ଼ିବା ।

୭୧୮୨. ଗଣ୍ଠି କାଟିବା ।- ଠକିବା ।

ପକେଟ ମାରି ଟଙ୍କା ପଇସା କାଢ଼ି ନେବା, ଉଚିତ ମୂଲ୍ୟରୁ ଅଧିକ ନେବା ।

୭୧୮୩. ଗଣ୍ଠି ଖୋଲିବା ।

ଭେଦ ମାଲୁମ କରିବା, ମତଭେଦ ଦୂର କରିବା, ସଫା ସଫା କହିବା ।

୭୧୮୪. ଗଣ୍ଠି ପକେଇ ରଖିବା ।-ମନେ ରଖିବା ।

୭୧୮୫. ଗଣ୍ଠି ଉପରେ ଗଣ୍ଠି ପଡ଼ିବା ।

ସମସ୍ୟା କଠିଣରୁ କଠିଣତର ହେବା । ମତାନ୍ତର ତଥା ଦ୍ୱେଷ ବଢ଼ିଯିବା ।

୭୧୮୬. ଗଣ୍ଠିରେ କଉଡ଼ି ହେବା ।-ଧନବାନ ହେବା ।

୭୧୮୭. ଗଣ୍ଠିରେ ହାଓ୍ୱା ବାନ୍ଧିବା ।-ଅସମ୍ଭବ କାର୍ଯ୍ୟ କରିବାକୁ ପ୍ରୟାସୀ ହେବା ।

୭୧୮୮. ଗଗରାରେ ସାଗର ।

୭୧୮୯. *ଏକାର୍ଥରେ-* ଗଡ଼ିଆରେ ସାଗର ।

ବଡ଼ ଓ ଗମ୍ଭୀର କଥାକୁ ସଂକ୍ଷେପରେ ବ୍ୟକ୍ତ କରିବା ।

୭୧୯୦. ଗଛ ଚେରରେ ଉଇ ଛାଡ଼ିବା ।

କାହାରି ଉନ୍ନତିରେ ଏପରି ବିଘ୍ନ ଘଟାଇବା, ସମୂଳେ ବରବାଦ କରିଦେବା ।

୭୧୯୧. **ଗଣେଶଙ୍କୁ ଆରଧନା କଲେ କି କି ପ୍ରାପ୍ତହୁଏ ।**

ଗୃହାରମ୍ଭ ବିଦ୍ୟାଗମନ ବିବାହ ଆଦିରେ
ହୁଅଇ ସକଳ ସିଦ୍ଧି ଗଣେଶ ପୂଜାରେ ।
ବିଦ୍ୟାକାମୀ ବିଦ୍ୟାପାଏ ଧନକାମୀ ଧନ
ଜୟକାମୀ ଜୟ ସୁତକାମୀ ସୁନନ୍ଦନ ।
ପତିକାମୀ ନାରୀ ପାୟେ ଉତ୍ତମ ନାୟକ
ସୁଭାଗା ହୋଇ ବଞ୍ଚେ ନ ଲଭଇ ଶୋକ ।
ବିଧବା ପୂଜିଲେ ପୁଣି ବିଧବା ନୁହଇ

ଜନ୍ମେ ଜନ୍ମେ ପତିସଙ୍ଗେ ସମୟ ବଞ୍ଚଇ ।
ଗଣେଶଙ୍କୁ ପୂଜା କଲେ ସକଳ ଦେବତା
ହୁଅନ୍ତି ପୂଜିତ ମିଥ୍ୟା ନୁହଇ ଯେ କଥା ।

୭୧୯୨. ଗଣିଗଣି ପାଦ ପକାଇବା ।

୭୧୯୩. *ଏକାର୍ଥରେ*- ହାତେ ମାପି ଚାଖଣ୍ଡେ ଚାଲିବା ।
ବହୁତ ଭାବିଚିନ୍ତି କାର୍ଯ୍ୟ କରିବା । ସାବଧାନତା ସହକାରେ ଚଳିବା ।

୭୧୯୪. ଗଣି ଗଣି ଦିନ କାଟିବା ।-ବଡ଼ କଷ୍ଟରେ ଜୀବନ ବିତାଇବା ।

୭୧୯୫. ଗଣତିରେ ଆସିବା ।-ଯୋଗ୍ୟ ବିବେଚିତ ହେବା । ମହତ୍ତ୍ୱପୂର୍ଣ୍ଣ ହେବା ।

୭୧୯୬. ଗଣତିରେ ନ ଆଣିବା ।-ଏକାବେଳକେ ତୁଚ୍ଛ ବିଚାରିବା ।

୭୧୯୭. ଗଲି ବିଶ୍ କଦମ ତ ବନ୍ଦା (=ବ୍ୟକ୍ତି ବିଶେଷ) ତିରିଶ କଦମ ।
ବିପଦ ସଂକୁଳ ସ୍ଥାନରୁ ଯେଉଁ ବ୍ୟକ୍ତି ଦୂରେଇ ରହେ ।

୭୧୯୮. ଗଳ ଗ୍ରହ ହେବା ।-ବିଘ୍ନ ଘଟାଇବା ବ୍ୟକ୍ତି ବୋଝ ହେବା ।

୭୧୯୯. ଗଙ୍ଗାର ଧାର, ପାପ କଟିବାର ଆର ।
ଗଙ୍ଗା ସ୍ନାନ କଲେ, ମନୁଷ୍ୟର ପାପ ଧୋଇଯାଏ ବୋଲି ହିନ୍ଦୁମାନଙ୍କର ବିଶ୍ୱାସ ।

୭୨୦୦. ଗଙ୍ଗା ଗଲେ ଗଙ୍ଗାଦାସ, ଯମୁନା ଗଲେ ଯମୁନା ଦାସ ।
ଯାହା ପାଖକୁ ଯିବ ତା ରୁଚି ଅନୁଯାୟୀ କହିବ ।

୭୨୦୧. ଗଞ୍ଜେଡ଼ି ବନ୍ଧୁ କିଏରେ, ଦମ ଲଗାଇ ଖସେରେ ।

୭୨୦୨. *ଏକପ୍ରକାର*- ଗଞ୍ଜେଡ଼ ବନ୍ଧୁ କିଏ ସେ, ଦମ-ମାରି ଖସେ ସେ ।
ସ୍ୱାର୍ଥୀ ମଣିଷ କାହାରି ବନ୍ଧୁ ହୋଇ ରହି ପାରନ୍ତି ନାହିଁ । ଆପଣା ମତ୍‌ଲପ୍
ସାଧନ ହେଲା ମାତ୍ରେ ସେମାନେ ଚାଲି ଯାଇଥାନ୍ତି ।

୭୨୦୩. ଗଢ଼େ କୁମ୍ଭାର ଭରେ ସଂସାର ।
କୁମ୍ଭାର ହାଣ୍ଡି କଳସୀ ଗଢ଼େ, ସମସ୍ତେ ସେଥିରେ ପାଣି ଭର୍ତ୍ତି କରନ୍ତି । ଜଣକ
କୃତିରୁ ଅନେକ ଲୋକ ଲାଭ ଉଠାଉଥିବା କ୍ଷେତ୍ରରେ ପ୍ରଯୁକ୍ତ ।

୭୨୦୪. ଗଧ ମରେ କୁମ୍ଭାରର, ସତୀ ହୁଏ ଧୋବଣୀ ।
ସମ୍ବନ୍ଧ ନ ଥାଇ କାର୍ଯ୍ୟ କରୁଥିବା ବ୍ୟକ୍ତି ପ୍ରତି ପ୍ରଯୁକ୍ତ ।

୭୨୦୫. ଗଧକୁ ହାଲୁଆ /ଗୁଲକନ୍ଦ (=ଶର୍କରାମିଶ୍ରିତ ଗୋଲାପପାଖୁଡ଼ା) ଦେବା ।

୭୨୦୬. *ଏକାର୍ଥରେ*- ଗଧକୁ ଖିରୀ ଖେଚୁଡ଼ି ।

୭୨୦୭. *-ଏଚନ-* ଅନ୍ଧ ହସ୍ତରେ ଦର୍ପଣ ।

ଅଯୋଗ୍ୟ ଅପଦାର୍ଥ ହାତରେ ମୂଲ୍ୟବାନ ବସ୍ତୁ ପ୍ରଦାନ କରିବା ।

୭୨୦୮. ଗଧକୁ ଖୁଆଇ, କି ପାପ କି ପୂଣ୍ୟ ।-କୃତଘ୍ନ ସହିତ ନ୍ୟାୟ କରିବା ବ୍ୟର୍ଥ ।

୭୨୦୯. ଗଧ ହଳ ଚଳେଇଲେ, ବଳଦକୁ କିଏ ପଚାରେ ।

ଛୋଟ ଲୋକଙ୍କ ଦ୍ୱାରା ସବୁ କାମ ହେଲେ ବଡ଼ଙ୍କୁ କିଏ ବା ପଚାରିବ ।

୭୨୧୦. ଗଲା ଦିନ ଭାଇ ନ ଫେରେ ଆଉ ।

୭୨୧୧. *ଏକାର୍ଥରେ-* ଗଲାଣିତ ଗଲା କଥାରେ ସଙ୍ଗାତ ।

ଯେଉଁ ସମୟ ବିତିଯାଏ, ତାହା ପୁନର୍ବାର ଉପଲବ୍ଧ ହୁଏ ନାହିଁ ।

୭୨୧୨. ଗଲି ରୋଜା (=ମୁସଲମାନଙ୍କ ରମଜାନ ଉପାସ) ଭାଙ୍ଗି,
ଗଳାରେ ପଡ଼ିଲା ନମାଜ ଆସି ।

ସାମନ୍ୟ କଷ୍ଟ ମୋଚନ କରିବାକୁ ଯାଇ ତାଠାରୁ ଅଧିକ କଷ୍ଟରେ ପଡ଼ିବା ।

୭୨୧୩. ଗରଜ ପଡ଼ିଲେ ଗଧକୁ ବି ବାପ ଡ଼କାଯାଏ ।

ଦୁଃଖ କଷ୍ଟରେ ପଡ଼ିଲେ କାର୍ଯ୍ୟ ସାଧନ ପାଇଁ ଅସମୟରେ ଅଯୋଗ୍ୟ, ଇତର ଓ ସାମାନ୍ୟ ବ୍ୟକ୍ତିର ଆଶ୍ରା ବା ସେବା କରିବାକୁ ପଡ଼ିଥାଏ ।

୭୨୧୪. *ଏକାର୍ଥରେ-* ଗଧ ପାଦ ଧରିବା । ନ୍ୟାୟ ।

ପୁରାଣରେ ବର୍ଣ୍ଣିତ ଅଛି ଯେ- ଜରାସନ୍ଧର ଉଆସ ଆଗରେ ଥିବା ଶିମିଳି ଗଛରେ ଗୋଟିଏ ଗଧ ବନ୍ଧା ହୋଇଥାଏ । ଶତ୍ରୁ ଆସିଲେ ସେ ଗଧ ରଡ଼ି କରୁଥିଲା । ଗଧ ରଡ଼ି ଶୁଣି ଜରାସନ୍ଧ ସାବଧାନ ହେଉଥିଲା । ଏଥିପାଇଁ କୌଣସି ଶତ୍ରୁ ତାକୁ ଆକ୍ରମଣ କରିପାରୁ ନ ଥିଲେ । ଶ୍ରୀକୃଷ୍ଣ ଜରାସନ୍ଧକୁ ବଧ କରିବାକୁ ଆସିବା ସମୟରେ ସେ (କୃଷ୍ଣ) ଗଧପାଦ ଧରି ତାକୁ ରାଜି କରାଇ ତା ମୁହଁରେ ଶଙ୍ଖ ଗୋଟିଏ ଗୁଞ୍ଜି ଦେଲେ । ଗଧ ଶଙ୍ଖରଡ଼ି ପରି ବୋବାଳି କଲା । ଜରାସନ୍ଧ ଶଙ୍ଖ ଧ୍ୱନି ଶୁଣି ଶତ୍ରୁ ଆସୁଥିବା କଥା ଜାଣି ପାରିଲା ନାହିଁ । ଏଣୁ ଶ୍ରୀକୃଷ୍ଣ ତାହାକୁ ଭୀମଦ୍ୱାରା ବଧ କରାଇଲେ ।

୭୨୧୫. ଗରଜିଲା ମେଘ ବରଷେ ନାହିଁ ।

୭୨୧୬. *ଏକାର୍ଥରେ-* ଭୋକିଲା କୁକୁର କାମୁଡ଼େ ନାହିଁ ।

ଯେଉଁମାନେ ଗର୍ବରେ ଭଡ଼ ଭଡ଼ ହୁଏନ୍ତି ସେମାନେ କାମ କମ କରନ୍ତି ।

୭୨୧୭. ଗରମ ଗାଧୁଆ, ଶିତଳ ଖିଆ ।
କାକର ବଞ୍ଚେଇ ଶୁଆ, ତା ପଛ ଆଡ଼େ ବୈଦ୍ୟ ବସି ଥାଆ ।

ଗରମ ପାଣିରେ ଗାଧୋଇଲେ, ଶିତଳ ଖାଦ୍ୟ ଖାଇଲେ, କାକରରେ ନ ଶୋଇଲେ ସ୍ୱାସ୍ଥ୍ୟ ଠିକ ରୁହେ ।

୭୨୧୮. ଗରମ ଲୁହାକୁ ଥଣ୍ଡା ଲୁହା କାଟେ ।

ଶାନ୍ତ ପ୍ରକୃତିର ମନୁଷ୍ୟ କ୍ରୋଧୀ ଲୋକ ଉପରେ ବିଜୟ ପ୍ରାପ୍ତ ହୋଇଥାଏ ।

୭୨୧୯. ଗରିବର ହାୟ, ବିପର୍ଯ୍ୟୟ ନିଶ୍ଚୟ ।

୭୨୨୦. *ଏକାର୍ଥରେ*- ଗରିବାର ହାୟ, ସର୍ବସ୍ୱ ଖାଏ ।

ଗରିବକୁ କଷ୍ଟ ଦେଲେ ବହୁତ ଦୁଃଖ ଭୋଗ କରିବାକୁ ହୁଏ ।

୭୨୨୧. ଗରିବ, ତୋର ତିନୋଟି ନାମ-ମିଥ୍ୟା, ବଦମାସ, ବେଇମାନ ।

ଗରିବ ଉପରେ ସବୁପ୍ରକାର ଦୋଷ ଲଦା ଯାଇଥାଏ ।

୭୨୨୨. ଗରିବ ରୋଜା (=ରମଜାନ ମାସର ଉପାସ) ରଖିଲେ ଦିନ ବଢ଼େ ।

ଗରିବକୁ ସର୍ବଦା ଦୁଃଖ ହିଁ ମିଳିଥାଏ ।

୭୨୨୩. ଗଭାଇ (=ସାକ୍ଷୀ) ଚୋସ୍ତ, ମୁଦେଇ (=ମକର୍ଦ୍ଦମାକାରୀ) ସୁସ୍ଥ ।

ଯାହାର କାମ ତାର ବ୍ୟସ୍ତତା ନାହିଁ ଅଥଚ ଅନ୍ୟର ତା ପାଇଁ ବ୍ୟସ୍ତତା ।

୭୨୨୪. ଗଭୀର ଜଳରେ ଦରାଣ୍ଡ, ମୋତି ପାଇବ ।

କଠିଣ ପରିଶ୍ରମ ଦ୍ୱାରା ମୂଲ୍ୟବାନ ପଦାର୍ଥ ପ୍ରାପ୍ତ ହୋଇଥାଏ ।

୭୨୨୫. ଗଣ୍ଠିରେ ଧନ (କଉଡ଼ି) ଥିଲେ ବେପରୱା ।

ଯାହା ପାଖରେ ଧନ ଥାଏ ସେ ନିଶ୍ଚିନ୍ତ ରୁହେ ।

୭୨୨୬. ଗଣ୍ଠିରେ ନାହିଁ ଧନ, ପୁରୀ ଯିବାକୁ ମନ ।

ଗଣ୍ଠିରେ ନାହିଁ ଧନ ପୁଅ ବାହାକୁ ମନ ।

ନିର୍ଦ୍ଧନ ଖର୍ଚ୍ଚାନ୍ତ ହେବାର ଯୋଜନା କରିବା ।

୭୨୨୭. *ଏକାର୍ଥରେ*- ଗଣ୍ଠିରେତ ନାହିଁ କଉଡ଼ି, ଏତେ କିଆଁ ଧାଉଡ଼ା ଧାଉଡ଼ି ।

୭୨୨୮. ଗହମ ସହିତ ଘୁଣ ମଧ ପେଶି ହୋଇଯାଏ ।

ଅପରାଧି ସହିତ ନିରପରାଧ ମଧ ସାମିଲ ହୋଇ ଦଣ୍ଡ ପାଇଥାଏ ।

୭୨୨୯. ଗର ଲୋକ ଶିର, କୁଚ ବରାବର ।

ଅନ୍ୟର ବିପତ୍ତିକୁ କେହି ବୁଝେ ନାହିଁ ।

୭୨୩୦. ଗର୍ଭ ଯନ୍ତ୍ରଣା ।-ଉତ୍କଟ ଓ ଦୀର୍ଘ ଯନ୍ତ୍ରଣା ଅର୍ଥରେ ।

୭୨୩୧. ଗର୍ଭ ସ୍ରାବ ।-ଗାଳି ଗୁଲଜ କରିବା, ଅବଗୁଣ ନଷ୍ଟ ହେବା, ଅର୍ଥଶ୍ରାଦ୍ଧ ଅର୍ଥରେ ।

୭୨୩୨. ଗର୍ଭରେ, ରଣରେ, ବିଷୟରେ, କୁକୁର-ରତୀ ରସେ ।
ପ୍ରବେଶେ ପରମ ସୁଖ, ପ୍ରାଣ ଯାଏ ଶେଷେ ।

୭୨୩୩. ଗଳଗ୍ରହ ।- ଅଯଥା ବୋଝ ।

୭୨୩୪. ଗଛ କହିବା ଅଛ ନୁହେଁ, ତାଳ ଗଛକି ଖଡ଼ିକା ହୁଏ ।

୭୨୩୫. ଗଛରେ ହଜାରେ ଘର, ଟଙ୍କାକୁ ଷୋଳଅଣା କର ।

୭୨୩୬. ଗଛର ଗୋରୁ ଗଛରେ ଚଢ଼େ ।

୭୨୩୭. ଗଳା ଧରି କହିବା ।- ସମବେଦନା ପ୍ରକାଶ କରିବା ।

୭୨୩୮. ଗଳା ନାହିଁ ଗୀତ ଗାଏ, ବିନା ସମ୍ବଳରେ ପଥ ଯାଏ ।

୭୨୩୯. ଗଳା ନାହିଁ ଗୀତ ଗାଏ, ମନର ଆନନ୍ଦରେ
ମାଇପ ନାହିଁ ଶଶୁର ଘରକୁ ଯାଏ ପୂର୍ବ ସମ୍ବନ୍ଧରେ ।

୭୨୪୦. ଗଳା ଦଉଡ଼ିଆ ଜାତ, ଅନ୍ତ କରଣ ଭାବ ।
ବ୍ରାହ୍ମଣ ଘରେ ଜନ୍ମ ହୋଇଥିବା ବ୍ୟକ୍ତି ପ୍ରାୟତଃ ଧୂର୍ତ୍ତ, କାରଣ ସେମାନଙ୍କ ଅନ୍ତରର ଭାବ ପ୍ରକାଶ ପାଏ ନାହିଁ ।

୭୨୪୧. ଗଳାରେ ଫାସି ।- ଅକସ୍ମାତ ବିପଦ ।

୭୨୪୨. ଗଳାର ହାର ବି ଭାରି ହୁଏ ।

୭୨୪୩. ଗଣ୍ଡ ଭିତରେ ଢ଼େଉ ଦେଖି ନୌକା କୂଳରେ ବୁଡ଼ାଇବା ।

୭୨୪୪. ଏକାର୍ଥରେ - ନଈ ନ ଦେଖୁଣୁ ଲଙ୍ଗଳା

୭୨୪୫. ଗଛ କାଟି କୋଦାଳ (କୁରାଢ଼ି) କରିବା ।

୭୨୪୬. ଗଛ ବୃଛର ଧନ ଉଧେ ନି, ଗଛ ହବ ଫଳ ହବ ନି ।

୭୨୪୭. ଗଛ ରୋଇଲେ ବଡ଼ କର୍ମ, ମା' ଦେଲେ ବଡ଼ ଧର୍ମ ।

୭୨୪୮. ଗାଁ ନ ଛାଡ଼େ କୁକୁରୀ, ମାଛ ନ ଛାଡ଼େ ପୋଖରୀ ।

୭୨୪୯. ଗଛରେ ପଣସ ଓଠରେ ତେଲ, କେମିତି ପଣସ ତୁଣ୍ଡରେ ଗଲ ।

୭୨୫୦. ଗଛରେ ପଣସ ନିଶରେ ତେଲ ଦେବା ।

୭୨୫୧. ଗଛରେ ପଣଷ ଗାଣ୍ଡିରେ ତେଲ ଦେଇ ବସିବା ।

୭୨୫୨. ଗୋଜରେ ଗୋରୁ ଚରାଏ, ମୁହଁରେ ଧାନ ଶୁଖାଏ ।

୭୨୫୩. ଗଣକ (ଦେବଜ୍ଞ) ଯଦି ଗଣେ(କହେ) ଠିକ୍,
ତେବେ କିଆଁ ମାଗେ ଭିକ୍ ।

୭୨୫୪. ଗଣ୍ଡାରେ ଏଣ୍ଡା ଦେବା ।

ପୂର୍ବେ ଚାଟଶାଳୀରେ ଗଣ୍ଡାକିଆ (ପଣକିଆ ପରି) ଆବୃତ୍ତି ସମୟରେ ଗଣ୍ଡାକିଆର ଶେଷ ପଦର ଶବ୍ଦ ସହିତ ମିଳାଇ ଫାଙ୍କିବା ପିଲା ଏଣ୍ଡା କହିବା । କୌଶଳ କ୍ରମେ ଯେଉଁ ଲୋକ ଫାଙ୍କି ମାରିଥାଏ ତା ପ୍ରତି ଏ ଉକ୍ତିଟି ପ୍ରଯୁକ୍ତ ।

୭୨୫୫. ଗଣ୍ଡାର ଚମଡ଼ା ।

ଗଣ୍ଡା ପରି ମୋଟା ଚମଡ଼ା । ମାଡ଼ ଅପମାନ ଯାହାର ଦିହକୁ ଲାଗେ ନାହିଁ ।

୭୨୫୬. ଗତର କୁଢ଼ୀ ଗତର ଖାଁଙ୍କି (ଖାକୀ) ।

୭୨୫୭. *ଏକାର୍ଥରେ* - ଗତର ପୋଷା, ଗତରକୁ ଘୁଣ ଖାଇବା ।

୭୨୫୮. *ଏଜନ*-ଗତର ନ ହଲେଇବା, ଗତରର ମୁଣ୍ଡ ଖାଇବା ।

୭୨୫୯. ଗତର ଖଟାଅ ଗତର ଖଟାଅ, ସୁନା ପରି ଜଳେ ।
ଗତର ପୋଷ, ଗତର ପୋଷ, ଢରି ମହମ ପରି ତରଳେ ।

୭୨୬୦. ଗତର ଥିଲେ ଭାତ ମାଠ ।

୭୨୬୧. ଗତରର ନାମ ଆଦର ମଣି, ଗତର ଥିଲେ ଖାଏ ଲହୁଣୀ ।

୭୨୬୨. ଗତରର ନାମ ପରଶମଣି, ଗତର ଥିଲେ ଖାଏ ଝୁଣି ।

୭୨୬୩. ଗତର ନାହିଁ ଚୋପାର ଦଢ଼,ମାଗି ଖାଏ ତାର ପାଲି(=ପରିମାଣ) ବଡ଼ ।

୭୨୬୪. ଗତସ୍ୟ ଶୋଚନା ନାସ୍ତି ।

୭୨୬୫. ଗଦା ଲସ୍କରୀ ଚାଲି ।

ଗଦାଧର ଲସ୍କର ନାମକ କୌଣସି ବିପୁଳ କାୟ ବ୍ୟକ୍ତିର ମନ୍ଥର ଗତି ଓ କ୍ଷୀପ୍ରତାର ଅଭାବ ହେତୁ ଏହି ପ୍ରବାଦର ଉତ୍ପତ୍ତି । ଏହା ଏକ କାଳ୍ପନିକ ଉକ୍ତି ।

୭୨୬୬. ଗବ୍ୟ ଥିଲେ ଆଗ ପଛ, କିଶ ହେବ ଶାଗ ମାଛ ।

ଘିଅ ଆହାରର ଆରମ୍ଭରେ ଓ ଦୁଧ ଆହାରର ଶେଷରେ ଖିଆଯାଏ ।

୭୨୬୭. ଗୟଂ-ଗଚ୍ଛ ପରି ଚାଲିବା ।

ନାଏବ ଫାନ୍ଦରେ ପଡ଼ି 'ଗୟଂଗଚ୍ଛ' ଭଳି ଦୁଇ ହାତ ମଳି ମଳି ଚାଲିବାକୁ ଲାଗିଲା ।

୭୨୬୮. ଗଉଡ଼ର ୮୦ ବର୍ଷରେ ବୁଦ୍ଧି ଫିଟେନି ନାବାଳି କଟେନି ।

୭୨୬୯. ଗଉଡ଼ ଯେ ଗାଡ଼ ଖୋଳେ ମାରିବାକୁ ସାଇ ଗାଈ,
ସେଇ ଗାଡ଼ରେ ମରେ ଗଉଡ଼ର ସାତ ଭାଇ ।

୭୨୭୦. ଗଉଡ଼ ଗୁଣରେ ଘିଅ, ମା' ଗୁଣରେ ଝିଅ ।

୭୨୭୧. ଗଉଡ଼ ଚୁଙ୍ଗା ଉଗୁରେଇ ଦେବ ନାହିଁ ।-ମୁଲାଦ୍ଧା ନଥିବା ବ୍ୟକ୍ତି ପ୍ରତି ।

୭୨୭୨. ଗରଜ ପଡ଼ିଲେ ଛୋଟା ବି ଡ଼ିଏଁ ।

୭୨୭୩. ଗରଦ (=ବିଷଦେବା) ଭାରି ଖରଚ କାମ ।

୭୨୭୪. ଗରଜୀ (=ଗରଜ କରୁଥିବା ଲୋକ) ଯେମିତି ଆହାମ୍ମକ ସେମିତି ।

୭୨୭୫. ଗରଜ ପଡ଼ିଲେ ଗଉଡ଼ ଭାର ବୁହେ ।

ଦୁଧ ଭାରର ଦୁଇଆଡ଼ ପଲାର ଭାରସାମ୍ୟ ରଖବବା ପାଇଁ ଗୋଟାଏ ପଲାରେ ଢେଲା ବହନ କରିଥାଏ । ନିର୍ବୋଧତାର ପରିଚୟ ।

୭୨୭୬. ଗରଜ ! ଧାନ କୁଟେ ମରଦ ।

ଗରଜ ପଡ଼ିଲେ ମରଦ ଲୋକ ମଧ ଧାନ କୁଟନ୍ତି ।

୭୨୭୭. ଗରଜରେ (=ଲାଭ) ଲୁହା ବୁହେ ।
ଅଗରଜରେ (=କ୍ଷତିରେ ) ସୁନା ବି ନୁହେଁ ।

୭୨୭୮. ଗରଜର ଗାଦ (=ତେଲ କାଣ୍ଡି ବା ମଳି) ମଥାରେ ଚଢ଼େ ।

୭୨୭୯. ଗର୍ବ କର ଯୌବନ ଭରେ, କାନ୍ଦିବାକୁ ହେବ ଅନ୍ତର ଝରେ ।

୭୨୮୦. ଗରବିଣୀ ରାଇ ।-ଗର୍ବିଣୀ ସ୍ତ୍ରୀ ପ୍ରତି କଟାକ୍ଷ ।

୭୨୮୧. *ଏକାର୍ଥରେ*-ଗର୍ବର ଗରବିଣୀ, ଏବେ ପିନ୍ଧେ ନାକରେ ନୋଥ,
ଏବେ ପିନ୍ଧେ କାନରେ ।

୭୨୮୨. ଗରମ ଭାତରେ ବିଲେଇ ବେଜାର ।-ଗରମ ଭାତ ବିଲେଇର ବଇରୀ ।

୭୨୮୩. ଗରିବକୁ ଦେଲେ ଜମା ରୁହେ । -ପୂଣ୍ୟ ହିସାବରେ ଜମା ରୁହେ ।

୭୨୮୪. ଗରିବ ଲୋକ କଙ୍କି (କାଇ) ଖାଏ,
ପାଲିଙ୍କି ଚଢ଼ି ପୋଖରୀ (=ଝାଡ଼ା) ଯାଏ ।-ବଡ଼ଲୋକୀ ପ୍ରତି କଟାକ୍ଷ ।

୭୨୮୫. ଗହିର ବିଲକୁ କୋଇଲା ବାଇ, ବଢ଼ିପାଣି ହେଲେ ନ ଯାଏ ଧୋଇ ।

୭୨୮୬. ଗଜାବୁଆ ରାଜା ।-ବୁଣାଯାଇଥିବା ଫସଲ ଗଜାହେଲେ ରାଜ୍ୟକୁ ମଙ୍ଗଳ ।

୭୨୮୭. ଗହକି ମରଣର ଠିକଣା ନାହିଁ ।

ଦୋକାନକୁ ଗ୍ରାହକ ଆସିବା ଓ ମୃତ୍ୟୁର ସମୟ ଅନିଶ୍ଚିତ ।

୭୨୮୮. ଗର୍ଜନ ନାହିଁ ବର୍ଷଣ ସାର ।

୭୨୮୯. *ବିପରୀତାର୍ଥେ* - ଗରଜିଲା ମେଘ ବରଷେ ନାହିଁ,
ଭୁକିଲା କୁକୁର କାମୁଡ଼େ ନାହିଁ ।

ବର୍ଷିଲା ମେଘ ଗରଜେ ନାହିଁ, କାମୁଡ଼ା କୁକୁର ଭୁକେ ନାହିଁ ।

୭୨୯୦. ଗରୁଡ଼ ମୂର୍ତ୍ତି ଧାରଣ କରିବା ।

ବିଷ୍ଣୁଙ୍କ ନିକଟରେ ଭୟରେ ହାତ ଯୋଡ଼ି ଅବସ୍ଥାପିତ ଗରୁଡ଼ ପକ୍ଷୀ ପରି ହେବା ।

୭୨୯୧. ଗରୁଡ଼ ଶୟନ ।

ଜନ୍ମ ପୂର୍ବରୁ ଗରୁଡ଼ ଅଣ୍ଡା ମଧ୍ୟରେ ଦୀର୍ଘକାଳ ଶୋଇଥିଲେ । ଯେଉଁ ଅଳସୁଆ ଲୋକ ଦୀର୍ଘ ସମୟଧରି ଶୋଇରହେ,ତାକୁ ଏହିପରି କୁହାଯାଇଥାଏ ।

୭୨୯୨. *ସମାର୍ଥରେ* - ଠରା ଠରି କଥାକୁହା ପତି ସଙ୍ଗେ ଦିନେ (=ଦିନବେଳେ)
ରାତ୍ରିହେଲେ ନିଦ୍ରା ଯାଏ ଗରୁଡ଼ ଶୟନେ ।

୭୨୯୩. ଗଛ ଚଢ଼େଇ, ସାତ ଦେବତା ଦେଖାଇବା ।

କୌଣସି ନିର୍ବୋଧ ବ୍ୟକ୍ତିକୁ ଗଛ ଉପରେ ଚଢ଼ାଇଦେଇ ମିଛରେ ଗଛତଳେ ନାନା ଦେବା ଦେବୀ ଓ ନାନା ପଦାର୍ଥ ଅଛି ବୋଲି ହାଙ୍କିବା ।

୭୨୯୪. ଗଛ ଚଢ଼େଇ ଖେଞ୍ଚିବା ।-ଅସୁବିଧାରେ ପକେଇବା ।

୭୨୯୫. ଗଛରେ ଚଢ଼େଇ ଦେବା ପାଇଁ ସମସ୍ତେ ଅଛନ୍ତି ।

୭୨୯୬. *ଏକାର୍ଥରେ* - ଗଛରେ ଚଢ଼ାଇ ସଭିଏଁ ପାରନ୍ତି,
ଓହ୍ଲାଇଲା ବେଳକୁ କେହି ନଥାନ୍ତି (ନାହାନ୍ତି) ।

ବିପଦ ମଧ୍ୟକୁ ଠେଲି ଦେବାପାଇଁ ବହୁତ ଲୋକ ମିଳନ୍ତି । ମାତ୍ର ସାହାଯ୍ୟ କରିବା ପାଇଁ କେହି ଆସନ୍ତି ନାହିଁ ।

୭୨୯୭. ଗଛ ନ ଚଢୁଣୁ କାଳ ।- ନଇ ନ ଦେଖୁଣୁ ଲଙ୍ଗଳା ଅର୍ଥରେ ।

୭୨୯୮. ଗଛରେ ଫୁଲ, ଶ୍ରୀକୃଷ୍ଣାୟ ନମଃ ।-ଛଳନାପୂର୍ଣ୍ଣ ପୂଜାର୍ଚ୍ଚନା ।

୭୨୯୯. *ଏକାର୍ଥରେ* - ଉଡ଼ନ୍ତା ଖଇ, ଗୋବିନ୍ଦାଏ ନମଃ ।

୭୩୦୦. ଗଛରେ ବସି କାଉ ହଗେ, କହେ ଦେଖିନି ।

ଆଖିନାହିଁ କାନନାହିଁ, ବାଜିଗଲେ ଦୋଷ ନାହିଁ ଅର୍ଥରେ ।

୭୩୦୧. ଗଛଠାରୁ ଫଳ ଭାରି ।- ଘୋଡ଼ା ଛ ଟଙ୍କା ଦାନା ନ ଟଙ୍କା ଅର୍ଥରେ ।

୭୩୦୨. *ଏକାର୍ଥରେ* - ପୁଅ (ଛୁଆ) ଠାରୁ, ପୁଅର (ଛୁଆର) ଗୁହ ଭାରି ।

୭୩୦୩. ଗଛଠାରୁ ଫଳର ଆଦର ବେଶି ।-ମା' ଠାରୁ ଛୁଆର ଆଦର ବେଶି ଅର୍ଥରେ ।

୭୩୦୪. ଗଛର ପରିଚୟ ଫଳରୁ ।

୭୩୦୫. *ଏକାର୍ଥରେ* - ଗଛଚିହ୍ନ ଫଳରୁ ।

୭୩୦୬. *ସଂସ୍କୃତରେ* - ଫଳେନ ପରିଚୟତେ ।

୭୩୦୭. ଗଛର ଫଳ ଗଛକୁ ଭାରି ନୁହେଁ ।-ମା'କୁ ଛୁଆ ଭାରିନୁହେଁ ଅର୍ଥରେ ।

୭୩୦୮. ଗଛର ମିଠା କିଏ ବା ଖାଏ, ମୁହଁର ମିଠା କିଏ ନ ପାଏ ।

୭୩୦୯. ଗଛର (ଗୋରୁର) ଶତ୍ରୁ କା' (=କାଉ) ଖେଞ୍ଚି ଖେଞ୍ଚି ଘା ।

୭୩୧୦. ଗଛର ଶତ୍ରୁ ଲତା, ମଣିଷର ଶତ୍ରୁ କଥା ।

୭୩୧୧. ଗଞ୍ଜା ଖାଇଲେ ପାଞ୍ଜା ବଢ଼େ, ଗର୍ଦ୍ଧନ ବଢ଼େ ଯୋର,
ବାପା ଦାଦାଙ୍କ ନାଁ ବୁଡ଼େଇ ଡାକେ ଗଞ୍ଜାଖୋର ।

୭୩୧୨. ଗଞ୍ଜା, ଗୁଲି, ଅନ୍ନଭଙ୍ଗା (= ଚାଉଳିମଦ),
ତିନିକୁ ନେଇ ଫରାସି-ଡ଼ିଙ୍ଗା (=ବାଲେଶ୍ୱରର ଏକ ସ୍ଥାନ) ।

୭୩୧୩. ଗଞ୍ଜା, ଗେରୁଆ ନିଶ ଦାଢ଼ି, ଏଇ ତିନିହେଁ ସାଧୁ ଭାରି ।

୭୩୧୪. ଗଞ୍ଜା, ତାଡ଼ି, ପ୍ରବଞ୍ଚନା, ତିନିକୁ ନେଇ ଶାରସ କଣା / କୁଳିଅଣା ।

୭୩୧୫. ଗଞ୍ଜାର ନାମ ରାଜଭୋଗ, ତାଡ଼ି ମାରେ ଅନ୍ତରର ରୋଗ ।

୭୩୧୬. ଗଧ ପିନ୍ଧିଲେ ବାଘ ଛାଲ, ବାଘ ନ ହୁଏ କସନ୍ କାଳ ।

୭୩୧୭. ଗଧ, ଜିନ ପିନ୍ଧି ଘୋଡ଼ା ହୁଏ ନି ।

୭୩୧୮. ଗଲା ତିନିକାଳ, ଶେଷେ ଏଇ ହାଲ ।

୭୩୧୯. ଗଙ୍ଗା ଗଙ୍ଗା, ନ ଜାଣେ କେତେ ରଙ୍ଗଚଙ୍ଗା ।
ପାଖରୁ ଦେଖ ଢଂ ଭଙ୍ଗା, ବହି ଯାଏ ଜଳ ତରଙ୍ଗା ।

୭୩୨୦. ଗଙ୍ଗା ଗଙ୍ଗା ଭାଗୀରଥୀ,
ପାପ ନିଏ ଏକ ରତି (=ସୁନାରୁପା ଓଜନ ବିଶେଷ) ।

୭୩୨୧. ଗଙ୍ଗା ଜଳରେ ଗୋବର ଗୋଳେଇବା ।
ଅତ୍ୟନ୍ତ ଶୁଚିବାଇ ଗ୍ରସ୍ତ ବ୍ୟକ୍ତି ପ୍ରତି ବ୍ୟଙ୍ଗ ।

୭୩୨୨. ଗଙ୍ଗାଜଳ ବବଲାଇବା ।
ଗଙ୍ଗାଜଳ ଧରି ମିଥ୍ୟାସାକ୍ଷୀ ଦେବା ଯାହାର ବୃତ୍ତି, ସେପରି ଲୋକ ପ୍ରତି ପ୍ରଯୁକ୍ତ ।

୭୩୨୩. ଗଙ୍ଗାରେ ବା ଗଙ୍ଗାଜଳରେ ଭସେଇ ଦେବା ।

୭୩୨୪. ଗଙ୍ଗାରେ ମଇଳା ପକାଇଲେ ଗଙ୍ଗାର ମହାତ୍ମ୍ୟ ଯାଏ ନାହିଁ ।

୭୩୨୫. ଗଙ୍ଗାରେ -ଭ (=ଅଶ୍ଳୀଳ ଗୀତ) ଗାଇଲେ ଗଙ୍ଗା ହୁଏନା ଦୁଷ୍ଟ,
ଦୁଷ୍ଟର ଗୁଣ ଗାଇଲେ ଦୁଷ୍ଟ ହୁଏନା ଶିଷ୍ଟ ।

୭୩୨୬. ଗଙ୍ଗାଯାତ୍ରା (ତୀର୍ଥ ଯାତ୍ରା) କରିବା ।

ପୂର୍ବେ ଅକର୍ମଣ୍ୟ ବୁଢ଼ାଲୋକ କାମ ଧନ୍ଦା ପାଇଁ ଅନିଚ୍ଛୁକ ହେଉଥିଲେ ସେମାନଙ୍କୁ ଗଙ୍ଗା ବା ତୀର୍ଥ ଯାତ୍ରା ପାଇଁ ଫନ୍ଦି କରି ପଠାଇ ଦିଆଯାଉଥିଲା ।

୭୩୨୭. *ଏକାର୍ଥରେ* - କାମ ଦାମ ନାହିଁ ତ ବୁଢ଼ାର
ଗଙ୍ଗାଯାତ୍ରା (=ତୀର୍ଥ ଯାତ୍ରା) କର ।

୭୩୨୮. ଗଙ୍ଗାଜଳ ଗଙ୍ଗାରେ ରହିଲା, ପିତୃ ପୁରୁଷ ଉଦ୍ଧାର ହୋଇଲା ।

୭୩୨୯. *ଏକାର୍ଥରେ* - ପୋଖରୀ ଜଳ ପୋଖରୀରେ ରହିଲା ।
ପିତୃଲୋକ ସନ୍ତୁଷ୍ଟ ହୋଇଲା ।

୭୩୩୦. ଗଙ୍ଗା ଆଡ଼କୁ ପାଦ । - ଆସନ୍ନ ମୃତ୍ୟୁ ।

୭୩୩୧. ଗଙ୍ଗାର ପଶ୍ଚିମ କୂଳ, ବାରାଣାସୀ ସମତୁଲ ।

୭୩୩୨. ଗଙ୍ଗା ସମାନ ତୀର୍ଥ ନାହିଁ,
ମାତା ସମାନ ଗୁରୁ ନାହିଁ ।
ବିଷ୍ଣୁ ସମାନ ଦେବ ନାହିଁ
ଜନ୍ମାଷ୍ଟମୀରୁ ବ୍ରତ ନାହିଁ ।
ବେଦ ସମାନେ ନାହିଁ ଶାସ୍ତ୍ର ।
ଶାନ୍ତି ସମାନ ସୁଖ ମିତ୍ର ।
ସତ୍ୟ ସମାନ ପୂଣ୍ୟ ନାହିଁ ।
କୀର୍ତ୍ତି ସମାନ ଧନ ନାହିଁ ।
ଜ୍ଞାନ ସମାନେ ଲାଭ ନାହିଁ ।
କ୍ଷମା ସମାନେ ମାତା ନାହିଁ ।

୭୩୩୩. ଗଜପୃଷ୍ଠରେ ଯେ ଯାଏ, କୋକି (=ଶୃଗାଳ) ଦେଖିଲେ ଡ଼ରାଏ ।

୭୩୩୪. *ଏକାପରି* -ଗଜପୃଷ୍ଠରେ ଯିଏ ଗଲା, ଶୃଗାଳ ଦେଖିଲେ ଭୁକିଲା ।

୭୩୩୫. -*ଏଜନ* -ହାତୀ କାନ୍ଧରେ ଆସେ ଯାଏ, ହମା ଦେଖିଲେ ଭୟ ପାଏ ।

୭୩୩୬. -*ଏଜନ* - ହସ୍ତୀ ପୃଷ୍ଠେ ଯେ ବା ଯାଏ, ହମ୍ବା କରି ସେ ଡ଼ରାଏ ।

୭୩୩୭. ଗରମ ନଜାଣି ପଙ୍ଖା ଲୋଡ଼ିବା, ମରମ ନଜାଣି କଥା ଗପିବା ।

୭୩୩୮. ଗଢ଼ି ନ ପାରେ ଏକ ଖଣ୍ଡ, ଭାଙ୍ଗି ପାରେ ସତର ଖଣ୍ଡ ।

୭୩୩୯. ଗଳାରେ ଫେଉଁରିଆ କରି ରଖିବା ।

ଅତି ଆଦର ପ୍ରୀତିରେ ବାନ୍ଧି ରଖିବା ।

୭୩୪୦. ଗଢ଼ିବ ଚାହିଲା ଠାକୁର, ଗଢୁ ଗଢୁ ହେଲା କୁକୁର ।

୭୩୪୧. *ଏକାର୍ଥରେ* - ଘଟି ଗଢୁ ଗଢୁ ଭାଣ୍ଡ ହେବା ।

୭୩୪୨. -*ଏଙ୍କନ* - ଦିଅଁ ଗଢୁ ଗଢୁ ମାଙ୍କଡ଼ ।

୭୩୪୩. - *ଏଙ୍କନ* - ଶିବ ଗଢୁ ଗଢୁ ବାନ୍ଦର ।

ପ୍ରାଚୀନ ଓଡ଼ିଆ ବ୍ୟଙ୍ଗକାର କବି ଗୋପାଳ ଉଢ଼େଙ୍କ ଦ୍ୱାରା ରଚିତ ବଙ୍ଗଳା ସାହିତ୍ୟରେ ପ୍ରଚଳିତ ପ୍ରବାଦ ।

୭୩୪୪. ଗନ୍ଧମାର୍ଦ୍ଧନ ଆଣିବା ।

ଏହି ବାକ୍ୟାଂଶଟି ପ୍ରବାଦ ଆକାରରେ ଦେଖାଯାଏ । ବାକ୍ୟଟି ହେଲା ଆଣିବାକୁ କହିଲେ ବିଶଲ୍ୟ କରଣୀ, ଆଣିଦେଲା ଗନ୍ଧମାର୍ଦ୍ଧନ ।

୭୩୪୫. ଗୟାର ପାପ ବିଦାୟ କରିବା ।

ଗୟାର ପ୍ରେତ ସହଜରେ ଉଦ୍ଧାର ପାଏ ନାହିଁ । ସେଠାରୁ ତାକୁ ତଡ଼ିବା ମଧ କଠିନ । ଅନ୍ୟ ସ୍ଥାନରେ ମଲେ ଗୟାରେ ଉଦ୍ଧାର ମିଳିଥାଏ, ମାତ୍ର ଗୟାରେ ମଲେ କେଉଁ ଠାରେ ଉଦ୍ଧାର ମିଳିବ ।

୭୩୪୬. ଗଳା ଫାଲୁଆ ପାରା ।

ବକ୍ରେଶ୍ୱର (ମହାଦେବ) ଅର୍ଦ୍ଧଚନ୍ଦ୍ର ଦାଉରେ ଗଳା ଫାଲୁଆ ପାରା ହୋଇଥିଲେ ।

୭୩୪୭. ଗଳାରେ ପଡ଼ିଛି ଢ଼ୋଲ, ବଜେଇ ଜାଣିଲେ ବୋଲ ।

ସମସ୍ତ ପରିପାଟୀ ମହଜୁତ ଥାଇ ଉପଯୁକ୍ତ ବିନିଯୋଗ ନ ଜାଣିବା ତାହା ବୃଥା ।

୭୩୪୮. ଗଛ ଭାଙ୍ଗିଲା ପୂର୍ବରୁ ଗଛର ମାଙ୍କଡ଼ ଛୁ ।

ଆସନ୍ନ ବିପଦ କାଳେ ବନ୍ଧୁବର୍ଗ ଛାଡ଼ି ପଳାନ୍ତି । ତେଣୁ କୁହାଯାଏ-'ସମ୍ପଦ ବେଳେ ସର୍ବେ ସଖା, ବିପଦେ ନ ଦିଅନ୍ତି ଦେଖା' ।

୭୩୪୯. ଗଛ ଚଢ଼ି ପାରେନି, ବଡ଼ ଫଳଟି ମୋର ।

ବିନା ପରିଶ୍ରମରେ ଅଧିକ ପାଇବାର ଆଶା ।

୭୩୫୦. ଗଛ ଫଳ ଭାରକୁ ଧରେ, ନା, ଫଳ ଭାର ଗଛକୁ ଧରେ ?

ଫଳ ଭାର ଗଛକୁ କେବେହେଁ ଧରେ ନାହିଁ । ପରନ୍ତୁ ଗଛ ଫଳ ଭାର ବହନ କରିଥାଏ । ସେହିପରି ପରିବାରର ମୁଖ୍ୟ ପରିବାରର ସଦସ୍ୟମାନଙ୍କ ପାଇଁ ଦାୟୀ ରୁହେ । ମାତ୍ର ତା ପାଇଁ ସଦସ୍ୟମାନଙ୍କର ଚିନ୍ତା ନ ଥାଏ । ତେଣୁ କୁହାଯାଇଛି ଯେ, ଧରି ଆଣିଦେଲେ ବାପ ମୋର, କୁମ୍ଭୀର ଖାଇଲେ କର୍ମ ତୋର ।

୭୩୫୧. ଗଛରେ ଚଢ଼ି ଖାଏ, ତଳୁ ବି କୁଢ଼େଇ (ଗୋଟେଇ) ଖାଏ ।

କାହାକୁ କିଛି ନ ଦେଇ ନିଜେ ଆତ୍ମସାତ କରିବା । ଅତି ସ୍ୱାର୍ଥପର ଲୋକ ।

୭୩୫୨. ଗଣ୍ଠିଲିରେ ନାହିଁ କଉଡ଼ି, ବାକି (=ଉଧାର) ଗଡ଼ର ରଜା ।

୭୩୫୩. *ଏକାର୍ଥରେ* - ଅଣ୍ଟିରେ ନାହିଁ ଧନ, ଦାରୀ କରିବାକୁ ମନ ।

୭୩୫୪. -ଏଜନ- ଅଣ୍ଟିରେ (ଗଣ୍ଠିରେ) ନାହିଁ ଧନ, ପୁଅ ବାହା କରି ମନ ।

ଧନ ନ ଥାଇ ନାନା ବିଷୟ ବ୍ୟସନରେ ମନ ବଳେଇବା ।

୭୩୫୫. ଗଲେ ଗଲା ଦାନ୍ତଟା, ତେବେ ବି ଅଛି ଓଠଟା ।

ବାର୍ଦ୍ଧକ୍ୟରେ ମଧ୍ୟ ଜ୍ଞାନର ଗାରିମା ମଳିନ ହୁଏନାହିଁ ।

୭୩୫୬. ଗତର ଦେଲେ ବି ତିନିଟି ରୁଟି, ବସି ଖାଇଲେ ବି ତିନିଟି ରୁଟି ।

ସତ୍‌କାର୍ଯ୍ୟରେ ସହାୟ ଓ ପରିଶ୍ରମ କଲେ ମଧ୍ୟ ମଣିଷ ଜୀବନ ଧାରଣ କରିବା ପାଇଁ ଯେତିକି ଖାଇବାର କଥା ସେତିକି ଖାଇବ ।

୭୩୫୭. ଗଇର (=ଅପର) ଶିର, କଦୁ (=ସାରୁ) ବରାବର ।

ଅନ୍ୟର ବିପତ୍ତିକୁ କେହି ବୁଝନ୍ତି ନାହିଁ ।

୭୩୫୮. ଗଣ୍ଠି ମରିବା । - ଅଭ୍ୟାସରେ ପଡ଼ିଯିବା ।

୭୩୫୯. ଗର୍‌ଦନ୍ ଭାଙ୍ଗିପଡ଼ିବା ।

ମୁଣ୍ଡର ଅଧିକ ବୋଝ ବହନ କରିବା, ଅତ୍ୟଧିକ ବୋଝ ଅନୁଭବ ହେବା ।

୭୩୬୦. ଗଞ୍ଜଡ଼ ଆଓ୍ୱାରା ସାଙ୍ଗ ।

ଯିଏ ସ୍ୱାର୍ଥପର ଲୋକର ସାଙ୍ଗ ହୁଏ ତାକୁ ଦୁଃଖ ଭୋଗିବାକୁ ପଡ଼େ ।

୭୩୬୧. ଗଚ୍ଚା (=ଅକାରଣରେ ଦଣ୍ଡ / ବୃଥାବ୍ୟୟ) ଦେବା ।

୭୩୬୨. ଗଜେ ଚଉଡ଼ା ଛାତି ।- ସାହସୀ ହେବା ।

୭୩୬୩. ଗଡ଼ପ (ହଡ଼ପ) କରିବା ।

୭୩୬୪. *ଏକାର୍ଥରେ* -ମାଠିଦେବା ।- ଫାଙ୍କି ଦେବା ।

୭୩୬୫. ଗଦର-ଉସର ହେବା ।- ବେଢ଼ଙ୍ଗିଆ କଥା ବାର୍ତ୍ତା ହେବା ।

୭୩୬୬. ଗଧ ପିଠିରେ ଚଢ଼େଇବା ।-ଖୁବ୍ ବଦନାମ କରିବା ।

୭୩୬୭. ଗଣତିରେ ନ ଆସିବା ।- ମାନ୍ୟତା ନ ପାଇବା, ଖାତିରଦାରୀ ନ ହେବା ।

୭୩୬୮. ଗମ ଖାଇବା ।- ଗୁମ ହୋଇଯିବା, ଚୁପ୍ ହେବା ।

୭୩୬୯. ଗରଦା ଜମିବା । - ଅପରିଷ୍କାର ହେବା, ଧୂଳି ଜମିବା ।

୭୩୭୦. ଗଣ୍ଡ ପାରି ହୋଇ ଡ଼ଙ୍ଗାକୁ ଲାଥି ।- କାମ ହାସଲ ହେଲା, କିଏ କାହାର ।

୭୩୭୧. ଗଣ୍ଡ ଶୁଖିଲେ ବି ଚିହ୍ନ ମରେନି ।

୭୩୭୨. *ଏକାର୍ଥରେ*- ନଈ ଶୁଖିଲେ ବି ରେଖା ଥାଏ ।

ମଣିଷର ଭଲମନ୍ଦଗୁଣ ମଲାପରେ ବି ରହିଥାଏ ।

୭୩୭୩. ଗଙ୍ଗା ଠାରୁ ଗୋଦାବରୀ ଯାଏ ।

ପୂର୍ବେ ଉତ୍କଳର ଭୂଖଣ୍ଡ ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

୭୩୭୪. ଗରଳେ କଲୁ ଅଧିକାରୀ, ସ୍ୱଭାବ ଛାଡ଼ିମି (ବି) କିପରି ।

୭୩୭୫. ଗଗନ ଯେହ୍ନେ ସର୍ବଶୂନ୍ୟ, ତେସନ ହେବ ଉଦାସୀନ ।

ମଣିଷ ଉଦାର ହେବା ବିଧେୟ ।

୭୩୭୬. ଗାଁ ନାମେ ବାମନା (=ବ୍ରାହ୍ମଣ), ଖେତ ନାମେ ସମନା (=ଖରା) ।

ବ୍ରାହ୍ମଣ ଥିଲେ ଗ୍ରାମର ଓ ପ୍ରଚୁର ଖରା ପଡ଼ିଥିଲେ ଖେତର ଗୁରୁତ୍ୱ ବଢ଼େ ।

୭୩୭୭. ଗାଁ ମାହାନ୍ତି, ନାଁ ମାହାନ୍ତି, ମାହାନ୍ତିଙ୍କ ପାଖେ ଥାଇ ମାହାନ୍ତି ।

ପୂର୍ବେ କରଣ ସମାଜରେ ପୋଇଲୀ ପ୍ରଥା ପ୍ରଚଳିତ ଥିଲା । ପୋଇଲୀ ସନ୍ତାନ-ମାନଙ୍କୁ ମହାନ୍ତି ଗୋଲାମ ବୋଲି କୁହାଯାଉଥିଲା । ଏବେ ଏପ୍ରଥା ପ୍ରଚଳିତନାହିଁ ।

୭୩୭୮. ଗାଁରେ ଯେବେ କରିବୁ ଘର, କିଛି ଆପଣା କିଛି ପର ।

ସ୍ୱାର୍ଥପର ହୋଇ ଗାଁରେ ଚଳିବା ମୁସ୍କିଲ, ତେଣୁ କିଛି ଆପଣା ସ୍ୱାର୍ଥ ପାଇଁ ଓ କିଛି ପରର ହିତ ସାଧନ କରିବା ପାଇଁ ତତ୍ପର ହେବା ଉଚିତ ।

୭୩୭୯. ଗାଁ କାହାର? ନାଁ ଧୋବା ଭଣ୍ଡାରୀ ବୋଲନ୍ତି ଆମର, ଆମର ।

ଧୋବା ଭଣ୍ଡାରୀ ଗାଁର ସେବାୟତ, ସେମାନେ ସେବା ବାବତକୁ ସମସ୍ତଙ୍କ ଠାରୁ ପାରିଶ୍ରମିକ ପାଆନ୍ତି ଏବଂ ଗାଁ ଆମର ବୋଲି ଦାବୀ କରିନ୍ତି ।

୭୩୮୦. ଗାଁ ଚୋର କି କନ୍ଦିରେ ବଣା ?

ଗାଁ ଚୋର ଘରର ଅନ୍ଦି କନ୍ଦି ଜାଣେ, ଖସି ପଳାଇବାର ବାଟ ମାଲୁମ ଥାଏ ।

୭୩୮୧. ଗାଁ ମାକୁ ପାଏନ୍ ଧାର କରିବା ।- ଗ୍ରାମଦେବୀଙ୍କୁ ମାଙ୍ଗଣା କରିବା ।

୭୩୮୨. ଗାଁ ଭିନ୍ ଭିନ୍ ମୁନୁଷ ଏକା ।

ଗାଁ ଅଲଗା ଅଲଗା ହୋଇପାରେ, ମାତ୍ର ମନୁଷ୍ୟର ପ୍ରକୃତି ସର୍ବତ୍ର ସମାନ ।

୭୩୮୩. ଗାଁ ଦୋହରା, ଗାଁ ବେହେରା ।

୭୩୮୪. ଗାଁ କନିଆ ସିଂଘାଣୀ ନାକୀ ।

ନିଜ ଗାଁ ଲୋକ ଯେତେ ସୁନ୍ଦର ଓ ଗୁଣର ହେଲେ ବି ସହଜରେ ସ୍ୱୀକୃତ ହୁଏନି ।

୭୩୮୫. ଗାଁର ବଇଦକେ ପଚାରନ୍ ନାଇଁ, ଦୂରୁ ଆଇଲେ ଛାଡ଼ନ୍ ନାଇଁ ।

ଗାଁ କନିଆ ସିଂଘାଣୀ ନାକୀ ଅର୍ଥରେ ।

୭୩୮୬. ଗାଁ ପରିମଳ ଧୋବା ତୁଠରୁ ଜଣା ପଡ଼େ ।

୭୩୮୭. ଗାଁ ଯୋଗୀକୁ ନ ମିଳେ ଭିକ (ଭିକ ମିଳେନା) ।

ଗାଁର ଲୋକ ଯୋଗୀର ସ୍ୱଚ୍ଛଳ ଅବସ୍ଥା ଜାଣିଥାଆନ୍ତି, ତେଣୁ ତାକୁ ଭିକ ଦିଅନ୍ତିନି ।

୭୩୮୮. ଗାଁ ବଳଦ ଗାଁରେ ବିକାଏ ନାହିଁ ।

ଗ୍ରାମବାସୀ ବଳଦର ଗୁଣ ଅବଗୁଣ ସବୁ ଜାଣି ଥାଆନ୍ତି ।

୭୩୮୯. ଗାଁ ଯାକ ମୋର ମାଇଁ, ଦଉଡ଼ି ବାନ୍ଧିବାକୁ କେହି ନାହିଁ ।

ଲଗାମ ଛଡ଼ା ଲୋକପ୍ରତି ।

୭୩୯୦. ଗାଈ (ଗୋରୁ) ମାଇଲେ ମଲି, ଗାଈକୁ (ଗୋରୁକୁ) ମାଇଲେ ମଲି ।

ଦୋ' ଘାଇରେ ପଡ଼ିବା, ଅର୍ଥାତ୍ ବିଷମ ସମସ୍ୟାରେ ପଡ଼ିବା ।

୭୩୯୧. ଗାଈ,ସହଦେବଙ୍କର, ଷଣ୍ଢ ମହାଦେବଙ୍କର,
ବଳଦ ବାପୁଡ଼ା କାହାରି ନୁହେଁ ।

ଗାଈର ରକ୍ଷା କର୍ତ୍ତା ସହଦେବ, ଷଣ୍ଢ ମହାଦେବଙ୍କ ବାହନ, କିନ୍ତୁ ବଳଦର କେହିନାହିଁ ବୋଲି ତା ପିଠିରେ ବେଶି ପାହାର ପଡ଼େ ।

୭୩୯୨. ଗାଈ ପ୍ରତିଜ୍ଞା ଗୋଠରେ, ମଣିଷ ପ୍ରତିଜ୍ଞା ଓଠରେ ।

ଲୋକର ପ୍ରତିଜ୍ଞା ପାଣି ଫୋଟକା ପରି ମିଳାଇ ଯାଏ ।

୭୩୯୩. ଗାଈ ପେଟରୁ ମାଣିକ ଜାତ ।

ଗୋରୁ ବିନା ଚାଷ, ଗାଈ ବିନା ଯଜ୍ଞ ହୋଇ ପାରୁ ନ ଥିଲା । ତେଣୁ ଗୋରୁ ପେଟରୁ ମାଣିକ ବା ଧନ ଜାତ ହେଉଛି ବୋଲି କୁହାଯାଉଥିଲା ।

୭୩୯୪. ଗାଈ ଗୁହାଳରେ ପୁଆଳ ମୁଠେ ।

ବହୁଲୋକଙ୍କ ପାଇଁ ଅଳ୍ପ ଖାଦ୍ୟର ବ୍ୟବସ୍ଥା ।

୭୩୯୫. ଗାଈ ମୁହଁରେ ଦୁଧ ।

ଦୁଗ୍ଧର ପରିମାଣ ଗାଈର ଖାଦ୍ୟ ଉପରେ ନିର୍ଭର କରେ ।

୭୩୯୬. ଗାଇଁ ଗୁଇଁ ହେବା ।- ଅନିଚ୍ଛା ପ୍ରକାଶ କରିବା ।

୭୩୯୭. ଗାଈ ଛାଡ଼ିଦେଲେ ଖାରିଆ ପଦାରେ, ବାଛୁରୀ ରହିଲା ଗୋଠେ,
ମାଆଟି ବୋଲଇ ଝିଅ ସୁନ୍ଦର, ରହିଗଲା ଧୋବା ତୁଠେ ।

୭୩୯୮. ଗାଈ ମୁହଁରେ ଦେଲେ ଘାସ, ଦୁଧ ଦୁହିଁବ ବାରମାସ ।

୭୩୯୯. ଗାଈକୁ ଘାସ, ବ୍ରାହ୍ମଣକୁ ନାସ (=ଦୋକତା ଚୂର୍ଣ୍ଣ) ।

୭୪୦୦. ଗାଉ ଗାଉ ଗାୟକ, ବଜାଉ ବଜାଉ ବାଦକ ।
ଅଭ୍ୟାସ ମଣିଷର ଦ୍ୱିତୀୟ ପ୍ରକୃତି ।

୭୪୦୧. ଗାଁ ପରିଗୁଣ ଧୋବା ତୁଠରେ ଦିଶେ,
ବନ୍ଧୁ ପରିଗୁଣ ଅଧବାଟରୁ ହସେ,
ଭାରିଯା ପରିଗୁଣ ନିତି ପତି ଘଷେ,
ବୋହୂ ପରିଗୁଣ ନିତି ପରଷେ,
ଶାଶୁ ପରିଗୁଣ ପାଞ୍ଚରେ ବସେ,
ପୁଅ ପରିଗୁଣ ବାପକୁ ପୋଷେ ।

୭୪୦୨. ଗାଏଁ ଗଲେ ମାଣେ, ଦି' ଗାଁ ଗଲେ ମାଣେ ।

୭୪୦୩. ଗାଏଁ ଗଉନ୍ତିଆ, ରାଇଜେ ରଜା ।
ରାଜା ଯେପରି ରାଜ୍ୟରେ, ଗାଁ ଗଉନ୍ତିଆ (ପଧାନ) ସେହିପରି ଗାଁର ଶାସକ ।

୭୪୦୪. ଗାଡ଼ିଆରେ ହଜାଇ ପୋଖରୀରେ ଖୋଜିବା ।

୭୪୦୫. ଗାଡୁଆଟି ଝାଡ଼ାରେ ଯାଉ, ରଇଜଳାକୁ ବାଘ ଖାଉ ।

୭୪୦୬. ଗାଣ୍ଡିକି କନାନାହିଁ, ଡ଼ମ୍ଫକୁ ଫରମାସ ।-ବାହାଦୁରିଆ ଲୋକ ପ୍ରତି ।

୭୪୦୭. ଗାଣ୍ଡି କନା ମୁଣ୍ଡରେ ବାନ୍ଧିବା ।- ରାଗିଯିବା,କ୍ରୋଧି ଓ ଜିଦିଆ ଲୋକ ।

୭୪୦୮. ଗାଣ୍ଡିକି ମେଖ ସଜାଡ଼ିବା । -ଅନ୍ୟର ଅନିଷ୍ଟ କରିବାର ଉପାୟ ପାଞ୍ଚିବା ।

୭୪୦୯. *ଏକାର୍ଥରେ*-ଗାଣ୍ଡିକି କିଲା ବା ଗୋଜ ସଜାଡ଼ିବା ।

୭୪୧୦. ଗାଣ୍ଡିମରା ଧନ ନିଆଁ ପୁହାଁରେ ଯାଏ ।

୭୪୧୧. ଗାଣ୍ଡିମରା ଶଙ୍କରା ।

୭୪୧୨. ଗାଣ୍ଡିକୁ ଅଟକଳ ନ କରି ମୂଷଳରେ ତେଲ ଲଗାଇବା ।

୭୪୧୩. ଗାଣ୍ଡିରେ କନା ରହୁନାହଁ, ଗାଣ୍ଡିଆ ଦୋଷରୁ ପାରିହେବା ।

୭୪୧୪. ଗାଣ୍ଡି ମୁଣ୍ଡା ପିନ୍ଧିବା ଲୋକ ମୁତିବାକୁ ବାଟ ରଖିଥାଏ ।

୭୪୧୫. ଗାଣ୍ଡିରେ ଗୋବର ବୋଲି ହୋଇ ଶଗଡ଼ିଆ ସାଜିବା ।

୭୪୧୬. ଗାଣ୍ଡି କଚି ଖାଇବା ।-ପୁରୀରେ, ପେଟ ପୁରେଇ ଖାଇବାକୁ କହନ୍ତି ।

୭୪୧୭. ଗାଣ୍ଡି କି ଲାଙ୍ଗୁଡ଼ ହାତେ, ଆଉକି ଅର୍ଜିବ କେତେ ?

୭୪୧୮. ଗାଦୁଲି (=ବାଦୁଡ଼ି) ଖାଇଲା ଜାମକେ (=ଜାମୁକୋଳି),
କି ପଚାରୁଛ ଆମକେ (=ଆମକୁ) ।

୭୪୧୯. ଗାନ୍ଧାରୀଙ୍କ ଘଇତା ଯେତେ ମଲେ,
ଧୃତରାଷ୍ଟ୍ରଙ୍କର ମାଇପ ସେତେ ମଲେ ।

ଯେମିତି ସ୍ତ୍ରୀକୁ ସେମିତି ପୁରୁଷ ଜୁଟିଲେ ଏଭଳି କୁହାଯାଏ । ବହୁ ସ୍ତ୍ରୀ ମଲାରୁ ଧୃତରାଷ୍ଟ୍ର ସାହାଡ଼ା ଗଛକୁ ବିଭାକଲା ପରେ ଗାନ୍ଧାରୀଙ୍କୁ ବିବାହ କରିଥିଲେ ।

୭୪୨୦. ଗାର କାଟୁ କାଟୁ ଠା- ବିନା ଚେଷ୍ଟାରେ କୌଣସି କାର୍ଯ୍ୟ ହୋଇଯିବା ।

୭୪୨୧. ଗ୍ରାହକ ଅନ୍ଧ, ଦେଖନ୍ତି ଭଲ, ନିଅନ୍ତି ମନ୍ଦ ।

୭୪୨୨. ଗାଳି ଦେବାଲୋକ ବଡ଼ ନୁହେଁ, ଗାଳି ସହିବା ଲୋକ ବଡ଼ ।

୭୪୨୩. ଗାଳି ଦେଉଥିବ ପରକୁ, ଓଲଟି ପଡ଼ିବ ଘରକୁ ।

୭୪୨୪. ଗାମୁଛା ନ ଥାଇ କି ସ୍ନାହାନ, ଆଦର ନ ଥାଇ କି ଭୋଜନ ।

୭୪୨୫. ଗାଲଚିପିଲେ (ଜନମ) ଦୁଧ ବାହାରିବ ।

ବୟସ୍କ ବ୍ୟକ୍ତିର କିଶୋର ପ୍ରତି କଟାକ୍ଷ ।

୭୪୨୬. ଗାଲରେ ଚୂନ କାଳି ଦେବା ।- ଅପମାନିତ କରିବା ।

୭୪୨୭. ଗାଲରେ ହାତ ଦେଇ ବସିବା ।-ବିଶେଷ ଚିନ୍ତିତ ହେବା ।

୭୪୨୮. ଗାଲୁ ମାଲୁ (=ମଲ୍ଲ ଯୋଦ୍ଧା) ସରି ନୁହେଁ ।

ଗାଲୁଆ ପାଖରେ ମଲ୍ଲବୀର ହାରେ ।

୭୪୨୯. ଗାଲୁଆକୁ ମାଲୁଆ (=ମଲ୍ଲ ଯୋଦ୍ଧା) ହାରେ,
ଖଉରିଆ (=ନୁଖୁରା) କୁ ତେଲ ହାରେ ।

୭୪୩୦. ଗାଲୁଆଙ୍କ ବାରବାଟି ଚାଷ ।

୭୪୩୧. ଗାଲୁଆକୁ ମହାଦେବ ପାରନ୍ତି ନାହିଁ ।

୭୪୩୨. ଗାଲ ମାଧବ ।

ମହାରାଜା ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥ ମନ୍ଦିର ନିର୍ମାଣ ଶେଷ କରି ମନ୍ଦିର ପ୍ରତିଷ୍ଠା ନିମିତ୍ତ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବାକୁ ଗଲେ । ଇତି ମଧ୍ୟରେ ବହୁକାଳ ଅତୀତ ହେଲା ଏବଂ ମନ୍ଦିର ସମୁଦ୍ର ବାଲିରେ ପୋତି ହୋଇ ପଡ଼ିଲା । ଉତ୍କଳର ରାଜା ସେହି

ମନ୍ଦିରକୁ ବାଲୁକା ସ୍ତୁପରୁ ଉଦ୍ଧାର କରି ତାହାକୁ ନିଜ ମନ୍ଦିର ବୋଲି ଦାବୀ କଲେ । ପରେ କୂର୍ମମାନଙ୍କ ସାକ୍ଷ ଦ୍ୱାରା ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥ ମନ୍ଦିର ତୋଳାଇ ଥିବା ପ୍ରମାଣିତ ହେଲା । କେହି ନିଜେ ନ ଗଢ଼ି ଅନ୍ୟ ଗଢ଼ା ପଦାର୍ଥକୁ ନିଜ ଗଢ଼ା ବୋଲି ଦାବୀ କଲେ ତାକୁ ଗାଲ ମାଧବ ବୋଲି କହନ୍ତି ।

୭୪୩୩. ଗାଈ ନାହିଁ ତ ବଳଦ ଦୁହଁ ।

ଗାଈ ଦୁଗ୍ଧ ଉତ୍ପାଦନ କରେ, ବଳଦ ଚାଷ କାମରେ ଲାଗି ଅର୍ଥ ଉପାର୍ଜନ କରାଏ । ଉଭୟେ ଅର୍ଥକାରୀ ଜୀବ ଅଟନ୍ତି । ଦୁଇ ଜଣ ଭିନ୍ନ ଭିନ୍ନ ପ୍ରକୃତିର ଲୋକ ହେଲେ ମଧ୍ୟ ଲକ୍ଷ୍ୟ ଏକ ହେଲେ ଏହା ପ୍ରଯୁକ୍ତ ।

୭୪୩୪. ଗାଉ ଗାଉ ଗାଇନ୍ । ବଜଉ ବଜଉ ବାଇନ୍ ।

ଅଭ୍ୟାସ କଲେ ଯେ କୌଣସି ବ୍ୟକ୍ତି ପ୍ରତିଷ୍ଠା ଲାଭ କରିଥାଏ ।

୭୪୩୫. ଗାଁ ନଷ୍ଟ କଣା, ପୋଖରୀ ନଷ୍ଟ ପାନ (=ଶୈବାଳ) ।

ଅବୁଝାମଣା ଲୋକେ ଗାଁ ପରିମଳକୁ ନଷ୍ଟ କରନ୍ତି, ଯେପରି ଶୈବାଳ ମାଡ଼ିଯାଇ ପୋଖରୀକୁ ନଷ୍ଟ କରେ ।

୭୪୩୬. ଗାଁ ବଡ଼ ତାର ମଝି ସାହି ।

୭୪୩୭. ଗାଁରେ ମାନନ୍ତି ନି ଗାଁ ପଧାନ ।-ଗାଁ କନିଆ ଶିଙ୍ଘାଣୀ ନାକୀ ଅର୍ଥରେ ।

୭୪୩୮. ଗାଳି ବକିଲେ ବାପକୁ ଶଳାକହେ ।

ଗାଳିଦେଲା ଲୋକର କାଣ୍ଡଜ୍ଞାନ ନଥାଏ ।

୭୪୩୯. ଗାଢ଼ (ଗାତ) ଖୋଳିବା ।-ଅନ୍ୟର ଖରାପ କରିବା ପାଇଁ ଉପାୟ ପାଞ୍ଚିବା ।

୭୪୪୦. ଗାଢ଼ ଭର୍ତ୍ତି କରିବା ।-କ୍ଷତି ପୂରଣ କରିବା ।

୭୪୪୧. ଗାଢ଼ରେ (ଗାତରେ) ପଡ଼ିବା ।-ଚାରିତ୍ରିକ ପତନ ହେବା ।

୭୪୪୨. ଗାଣ୍ଠିର ଖବର ନ ରଖିବା ।-ବେପରୁଆ ରହିବା ।

୭୪୪୩. ଗାଣ୍ଠି ଘଷିବା ।-ବହୁ ଉପଯୋଗ କରିବା । ଖୋସାମତ କରିବା ।

୭୪୪୪. ଗାଣ୍ଠି ଧୋଇ ନ ଜାଣିବା ।-ଆଚରଣ ଜ୍ଞାନ ନ ରହିବା ।

୭୪୪୫. ଗାଜର ମୂଳା ଭାବିବା ।-ତୁଚ୍ଛ ମନେ କରିବା ।

୭୪୪୬. ଗାଈ ପରି ଥରିବା ।-ଅତ୍ୟନ୍ତ ଡ଼ରିବା ।

୭୪୪୭. ଗାଲରେ ତିଳ ଥିବା ।-ସୁନ୍ଦରତାର ଚିହ୍ନ ।

୭୪୪୮. ଗାଲ (ମୁହଁ) ଫୁଲେଇବା ।-ରଷିବା, କ୍ରୁଧହେବା, ଅଭିମାନ କରିବା ।

୭୪୪୯. *ସମାର୍ଥରେ-* ନାକ ଫୁଲାଇବା ।- ବାହାଦୁରୀ ଦେଖାଇବା ।

୭୪୫୦. ଗାଁର ଯୋଗୀ ଯୋଗିନା, ଅନ୍ୟ ଗାଁରେ ସିଦ୍ଧ ।

ଯୋଗ୍ୟ ଲୋକକୁ ନିଜ ଜନ୍ମମାଟିରେ ପ୍ରତିଷ୍ଠା ମିଳେ ନାହିଁ, କିନ୍ତୁ ଅନ୍ୟ ସ୍ଥାନରେ ସେ ଆଦୃତ ହୋଇଥାଏ ।

୭୪୫୧. ଗାଈକୁ ଆପଣା ଶିଙ୍ଘ ଭାରି ହୁଏ ନି ।

ମଣିଷକୁ ଆପଣା କୁଟୁମ୍ବ ବୋଝ ଭାରି ଲାଗେ ନାହିଁ ।

୭୪୫୨. ଗାଈର ଗୁଣେ ବାଛୁରୀ, ବାପ ଗୁଣେ ପୁଅ ।

ଛୁଆ ଉପରେ ବାପ ମାଙ୍କ ପ୍ରଭାବ ଅଳ୍ପ ବହୁତ ନିଶ୍ଚୟ ପଡ଼ିଥାଏ ।

୭୪୫୩. ଗାଈରନାହିଁ ବଛା(=ଛୁଆ)ନିଦ ହୁଏ ଆଛା ।-ନିର୍ଦ୍ଧନ ବ୍ୟକ୍ତି ନିଶ୍ଚିନ୍ତ ଥାଏ ।

୭୪୫୪. ଗାଲ କଟିଲେ ବି ଚାଉଳ ଓଗାଳିବା (=ଅଟକାଇବା) ।

ହାନୀ ହେଲେ ମଧ୍ୟ ଯେଉଁ ବ୍ୟକ୍ତିର ନିଦ ନ ଭାଙ୍ଗେ ତା ପ୍ରତି ପ୍ରଯୁଜ୍ୟ ।

୭୪୫୫. ଗାଈ (ଗୋରୁ) ବି (ବୁଢ଼ୀ) ବୁଢ଼ା,
(ବେଇବା) ବିହନ ବି (ସରି) ଶେଷ ।

୭୪୫୬. ଗାଈ କିଣିବ ଝାମ୍ପୁଡ଼ୀ, ବୋହୂ ଆଣିବ ଫେଁତଡ଼ୀ (=ନେକରା) ।

୭୪୫୭. ଗାଈ କିଣିବ ଦୁହିଁ, ବଳଦ କିଣିବ ମଇ ବାହି ।

୭୪୫୮. ଗାଈ ଗଉଡ଼ର ଥିଲେ ଭାବ, ଆଣ୍ଠିଏ ପାଣିର ଅଧସେର ଦୁଧ ।

୭୪୫୯. ଗାଈର ବେଣ୍ଟି ବୋହୂର ବେଟା, ତେବେ ଜାଣିବ କପାଳ ମୋଟା ।

୭୪୬୦. ଗାଁ ଗଡ଼ାଣି ଧନ ପା (=ପାଇବା), ଯେମିତି ମା ସେମିତି ଛା ।

ଜମି ଢ଼ାଲୁ ହେଲେ ଭଲ ଧାନ ମିଳେ, ମା' ଭଲହେଲେ ତାପିଲା ମଧ୍ୟ ଭଲ ହୁଏ ।

୭୪୬୧. ଗାତ ଭିତର ସାପକୁ ଖୋଞ୍ଚି ବାହାର କରିବା ।-ବିପଦକୁ ଡାକି ଆଣିବା ।

୭୪୬୨. ଗାଙ୍ଗ ଗାଙ୍ଗ ଦେଖା ହୁଏ, ଭଉଣୀ ଭଉଣୀର ଦେଖା ନ ହୁଏ ।

ରାଜା ରାଜାର ସମ୍ପର୍କ ହୁଏ, ମାତ୍ର ଦୁଇଟି ସ୍ତ୍ରୀଲୋକ ଭଉଣୀ ହେଲେବି ସେମାନଙ୍କର ଆନ୍ତରିକ ସମ୍ପର୍କ ଭଲ ନଥାଏ ।

୭୪୬୩. ଗାଈ ଦୋଷରୁ ଗଉଡ଼ ନଷ୍ଟ ।

୭୪୬୪. ଗାଈ ପହ୍ନାରେ ଗୋବର ଦେବା ।

ମୁହଁରେ କାଳି ବୋଳିଲେ ସହିହେବ । ମାତ୍ର କୁଳରେ କାଳି ଲାଗିଲେ ଅର୍ଥାତ କୁଳକୁ କଳଙ୍କ ସହି ହେବ ନାହିଁ । ଏହି ମର୍ମରେ ନ୍ୟାୟଟି ପ୍ରଯୁକ୍ତ ।

୭୪୬୫. ଗାଈ କଳା ବୋଲି ଦୁଧ କଳା । -ଅସମ୍ଭବ କଥା ।

୭୪୬୬. ଗାଈ ନ ବେଉଣ୍ଣୁ, ଘିଅର ଦରକାର ।-ନଈ ନଦେଖୁଣୁ ଲଙ୍ଗଳା ଅର୍ଥରେ ।

୭୪୬୭. ଗାଡ଼ି,ଚାଲେ ତ ରଥ, ନ ଚାଲେତ ଅପନ୍ତରା ପଥ ।

ଚଲତିକା ନାମ ଗାଡ଼ି, ନ ଚାଲେତ ଖଟରା ଅର୍ଥରେ ।

୭୪୬୮. ଗାଡ଼ି ଉପରେ ନାଆ, ନାଆ ଉପରେ ଗାଡ଼ି ।

୭୪୬୯. ଗାମୁଛା-ମୋଡ଼ା ଦଳ ।

ପୂର୍ବକାଳରେ ଦସ୍ୟୁ ଦଳ ବେକରେ ଗାମୁଛା ପକାଇ ପଥିକମାନଙ୍କୁ ମାରି ଲୁଟତରାଜ କରୁଥିଲେ । ଏହି ଉକ୍ତିଟି ଦୁର୍ବୃତ୍ତମାନଙ୍କ ପ୍ରତି ପ୍ରଯୁକ୍ତ ।

୭୪୭୦. ଗାଁ ଅଧା, ଖାଁ (=ଖାଁ ସାହେବ ବା ସଂଭ୍ରାନ୍ତ ବ୍ୟକ୍ତି) ଅଧା ।

ଗାଁ ମୁଖିଆର ମା' ଏକାହିଁ ଅଧା ।

୭୪୭୧. ଗାଁ (=ସାଇପଡ଼ିଶା) ଗୁଣରୁ ଦୁଷ୍ଟ ଗୋରୁ (ହଡ଼ା) ବି ବିକେଇ ଯାଏ ।

୭୪୭୨. ଗାଁ କନିଆ ସିଙ୍ଗାଣୀ ନାକୀ ।

୭୪୭୩. ଗାଲୁଆ ଗଞ୍ଜ (ଗାଲୁଗଞ୍ଜ) କୋଠାବାଡ଼ି,

ବଜାର (ଖାଇବା) ଖର୍ଚ୍ଚ ଚୌଦ କୋଡ଼ି ।

୭୪୭୪. ଗାଲ ଦେଖେଇ ଚଟକଣା ଖାଇବା ।-ଆ ବଳଦ ମୋତେ ବିନ୍ଧ ଅର୍ଥରେ ।

୭୪୭୫. ଗାଲରେ କିଆଁ କାଳି, ନାଁ ପଡୁଛି ପାଳି ।-ପଶାଖେଳ ମନ୍ଦ ଅଭ୍ୟାସ ।

୭୪୭୬. ଗାଁ ଯାକର (ସାରା) ମାଡ଼କୁ, ଦୁହାଇ କରିବି କାହାକୁ ।

୭୪୭୭. ଗାତ ଅଣ୍ଟେନି ମାଟି ବିରାଡ଼ିକୁ (=ସାପ),

ଲାଞ୍ଜରେ ବାନ୍ଧିଛି କରାଟ ଟାକୁ ।

ନିଜର ଅଭାବ, ଅଥଚ ବାହାରେ ବାହାସ୍ଫୋଟ ମାରିବା ଲୋକ ପ୍ରତି ବ୍ୟଙ୍ଗ ।

୭୪୭୮. ଗାନ-ମାନ ନାହିଁ ଜଣା,

ଦୁକ୍‌ତା ପତ୍ରେ ଖାନା (=ଖାଇବା)

ଶିମୁଳି ତନ୍ତରେ ଶୋନା (=ଶୋଇବା) ।

ସଂସାର ସମ୍ପର୍କରେ କିଛି ନବୁଝି ଯାହା ତାହା ଖାଇ ବୁଲୁଥିବା ବ୍ୟକ୍ତି ପ୍ରତି କଟାକ୍ଷ ।

୭୪୭୯. ଗାଁ ନଷ୍ଟ କରେ କଣା,ଝର (=ପୋଖରୀ) ନଷ୍ଟ କରେ ଖଣା ।

ଗାଁର ଲୋକେ ଅବୁଝା ହେଲେ ଗାଁର ଶିରୀ ଏବଂ ଶୃଙ୍ଖଳା ହାନୀ ଘଟେ । ଯେପରି ଖଣାପାଣି ପଶି ପୋଖରୀ ପାଣିକୁ ଦୂଷିତ କରେ ।

୭୪୮୦. ଗାଇବା ଆଗରୁ ଗୁଁ ଗୁଁ ; ଝଡ଼ ଆଗରୁ ସୁଁ ସୁଁ ।

୭୪୮୧. ଗାଁ ନାହିଁ ତାର ମଝିରେ ପଡ଼ା (=ସାହି),
ନାକ ନାହିଁ ତାର ନୋଥଚି ଲୋଡ଼ା ।
ଉପଯୁକ୍ତ ନ ହୋଇ ଆକାଂକ୍ଷା କରିବା ଅସମୀଚୀନ ।

୭୪୮୨. ଗାଁ ଯାକ ବୁଲେ ଫେରେ, ବାଟିଏ ପାଣିରେ ଗାଧାଏ ।
ନିକର୍ମା ଅଳସୁଆ ଲୋକ ପ୍ରତି ବ୍ୟଙ୍ଗ ।

୭୪୮୩. ଗାୟକ ବଡ଼,ଦି' ହାତରେ ଖଞ୍ଜଣି ମାଡ଼ ।
ଛଳ କରୁଥିବା ଗାୟକ ପ୍ରତି ବ୍ୟଙ୍ଗ ।

୭୪୮୪. ଗାତ୍ରରେ (=ଶରୀର) ବସିଛି ଖଡ଼ି(=ଧୂଳ), କଳପ କରୁଛି ଦାଢ଼ି ।
ଭିତରେ ଅପରିଷ୍କାର ଅପରିଚ୍ଛନ୍ନ ରହି ଉପରକୁ ଚିକ୍କଣ ଦେଖାଉଥିବା ବ୍ୟକ୍ତି ।

୭୪୮୫. ଗାତ୍ରେ ଗାତ୍ରେ ଶୁଝା (=ଶୁଝିବା) ।
ନଗଦ ମୂଲ୍ୟ ନଦେଇ ତା ପାଖରେ ମୂଲ ଲାଗି ଶୁଝିବା ।

୭୪୮୬. ଗାଁ ମାନେ ନି ଯାହାକୁ, ସେ କହେ ମୁଁ ମୁଖିଆ ।

୭୪୮୭. ଗାଁଟି ଯାକର ମାତ୍ର ତିନୋଟି ଘର, ପୁଣି ତାର ପଡ଼ା ଦକ୍ଷିଣ ଉତ୍ତର ।
ଅଳ୍ପ କଥାକୁ ବଢ଼େଇ ବଢ଼େଇ କହିବା ।

୭୪୮୮. ଗାଁରେ ମଧୁଆ, ଅନ୍ୟ ଗାଁରେ ମଧୁସୂଦନ ।
ନିଜ ଗାଁରେ ଲୋକେ ନିଜ ଗାଁରେ ଆଦୃତ ହୁଅନ୍ତି ନାହିଁ ଅଥଚ ଅନ୍ୟ ଗ୍ରାମରେ ସେମାନେ ସମ୍ମାନିତ ହୋଇଥାନ୍ତି ।

୭୪୮୯. ଗାଁ ସମ୍ପର୍କରେ, ପଡ଼ା ଶେଷ ।
ଗ୍ରାମବାସୀମାନେ ପରସ୍ପର କୌଣସି ନା କୌଣସି ସମ୍ପର୍କରେ ଛନ୍ଦା । ଯାହାକି ସହର ବା ନଗରରେ ନ ଥାଏ ।

୭୪୯୦. ଗାଁ ସୁବାଦେ (=ସୁକଥା) ମୁଚି ମୁନ୍‌ସି ସଭିଏଁ ମାମୁଁ ।
ଜାତି ଧର୍ମ ନିର୍ବିଶେଷରେ ଗାଁରେ ସମସ୍ତେ ସମ୍ପର୍କୀୟ ।

୭୪୯୧. ଗାଡ଼ିବା ଶବକୁ ଖୋଳିବା ।- ପୁରୁଣା କଥାକୁ ସ୍ମରଣ କରିବା ।

୭୪୯୨. ଗାଈ ଭଳି ହେବା । - ସରଳ ସ୍ୱଭାବଯୁକ୍ତ ହେବା ।

୭୪୯୩. ଗାଣ୍ଠି ଜଳିବା ।- ଈର୍ଷା ହେବା ।

୭୪୯୪. ଗାଲ ପଶିଯିବା ।- ଦୁର୍ବଳ ହୋଇ ପଡ଼ିବା ।

୭୪୯୫. ଗାଣ୍ଡିଆଉଁସା- ଖୋସାମଦ୍ ।

୭୪୯୬. ଗିଧର (=ଶାଗୁଣା) ଦୃଷ୍ଟି ସହସ୍ର କୋଷ ।

ଶାଗୁଣା ଯେପରି ବହୁଦୂରରୁ ମଢ଼ର ସନ୍ଧାନ ପାଏ, ସେପରି ଶଇତାନ ଦୂରରୁ ଶିକାର ସନ୍ଧାନ ପାଇଥାଏ ।

୭୪୯୭. ଗିଲ କୁଞ୍ଚା ଲୁଗା ପିନ୍ଧିଛି,

ପାଚିଲା ଗାମୁଛା କାନ୍ଧରେ ପକାଇ ଝୁମୁକି କଠଉ ମାଡୁଛି ।

ପୂର୍ବେ ପୁରୀ ଜିଲ୍ଲାର ସଉକିନିଆ ବଡ଼ଲୋକମାନେ, ଗିଲଫଳ ସାହାଯ୍ୟରେ ଧୋବ ଲୁଗା ଓ ଚାଦର କୁଞ୍ଚାଇ ପିନ୍ଧୁଥିଲେ । ପୁଣି କାନ୍ଧରେ ପାଚିଲା ଗାମୁଛା ପକାଇବା ଗୋଟାଏ ଫେସନ ଥିଲା । ପଇଡ଼ ପାଣି ସୋରିଷ ତେଲ ଦ୍ୱାରା ଗାମୁଛା ପଚା ହେଉଥିଲା । ପାଚିଲା ଗାମୁଛାରୁ ଚମ୍ପାଫୁଲ ରଙ୍ଗ ଫୁଟୁଥିଲା । ଗାମୁଛା ଓ ଝୁମୁକି କଠଉ ମାଡ଼ି ଚାଲିଲା ବେଳେ ଝୁମୁଝୁମୁ ଶବ୍ଦ ହେଉଥିଲା ।

୭୪୯୮. ଗିଟପିଟ କରିବା ।

ଭଙ୍ଗା ଭଙ୍ଗା ଇଂରାଜୀ କିମ୍ବା ଅପରିଚିତ ଭାଷା କହିବା । ଗୁପ୍ତ ପରାମର୍ଶ କରିବା ।

୭୪୯୯. ଗିଧ(=ଶାଗୁଣା) ଚାହାଁଣି ।-ଲୋଭାତୁର ହୋଇ ପରଖିବା ଦୃଷ୍ଟି ।

୭୫୦୦. ଗିର୍‌ଗିଟୀ (=ଏଣ୍ଡୁଅ) ସରି (ପରି) ରଙ୍ଗ ବଦଳାଇବା ।

ତରତରିଆ ସିଦ୍ଧାନ୍ତ ବା ମତ ବଦଳାଇବା । ସୁବିଧାବାଦୀ ହେବା ।

୭୫୦୧ ଗିର୍‌ଗିଟୀ (=ଏଣ୍ଡୁଅ) ସରି (ପରି) ମୁଣ୍ଡ ଟୁଙ୍ଗାରିବା ।

ନ ବୁଝିସୁଝି ସ୍ୱୀକୃତି ବା ଅସ୍ୱୀକୃତିରେ ମୁଣ୍ଡ ହଲାଇବା ।

୭୫୦୨. ଗିଦଡ଼୍ (=କୋକିଶିଆଳି) ଧମକ ।-ମିଛରେ ଡ଼ରାଇବା ।

୭୫୦୩. *ଏକାର୍ଥରେ* - ଗେଧ(=ଅଣ୍ଡିରା ମାଙ୍କଡ଼) ଧମକ ।

୭୫୦୪. ଗିଦଡ଼୍‌ର (=କୋକିଶିଆଳି) ମରଣ ଆସିଲେ ଗ୍ରାମାଭିମୁଖି ହୁଏ ।

ବିପଦକାଳ ଉପସ୍ଥିତ ହେଲେ ମନୁଷ୍ୟକୁ ବିପରିତ ବୁଦ୍ଧି ଦିଶେ ।

୭୫୦୫. ଗିଲଟି କାମରେ ପାଲିଶ କରିବା ।

୭୫୦୬. *ଏକାର୍ଥରେ* - ଗିଲଟି କାମରେ ପାଲିଶ କରିବା,

ରାଙ୍ଗା ଟାଙ୍କରେ ତମ୍ବା ଭରିବା ।

୭୫୦୭. ଗୀତା ଗୀତାଞ୍ଜଳି ପଢୁଛି କିଏ ? ସଂସାର ଜଞ୍ଜାଳ କମାଇ ଦିଏ ?

୭୫୦୮. ଗୀତ ଗାଏ କିଏ କିଲୋ ରାଇ, ସେତ ମୋର ଦେଉରର ଭାଇ ।

ଗୁଣ ଆଗରେ ସବୁ ତୁଚ୍ଛ । ଗୁଣୀକୁ ନିଜର ସହୋଦର ବୋଲି ସମସ୍ତେ କହନ୍ତି ।

୭୫୦୯. ଗୀତ ଗାଇବା - ପ୍ରଶଂସା କରିବା ।

୭୫୧୦. ଗୁଆ ମାରି, ଗବକୁ ପାଣି ତେଣ୍ଡିବା ।
ମୂଲ୍ୟବାନ ବସ୍ତୁକୁ ଯତ୍ନ ନ କରି ନିକୃଷ୍ଟ ପଦାର୍ଥର ଯତ୍ନନେବା ।

୭୫୧୧. ଗୁଆ ଗଛ ମୂଳେ ଚିଙ୍ଗୁଡ଼ି ଜୀଅନ୍ତି ।
ଗୁଆଗଛ ମୂଳରେ ଚିଙ୍ଗୁଡ଼ି ଜୀଇଁଲା ଭଳି ବେଶି ପାଣିଦେଲେ ଗଛକୁ ଉପକାର ।

୭୫୧୨. ଗୁଆ ଖାଇବ କଷା, ଖେଳ ଖେଳିବ ପଶା ।
ବିଲ କରିବ ଯୋରି, ବୋହୂ କରିବ ଗୋରୀ ।

୭୫୧୩. ଗୁଆ ନାରିକେଳ ଚାରା ରୁଅ, ଆମ୍ବ ପଣସ ବହ ।

୭୫୧୪. ଗୁଇଁ ଥିଲେ ପୁଇଁ ବାହାରି ପଡ଼େ ।

୭୫୧୫. ଗୁଜୁଗୁଜୁଆର (ଖଣ୍ଡି ଗଣିଆର) ଦି ଗୁଣ ସରେ ।
ଗୁଜୁ ଗୁଜିଆର (ଚୋଠାର) ମାଇପ ମରେ ।
କୃପଣର ସ୍ତ୍ରୀ (ମାଇପ) ଖାଇବାକୁ ନ ପାଇ ମରେ ।

୭୫୧୬. ଗୁଡ଼ ଅନ୍ଧାରରେ ଖାଇଲେ ସୁଆଦ, ଆଲୁଅରେ ଖାଇଲେ ସୁଆଦ ।

୭୫୧୭. *ଏକାର୍ଥରେ* - ଗୁଡ଼ ଅନ୍ଧାରରେ ବି ମିଠା ଲାଗେ ।
ଅନ୍ଧାର ହେଉ ବା ଆଲୁଅ ହେଉ, ସ୍ୱାଦୁ ପଦାର୍ଥର ସ୍ୱରୂପ ଅପରିବର୍ତ୍ତିତ ଥାଏ ।

୭୫୧୮. ଗୁଡ଼ ଘରେ ପିମ୍ପୁଡ଼ି ପରିଛା (=ତତ୍ତ୍ୱାବଧାରକ) ।
ଖାଦକକୁ ଖାଦ୍ୟ ଜଗିବାକୁ ଦେବା ବୃଥା ।

୭୫୧୯. ଗୁଡ଼କୁ ଗଣେଶ କରି ଗାଣ୍ଡି କାଟି ନୈବେଦ୍ୟ ଦେବା ।
ପର ଦ୍ରବ୍ୟଦେଇ ଧର୍ମ ଅର୍ଜିବା, ଯାହାର ପଦାର୍ଥ ତାକୁ ଭେଟି ଦେବା ।

୭୫୨୦. ଗୁଡ଼ ଲେଡ଼ା (ଅଠାଳିଆ) ହେଲେ ଗଲା,
ପୁଅ ବେଡ଼ା (ବେଆଡ଼ା) ହେଲେ ଗଲା ।

୭୫୨୧. ଗୁଡ଼ ଘର ପିମ୍ପୁଡ଼ି ଖାଇବା ।
ଯେପରି ପିମ୍ପୁଡ଼ି ବେଢ଼ିବାର ଦେଖି ତତ୍କ୍ଷଣାତ୍ ପ୍ରତିକାର ନ କଲେ ଗୁଡ଼ତକ ନଷ୍ଟ ହୋଇଯାଏ, ସେହିପରି ଜରୁରୀ ପରିସ୍ଥିତିର ଦ୍ରୁତ ପ୍ରତିକାର ଆବଶ୍ୟକ ।

୭୫୨୨. ଗୁଡ଼ର ଅଗଳି (=ଲାଭ) ଚାଣ୍ଟି (=ପିମ୍ପୁଡ଼ି) ଖାଇଗଲେ ।

୭୫୨୩. ଗୁଡ଼ ଅଭାବେ ତିନ୍ତୁଳି ପଣା ।

୭୫୨୪. ଗୁଡ଼ ଚାଖୁ ଚାଖୁ ଯାଏ, ତେଲ ମାଖୁ ମାଖୁ ଯାଏ ।

୭୫୨୫ ଗୁଣଚିହ୍ନେ ଗୁଣିଆ (=ଗୁଣୀଲୋକ), ସୁନାଚିହ୍ନେ ବଣିଆ ।

୭୫୨୬. ଗୁଡ଼ କିଣିଥିଲି ଅଢ଼େଇଏ (=ଅଢ଼େଇସେର)
ପୁଅ ବାହାକଲି, ଝିଅ ବାହାକଲି,
ଆଉ ରହିଗଲା ସଢ଼େଇଏ ।

୭୫୨୭. ଗୁଣ ମଣି ଗୁଣ ସାଗର, ଗୁଣ ରଖିଲେ ଅଖା ଭିତର,
ଅଖା ଧୋଉଥିବ, ଗୁଣ ଗାଉଥିବ ।

ମନ୍ଦ କର୍ମ କରିଥିବା ଭଲ ଲୋକକୁ ଭୁଲିବା କଷ୍ଟକର । ଯେପରି ଶଶୁର ଘରକୁ ଜ୍ୱାଇଁ ନିମନ୍ତ୍ରିତ ହୋଇ ଆସିଲେ, ରାତିରେ ସେ ଅଖା ଭିତରେ ଝାଡ଼ା ଫେରିଦେଲେ କାରଣ ବାହାରକୁ ଯାଇ ଝାଡ଼ା ଫେରିବାକୁ ତର ସହିଲାନି । ଅଖାଟିକୁ ଗୁଡ଼ାଇ ରଖି ବଡ଼ି ସକାଳୁ ଚାଲିଗଲେ । ତାପରେ ଅଖା ଭିତରୁ ତାଙ୍କ ଅପକର୍ମ କଥା ବାହାରିଲା । ଅଖା ଧୁଆ ହେଲା । ଅଖା ଧୁଆ ହେଉଥିବା ସମୟରେ ବାରମ୍ବାର ତାଙ୍କର ଦୁଷ୍କର୍ମ କଥା ଚର୍ଚ୍ଚାର ବିଷୟ ହେଉଥିଲା ।

୭୫୨୮. ଗୁଣ ଥିଲେ କାନ୍ଦ, ବାଳ ଥିଲେ ବାନ୍ଧ ।

ଗୁଣୀ ଲୋକ ମରିଗଲେ ଲୋକେ ଝୁରି ହୁଅନ୍ତି, ଯେପରି ମୁଣ୍ଡରେ ବାଳ ଥିଲେ ସ୍ତ୍ରୀ ଲୋକ ମୁଣ୍ଡରେ ଖୋସା ବାନ୍ଧନ୍ତି ।

୭୫୨୯. ଗୁଣକୁ ପୂଜା, ବାଲିଗରଡ଼ାକୁ ଚାଉଳ ଭଜା ।

ମହିମା ପ୍ରକାଶିତ ଯୋଗୁ ଦେବତା ପୂଜା ପାଆନ୍ତି । ବାଲିଗରଡ଼ା ପିଲାମାନଙ୍କର ମିଛି ମିଛିକା ଦିଅଁ, ସେମାନେ ଚାଉଳ ଭଜା ଭୋଗଦେଇ ପୂଜା କରନ୍ତି ।

୭୫୩୦. ଗୁଣକୁ ପୂଜା, ଅବିଗୁଣକୁ ବାଇଦ ବଜା ।

ଲୋକର ଗୁଣ ପୂଜା ପାଏ, ମନ୍ଦ ଗୁଣ ପାଇଁ ଲୋକର ଦୁର୍ନାମ ରଟେ ।

୭୫୩୧. ଗୁଣ ଟାଣକୁ ଧନୁ ଟାଣ ।

୭୫୩୨. ଗୁଣ ଥିଲେ ଛୋଟା କନ୍ଦର୍ପ ।

୭୫୩୩. ଗୁଣ ସଂସାରକୁ, ରୂପ ମଶାଣିକୁ ।

ମଣିଷର ଗୁଣ ଚିରସ୍ଥାୟୀ, ଯୁଗ ଯୁଗକୁ ରହେ ।

୭୫୩୪. ଗୁଣ ଗାଉଛି, ଲୁଣ ଖାଉଛି ।

୭୫୩୫. ଗୁଣ ଦ୍ୟନ୍ତେ ଧନୁ ବଙ୍କା, ଚନ୍ଦ୍ର ବଙ୍କା ଦିନେ ଦିନେ,
ତେନ୍ତୁଳି ସର୍ବଦା ବଙ୍କା, ମୂର୍ଖ ବଙ୍କା ସବୁଦିନେ ।

୭୫୩୬. ଗୁରୁ ଜାଣି ଚେଲା (=ଶିଷ୍ୟ) ।

୭୫୩୭. ଗୁଣିଆ ନ ଡ଼ାକିଲେ, ଡ଼ାହାଣୀ ନ ଛାଡ଼େ ।

ପୂର୍ବେ ଲୋକଙ୍କୁ ଡ଼ାହାଣୀ ଭୂତ ଲାଗୁଥିଲା । ତାକୁ କେବଳ ଗୁଣିଆ ଆସି ମନ୍ତ୍ର ପଢ଼ି ଛଡ଼ାଉଥିଲା । ଏବେ ମଧ୍ୟ ଏ ପ୍ରକାର ପଦ୍ଧତି ଅନେକ ସ୍ଥାନରେ ପ୍ରଚଳିତ ।

୭୫୩୮. ଗୁଣୀ କି ଗୁଣୀ (=ଗୁଣିଆ) ଚିହ୍ନେ, ଧୂଆଁ ପତରକୁ ମୁଣି ଚିହ୍ନେ ।
ପୁରୁଣା ଚୋରକୁ ଚଉକିଆ (=ଗ୍ରାମରକ୍ଷୀ) ଚିହ୍ନେ ।

୭୫୩୯. ଗୁଣ୍ଡେ ଖୁଆଇ ଖୁନ୍ଦେ ମାରେ ।

ସାମାନ୍ୟ ଉପକାର କରି ତାଡ଼ନା ଦେବା ।

୭୫୪୦. ଗୁଣ୍ଡୁଚି ମୂଷା ସେତୁବନ୍ଧ ବାନ୍ଧିବା ।

ନିଷ୍ଠାପର ବ୍ୟକ୍ତିର କ୍ଷୁଦ୍ର ଉଦ୍ୟମରେ ବିରାଟ କାର୍ଯ୍ୟ ସାଧିତ ହେବା । ଯେପରି କ୍ଷୁଦ୍ର ଗୁଣ୍ଡୁଚିମୂଷା ବିରାଟ ସେତୁବନ୍ଧ ବାନ୍ଧିବାରେ ମାଟି ପକାଇଥିଲା ।

୭୫୪୧. ଗୁଣ ସୁନ୍ଦର ବୋଲି ଗୋଳି ପିଇବି କି ?
ରୂପ ସୁନ୍ଦର ବୋଲି ପାରି ଶୋଇବି କି ?

୭୫୪୨. ଗୁଞ୍ଜ ପାଣିରେ ପଡ଼ିଲେ ଲୁହା ହୁଏନାହିଁ ।

ପ୍ରତିକୂଳ ପରିସ୍ଥିତି ପ୍ରକୃତ ପ୍ରତିଭାକୁ ମଳିନ କରିପାରେ ନାହିଁ ।

୭୫୪୩. ଗୁପ୍ତ ଦାନର ଗୁଣ ବେଶି, ଗୁପ୍ତ ପାପର ଖୁଣ ବେଶି ।

ସମସ୍ତଙ୍କ ଅଗୋଚରରେ ଦାନ କରିବାର ଫଳ ସବୁଠାରୁ ଅଧିକ ମାତ୍ର ଲୁଚେଇ ଛପେଇ ପାପ କଲେ ତାର ଫଳ ଉତ୍କଟତର ।

୭୫୪୪. ଗୁବାନେ ଗୋମୟ, ବାଉଁଶେ ମାଟି,
ଅଫଳା ନଡ଼ିଆ ଚେରକୁ କାଟି ।

୭୫୪୫. ଗୁରୁ ବଚନ କି କରିବ, ଯାହାର ଯେମନ୍ତ ସ୍ୱଭାବ ।

ମଣିଷର ସ୍ୱଭାବ ବଦଳାଇବା କଷ୍ଟକର, ତେଣୁ ଗୁରୁ ଉପଦେଶ ବୃଥା ।

୭୫୪୬. ଗୁରୁ ନିନ୍ଦା ନର୍କେ ଯାନ୍ତି, ବିପ୍ର (=ସାଧୁସନ୍ଥ) ନିନ୍ଦା କୁଳ କ୍ଷୟ ।

୭୫୪୭. ଗୁହ ସରା କାଢ଼େ, ଭାତ ସରାଏ ଖାଏ ।

ମୁଠାଏ ଅନ୍ନ ଲାଗି ବହୁ କଷ୍ଟ କାମ କରାଯାଏ ।

୭୫୪୮. ଗୁହାଳ ସଫାଥିଲେ, ଗାଈ ହମାଳି ପଶେ ।
ଚିତ୍ତ ଶୁଦ୍ଧଥିଲେ ଭଗବାନ ଆପେ ଆପେ ବିଜେ କରନ୍ତି ।

୭୫୪୯. ଗୁହ ଭାଇ ପାଦ଼ ।- ମନ୍ଦର ସଙ୍ଗୀ ମନ୍ଦ ।

୭୫୫୦. ଗୁହରେ ଗୋବର ଲେସିବା ।
ମନ୍ଦକୁ ହଟାଇବା ପାଇଁ ଆଉ ଏକ ମନ୍ଦ କର୍ମ କରିବା ।

୭୫୫୧. ଗୁହେର ବୁହେର ଛାଡ଼ିବା । -ତ୍ରାହି ତ୍ରାହି ଡ଼ାକିବା ।

୭୫୫୨. ଗୁହରୁ ଟଙ୍କା ଖୁଣ୍ଟିବା ।-କୃପଣତାର ଚରମ ଦୃଷ୍ଟାନ୍ତ ।

୭୫୫୩. ଗୁହର ଏପିଠି ସେପିଠି ଦୁଇ ପିଠି ସମାନ ।
ନୀଚ ଓ ଘୃଣ୍ୟ ପଦାର୍ଥକୁ ଯେଉଁ ଦିଗରୁ ବିଚାର କଲେ ମଧ୍ୟ ଏକା କଥା ।

୭୫୫୪. ଗୁହ କୁଟା ଆଣି ଘରେ ପୁରେଇବା ।-ଅତ୍ୟନ୍ତ ଲୋଭୀ ।

୭୫୫୫. ଗୁହକୁ ମାଇଲେ ମୁହଁକୁ ପଡ଼େ ।-ହୀନ କାର୍ଯ୍ୟର ଛିଟା ନିଜ ଉପରେ ପଡ଼େ ।

୭୫୫୬. ଗୁହ କାଢି କିଆଁ ନାକରେ ହାତ ।-ହୀନ କାର୍ଯ୍ୟ କରି ଘୃଣା ପ୍ରକାଶ କରିବା ।

୭୫୫୭. ଗୁଲଙ୍କି ସୁଆଁ ପାଚିଲା, ଖାଡ଼ିଆ ବୁଢ଼ା ନାଚିଲା ।
ଖଡ଼ିଆ ଆଦି ଗରିବ ଲୋକ ବର୍ଷା ମାସରେ ଧାନକିଆରୀରେ ଆପେ ଉଠିଥିବା ଗଛରୁ ସୁଆଁ ନାମକ ଖାଦ୍ୟଶସ୍ୟ ସଂଗ୍ରହ କରି ଚାଉଳ ବାହାର କରି ଖାଆନ୍ତି ।

୭୫୫୮. ଗୁଣ ନାହିଁ, ଜ୍ଞାନ ନାହିଁ, ପାପିଷ୍ଠାମି ସାର ।

୭୫୫୯. ଗୁଣରେ ଗୁଣ୍ଠା ବର, ପାଗଲା ।

୭୫୬୦. ଗୁଣରେ ଆସ୍ତରଣ ଦେବାର ନାହିଁ ।

୭୫୬୧. ଗୁଣ ଭିତରେ ଆଖୁଠାର ।

୭୫୬୨. ଗୁରୁ ଘାଣ୍ଟିଲେ ବିଦ୍ୟା ମିଳେ, ମୂର୍ଖ ଘାଣ୍ଟିଲେ ମାଡ଼ ମିଳେ ।

୭୫୬୩. ଗୁରୁଙ୍କ ବାକ୍ୟ ନ ଶୁଣେ କାନେ, ପିଛୁଳି (=ବାଗୀ) ପଡ଼େ ଅନୁକ୍ଷଣେ ।

୭୫୬୪. ଗୁହାଳେ ଦୁଧିଆଳୀ ଗାଈ,
ଖଳାରେ ଥିବ ଧାନ;
ଗଡ଼ିଆରେ ଭରା ମାଛ,
ଟଙ୍କାର ନାହିଁ ଟାଣ;
ପୁଅ ନାତି ପଢ଼େ ପାଠ,
ଖାଆନ୍ତି ଦୁଧଭାତ;
କଳିଯୁଗ ମଣିଷ ନୁହେଁ,
ସେତ (ସେଇ) ଜଗନ୍ନାଥ ।

୭୫୬୫. ଗୁଆଁର (=ନିର୍ବୋଧ) ଗୋବିନ୍ଦ ।

୭୫୬୬. ଗୁଆଁରର ମରଣ ଗନ୍ଧ ଅଗରେ ।

୭୫୬୭. *ଏକାର୍ଥରେ:-* ଗୁଆଁରର ମରଣ ଡ଼ାଳେ ବା ଖାଳେ ।

୭୫୬୮. ଗୁଣ୍ଡାମୀ ବୋଲି ।- ଧମକ ଦେଇ କହିବା ।

୭୫୬୯. ଗୁଡ଼ ଗୋବର କରିବା ।-ସଠିକ କାର୍ଯ୍ୟକୁ ବିଗାଡ଼ି ଦେବା ।

୭୫୭୦. ଗୁଡ଼ ଦେଖେଇ ବୋଳୁଅ (ହୁଡ଼ା) (ଟେକା) ମାରିବା ।
ଲୋଭ ଦେଖାଇ ଅନିଷ୍ଟ ଘଟାଇବା ।

୭୫୭୧. ଗୁଡ଼ିୟା (=କଣ୍ଢେଇ) ସରକାର ।
ସ୍ତ୍ରୀ ପ୍ରାଧାନ୍ୟ ଶାସନ ତଥା ନିର୍ଜୀବ ଶାସନ ।

୭୫୭୨. ଗୁଲଜାର ଉଡ଼େଇବା ।-ମଉଜ ମଜଲିସ କରିବା ।

୭୫୭୩. ଗୁସ୍‌ସା(=କ୍ରୋଧ) ଉତାରିବା ।-କ୍ରୋଧ ଶାନ୍ତ କରିବା ।

୭୫୭୪. ଗୁସ୍‌ସା(=କ୍ରୋଧ) ଥୁ କରିବା ।-କ୍ରୋଧକୁ ଶେଷ କରି କ୍ଷମା କରିବା ।

୭୫୭୫. ଗୁସ୍‌ସା(=କ୍ରୋଧ) ପିଇଯିବା ।-କ୍ରୋଧ ସମ୍ବରଣ କରିବା ।

୭୫୭୬. ଗୁସ୍‌ସା ହାଓ୍ୱା (=ହାଉଆ) ହୋଇଯିବା ।-କ୍ରୋଧ ଖତମ ହୋଇଯିବା ।

୭୫୭୭. ଗୁହ ଉଝାଳିବା । (ଗୁହ ଉଠେଇବା ।)
ପାଇଖାନା ସଫା କରିବା  ବା ତୁଚ୍ଛରୁ ତୁଚ୍ଛ ସେବା କରିବା ।

୭୫୭୮. ଗୁହ ଟୋକେଇ ମୁଣ୍ଡରେ ଉଠାଇବା(ମୁଣ୍ଡେଇବା) ।
ବଦନାମ ଓ କଳଙ୍କ ଆପଣା ଉପରକୁ ନେବା ।

୭୫୭୯. ଗୁହ ଖାଇବା ।-ଅନିଶ୍ଚିତ ଓ ଭ୍ରଷ୍ଟ କାର୍ଯ୍ୟ କରିବା ।

୭୫୮୦. ଗୁହକୁ ଢେଲା ଫିଙ୍ଗିବା ।
ଖଚଡ଼ ଲୋକ ସହିତ ବାକବିତଣ୍ଡା କରି ସ୍ୱୟଂ ଭୋଗିବା ।

୭୫୮୧. ଗୁହରେ ଗାଧୋଇବା ।-ଅତ୍ୟନ୍ତ ବଦନାମ ହେବା ।

୭୫୮୨. ଗୁଙ୍ଗା (=ମୂକ) କାଲ ହେବା ।-ଶୁଣି ନ ଶୁଣିଲା ପରି ହେବା ।

୭୫୮୩. ଗୁହ ମୁତ ଉଠେଇବା ।-ଅତ୍ୟଧିକ ସେବା କରିବା ।

୭୫୮୪. ଗୁଡ଼ ଢ଼ାଳିଲେ ହିଁ ମିଠା ।
ମନୁଷ୍ୟର ଭଲ ବା ମନ୍ଦ ପ୍ରକୃତି ତାର ପରିପ୍ରକାଶରୁ ଜଣା ପଡ଼େ ।

୭୫୮୫. ଗୁଡ଼ ଦେଇ ଖାଇଲେ ଗୋଲମରିଚ ବି ମିଠା ଲାଗେ ।
ଖରାପ ପ୍ରକୃତିର ଲୋକ ସୁସଙ୍ଗରେ ପଡ଼ିଲେ ଉତ୍ତମ ହୋଇଯାଏ ।

୭୫୮୬. ଗୁଣ ଥିଲେ କାନ୍ଦେ, ଲୁଣ ଥିଲେ ରାନ୍ଧେ ।

ଧନ ଥିଲେ ବିପଦ ଆସିବ ହିଁ ଆସିବ, ତେଣୁ କାନ୍ଦିବାକୁ ପଡ଼ିଥାଏ । ଯେପରି ବିନା ଲୁଣରେ ରନ୍ଧନ କ୍ରିୟା ଅରୁଚିକର ।

୭୫୮୭. ଗୁଣରୁ କଉଡ଼ି ପାଣିରେ ପଡ଼େ ।-ନିଜ ଦୋଷରୁ ଧନ ଅଯଥାରେ ଯାଏ ।

୭୫୮୮. ଗୁଣରେ ଗୁଛିଲେ ବି ଘୁଷୁରି (=କୁତ୍ସିତ ବ୍ୟକ୍ତ) ପାଗଳ

ଗୁଣହୀନକୁ ଗୁଣବାନ କରିବାକୁ ଚେଷ୍ଟା କଲେ ସେ ପାଗଳ ହୋଇଯାଏ ।

୭୫୮୯. ଗୁଣର ବଡ଼ିମା ଦେଖାଇ ମରିବା ।-ଅପଗୁଣ ପ୍ରକାଶ କରୁଥିବା ବ୍ୟକ୍ତି ପ୍ରତି ।

୭୫୯୦. ଗୁହ ମାଡ଼ି ଯାଅ, ଦରବାର ମାଡ଼ ନି ।

ବିପଦ ଆପଦ ପଡ଼ିଲେ ସହି ଯାଅ । କୋର୍ଟ କଚେରୀର ଆଶ୍ରୟ ନିଅ ନାହିଁ ।

୭୫୯୧. ଗୁଆ ପାନ ଅଭାବେ, ଦୁର୍ଗୋତ୍ସବ (=ଦୁର୍ଗାପୂଜା) ଅଟକେନି ।

ନଗଣ୍ୟ ବସ୍ତୁ ସକାଶେ ବଡ଼ କାର୍ଯ୍ୟ ଅସମାପ୍ତ ରହେ ନାହିଁ ।

୭୫୯୨. ଗୁହ କହେ ଗୋବର ଭାଇ ତୋ ଦେହ ଗନ୍ଧ ।

୭୫୯୩. *ଏକାର୍ଥରେ*-ଚାଲୁଣୀ କହେ ଛୁଞ୍ଚିଲୋ ତୋ ଗାଣ୍ଡିରେ ଗୋଟିଏ କଣା ।

ନିଜର ସହସ୍ର ଦୋଷ ଥାଇ ଅନ୍ୟର ସାମାନ୍ୟ ଦୋଷକୁ ନିର୍ଦ୍ଦେଶିତ କରିବା ।

୭୫୯୪. ଗୁହ କହେ- ଗୋବରା ପୁଅର ବନମାଳୀ ନାଁ ଦେବ ।

କହନି କହନି ଗୁହ, ହଗୁରୀ ନାନୀ ଯେବେ ଶୁଣିବ, ହସି ହସି ଗଡ଼ିବ ।

୭୫୯୫. ଗୁହରେ ବସାଇ ଦେବା ।-ଅତ୍ୟନ୍ତ ହୀନ କାର୍ଯ୍ୟ କରିବା ।

୭୫୯୬. ଗୁହରେ ହାତ ।-ଅବାଞ୍ଛନୀୟ ମନ୍ଦ ବା ହୀନ ଭାଗ୍ୟ ।

୭୫୯୭. ଗୁରୁ ମୁତେ ଠିଆ ଠିଆରେ, ଶିଷ୍ୟ ମୁତେ ଚକ୍ରାକାରେ ।

୭୫୯୮. ଗୁରଙ୍କ କଥା ନ ଶୁଣେ କାନେ,

ପ୍ରାଣଟି ଯିବ ଚିନ୍‌ଚିନ୍ (=ହିକ୍‌କି) ଟାଣେ ।

ଗୁରୁଙ୍କର କଥା ନ ମାନି କାର୍ଯ୍ୟ କଲେ ବିଭ୍ରାଟର ସମ୍ମୁଖୀନ ହେବାକୁ ପଡ଼ିଥାଏ ।

୭୫୯୯. ଗୁରୁ ଶିଷ୍ୟ ଚୌତାର(=ଚାରିତାର ବିଶିଷ୍ଟ ତାନପୁରା ଜାତୀୟ ବାଦ୍ୟ ଯନ୍ତ୍ର)

ଭଜନ ଯାର, ସେଇ ପାର ।

୭୬୦୦. ଗୁହ ଦିହରେ ମଖେଇ ହେଲେ ବି ଯମ ନ ଛାଡ଼େ ।

୭୬୦୧. ଗୁହ ଖାଏନି ଗନ୍ଧ ବୋଲି, ଲୁହା ଖାଏନି ଶକ୍ତ ବୋଲି ।

୭୬୦୨. ଗୋଟି ପୋକ ଗୋଟି କରେ, ଆପଣା ବୁଦ୍ଧିରେ ଆପେ ମରେ ।

୭୬୦୩. ଗୁଡ଼ ଖାଏ, ପାଟାଳି (=ଖଜୁରୀ ଗୁଡ଼) ହଗେ ।

୭୬୦୪. ଗୁଡ଼ ବ୍ୟାଘ୍ର ।

ଗୁରୁଚଣ୍ଡାଳ ଦୋଷର ଉଦାହରଣ । ପାଦ୍ରି ଜେମସ୍ ଲଙ୍ଗ (ଆଦି ଓଡ଼ିଆ ପ୍ରବାଦ ସଂଗ୍ରାହକ) ଏହିପରି ବ୍ୟାଖ୍ୟା କରିଛନ୍ତି- କୌଣସି ବ୍ୟକ୍ତି କୌଣସି ଗ୍ରାମର ନିବାସୀ ମଧୁ ସିଂହ ନାମକ କୌଣସି ଲୋକର ନାମ ଭୁଲିଯାଇ, ନାମର ଦୁଇଟି ଶବ୍ଦର ଗୋଟିକରେ ମିଷ୍ଟ ଓ ଅନ୍ୟଟିରେ ଭୟାନକତା ଅଛି ବୋଲି କେବଳ ମନେ ପଡ଼ିଲାରୁ 'ମଧୁ ସିଂହ' ସ୍ଥାନରେ 'ଗୁଡ଼ ବ୍ୟାଘ୍ର' ଏପରି ନାମ କରଣ କଲା । ବ୍ୟଙ୍ଗ କରି ଆମେ ଯେପରି 'ଦୋକାନ ବନ୍ଦ'କୁ ଇଂରାଜୀରେ Shop Stop, Shop Closed ପରିବର୍ତ୍ତରେ କହିଥାଉ ।

୭୬୦୫. ଗୁଡ଼ ଗନ୍ଧରେ ପିମ୍ପୁଡ଼ି ଆସନ୍ତି ।

୭୬୦୬. *ଏକାର୍ଥରେ* - ଗୁଡ଼ ଥିଲେ ପିମ୍ପୁଡ଼ି ।

୭୬୦୭. *-ଏଜନ* - ଗୁଡ଼ ଯେଉଁଠି ପିମ୍ପୁଡ଼ି ସେଇଠି ।

୭୬୦୮. ଗୁଡ଼ ଘରେ ଜନ୍ଦା କର୍ତ୍ତା ।

୭୬୦୯. ଗୁଣି କରି ମେଣ୍ଢା କରିବା ।

୭୬୧୦. *ଏକାର୍ଥରେ* - ଛଣ୍ଡା (=ଚାକର) ଗୁଣି କଲେ ମେଣ୍ଢା ।

୭୬୧୧. ଗୁଣି-ଗାରିଡ଼ି ଛଅ ମାସ, କପାଳ ଭୋଗ ବାରମାସ ।

୭୬୧୨. ଗୁଣ ଯାର ଅଛି ପେଟେ,
ସେ କି କେବେ ରାଗି ଉଠେ । (ତାର କି ରାଗ ଚହଟେ ।)

୭୬୧୩. ଗୁଣ ନାହିଁ ପଲାଣ (=ଭାରବାହୀ ପଶୁ ପିଠିର ଗଦି) ଅଛି ।

୭୬୧୪. ଗୁଣ ଥାଇ ଦୋଷ ହେଲେ ବିଦାୟ ବିଦାୟ,
ମଦ ଖାଇବା-ଖୁଆଇବା ବଡ଼ ଦାୟ (=ଦୋଷ) ।

୭୬୧୫. ଗୁଣ କଉଡ଼ି ପାଣିରେ ପକେଇବା ।-ଗୁଣକୁ ଅନାଦୃତ କରିବା ।

୭୬୧୬. ଗୁଣରେ ଘାଟତି ନାହିଁ ।

୭୬୧୭. ଗୁଣରେ ନୁଣ ଦେବ ନାହିଁ ।

ନୁଣ ନ ଦେଇ ଯେଉଁଠାରେ ସ୍ୱାଦ ସେଠାରେ ନୁଣର ଆବଶ୍ୟକତା ନାହିଁ । ନିର୍ଗୁଣ ବ୍ୟକ୍ତିକୁ ବିଦ୍ରୁପ କରିବାରେ ପ୍ରଯୁକ୍ତ ।

୭୬୧୮. ଗୁଣର ଆଦର ଗୁଣୀରେ, ଫୁଲର ଆଦର ଭଅଁରରେ ।

୭୬୧୯. ଗୁଣ ଆଉ ସୀମା ନାହିଁ, ଆରେ ମୋର ଭଣଜା କହ୍ନେଇ ।

କହ୍ନେଇ ଭଣଜା - ମାଇଁ ରାଧାଙ୍କ ସଙ୍ଗେ କୃଷ୍ଣଙ୍କ ପ୍ରେମ ବର୍ଣ୍ଣିତ ଗଳ୍ପଟିର ଅର୍ଥରେ ଏହି ଉକ୍ତିଟି ପ୍ରକଟିତ ।

୭୬୨୦. ଗୁଣର କଥା କହିବି ସତ, କୁମ୍ଭକର୍ଣ୍ଣ ନିଦ୍ରାଗତ ।

ଶେଯମୁତୁରା ଅଣ୍ଡାରକଣା ଦୁର୍ବାକ୍ୟ ସ୍ୱାମୀର ଗୁଣ ବର୍ଣ୍ଣନା ଏହି ଉକ୍ତିଟିରେ ପ୍ରତିପାଦିତ ହୋଇଛି ।

୭୬୨୧. ଗୁଣ ଭିତରେ ଆଖି ଠରା, ନା ଆଖି ଟେରା ।

୭୬୨୨. ଗୁପ୍ତ ବୃନ୍ଦାବନ ।

ବୈଷ୍ଣବମାନଙ୍କର ଅଗ୍ରକର ଲୀଳାର ବୃନ୍ଦାବନ । ବିଦୃପ କଲାବେଳେ ଏପରି କୁହାଯାଇଥାଏ ।

୭୬୨୩. ଗୁରୁ ଚାଣ୍ଡାଳ ଦୋଷ ।

ସାଧୁଭାଷା ସହିତ ଅପଭାଷାର ମିଶ୍ରଣ ଜନିତ ଦୋଷ । ଉଦାହରଣ ଏହାର କ୍ର:ନଂ: ୭୬୦୪ ଦ୍ରଷ୍ଟବ୍ୟ ।

୭୬୨୪. ଗୁରୁ ଛାଡ଼ି ଗୋବିନ୍ଦ ଭଜେ, ସେ ଜନ ନରକ ଖୋଜେ ।

୭୬୨୫. *ଏକପ୍ରକାର* - ଗୁରୁ ନାହିଁ ଯେ ଭଜେ ଗୋବିନ୍ଦ ,
ସେ ଜନ ପାଏ ନର୍କ ଆନନ୍ଦ ।

୭୬୨୬. ଗୁରୁ ଧରେ ଶିଷ୍ୟପାଦ, ଗୁରୁ ଶିଷ୍ୟ ସ୍ୱର୍ଗେ ବାସ ।

୭୬୨୭. ଗୁରୁ ବୋବା, ଶିଷ୍ୟ କାଲା

୭୬୨୮. ଗୁରୁ ନାମ ସତ୍ୟ, ଯେ ଜାଣେ ମହାତ୍ମ୍ୟ ।

୭୬୨୯. ଗୁରୁ ପୁରୋହିତ କଲେ ଦ୍ୱନ୍ଦ୍ୱ, କାହାକୁ କହିବା ଭଲମନ୍ଦ ।

୭୬୩୦. *ଏକପ୍ରକାର* - ଗୁରୁ ପୁରୋହିତ ଦ୍ୱନ୍ଦ୍ୱ, କିଏ ବା ଭଲ କିଏ ବା ମନ୍ଦ ।

୭୬୩୧. ଗୁରୁ ମରା ବିଦ୍ୟା ।

ଗୁରୁ ଠାରୁ ଶିକ୍ଷା କରିଥିବା ବିଦ୍ୟା ଦ୍ୱାରା ଗୁରୁଙ୍କୁ ମାରିବା । ଅର୍ଥାତ୍ 'ଗୁରୁମରା ଚେଲା' ।

୭୬୩୨. ଗୁରୁ ମିଳେ ଲକ୍ଷରେ, ଶିଷ୍ୟ ନ ମିଳେ ଗୋଟିଏ ।

୭୬୩୩. ଗୁଳି, ଖିଲି, ମୋତିଚୁର, ତିନିଙ୍କି ନେଇ ବିଷ୍ଣୁପୁର ।

୭୬୩୪. ଗୁଳି ମାରିବା ।

ତ୍ୟାଗ ବା ଉପେକ୍ଷା କରିବା, ଯେପରି ଖୋସାମଦିଆ କଥାକୁ ଗୁଳି ମାର ।

୭୬୩୫. ଗୁରୁ ଅତିଥି ଦେବ ପୂଜା, ପୁରେ ଭୁଞ୍ଜନ୍ତି ବହୁ ଦ୍ୱିଜା,
ଶ୍ରୀଲକ୍ଷ୍ମୀ ସ୍ଥିରରେ ଅଛନ୍ତି, ଏତେ ଐଶ୍ୱର୍ଯ୍ୟ ବର ଦ୍ୟନ୍ତି ।

୭୬୩୬. ଗୁରୁ ମାତା, ଗୁରୁପିତା, ଗୁରୁ ହନ୍ପତି,
ଗୁରୁବିନା ତ୍ରିସଂସାରେ ନାହିଁ ଆନଗତି ।

ଏହିକାରଣରୁ ଗୁରୁଦେବ ହିଁ ଜୀବର ଗତି ମୁକ୍ତି ଦାତା ।

୭୬୩୭. ଗୁରୁଙ୍କୁ ନ ମଣିବ ନର, ଗୁରୁହିଁ ସାକ୍ଷାତ ଈଶ୍ୱର ।

ବ୍ୟାସନନ୍ଦନ ଶୁକଦେବ, ପ୍ରଜାନୁରଂଜନ ଦେବପ୍ରତିମ ରାଜା ପରୀକ୍ଷିତଙ୍କୁ କହିଥିଲେ ।

୭୬୩୮. ଗୁରୁଟି ସର୍ବଧର୍ମ ମୟେ, ମୁହିଁ ବସଇ ଗୁରୁ ଦେହେ ।

ଏଠାରେ ମୁହିଁ ହେଉଛନ୍ତି ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ । ଅର୍ଥାତ୍ ଗୁରୁ ଓ କୃଷ୍ଣଙ୍କ ମଧ୍ୟରେ କିଛି ପ୍ରଭେଦ ନାହିଁ । ମହିମା ପ୍ରକଟ ଦୃଷ୍ଟିରୁ ଗୁରୁ ଓ କୃଷ୍ଣ ସମାନ ।

୭୬୩୯. ଗୁଡ଼ ହଳଦୀ ବାଣ୍ଟିବା - ଭୋଜନରେ ଆପ୍ୟାୟିତ କରିବା ।

୭୬୪୦. ଗୁରୁ ଘଣ୍ଟାଳ ବନିବା ।

ଭଣ୍ଡଗୁରୁ ସାଜିବା, ବଦ୍‌ମାସଙ୍କର ସର୍ଦ୍ଦାର ହେବା, ବହୁତ ହୁସିଆର ଦେଖେଇବା ।

୭୬୪୧. ଗୁରୁ ବନିବା ।-ଚାଲବାଜ, ଧୂର୍ତ୍ତ, ଉପଦେଶକ ହେବା ।

୭୬୪୨. ଗୁହକୀଡ଼ା - ଅତ୍ୟନ୍ତ ନୀଚ ।

୭୬୪୩. ଗୁହ ଖାଇବା ।- ଅତ୍ୟନ୍ତ ନୀଚ କାମ କରିବା ।

୭୬୪୪. ଗୁରୁ ମାଳ ଛୁଇଁବା । -ନିଜ କଣ୍ଠିମାଳ ଛୁଇଁ ନିୟମ କରିବା ।

୭୬୪୫. ଗୁଡ଼ ଖାଏ, ଗୁଲଗୁଲାକୁ ଆଡ଼ାଏ ।

ବଡ଼ ଦୁର୍ଘଟଣା ଘଟାଇ ଛୋଟରୁ ବଞ୍ଚିବାକୁ ଚେଷ୍ଟା କରିବା । ବଡ଼ ଘୃଣ୍ୟ କର୍ମକରି ଛୋଟରୁ ନିବୃତ ହେବା ।

୭୬୪୬. ଗୁଡ଼ ଦେଲେ ମରେ ତ ବିଷ କିଆଁ ଦେଇ ।

ବୁଝାଇ ସୁଝାଇ ପାରିଲେ ଦଣ୍ଡ ଦେବା ନିରର୍ଥକ ।

୭୬୪୭. ଗୁଡ଼ ନ ଦିଅ, ଗୁଡ଼ ପରି କଥା କୁହ ।

କାହାକୁ କିଛି ଦେଇ ନ ପାରିଲେ ବି ମିଠା କଥା ଦି'ପଦ କୁହ ।

୭୬୪୮. ଗୁମାନ (=ଗର୍ବ) ଈଶ୍ୱରଙ୍କୁ ବରଦାସ୍ତ ହୁଏ ନି ।

କାହାରି ଅହଙ୍କାର ଈଶ୍ୱର ସହ୍ୟ କରି ପାରନ୍ତି ନାହିଁ ।

୭୬୪୯. ଗୁଡ଼ ଥିଲେ ମାଛି ଅବଶ୍ୟ ଆସିବେ ।
ଅଣ୍ଟିରେ ଧନ ଥିଲେ ସାଙ୍ଗ ସାଥୀ ବହୁତ ମିଳିବେ ।

୭୬୫୦. *ଏକାର୍ଥରେ-* ଭାତ ବୁଣିଲେ କୁଆର ଅଭାବ ନାହିଁ ।

୭୬୫୧. ଗୁଣର ଗ୍ରାହକ ସହସ୍ର ନର, କେହି ନୁହଁନ୍ତି ଅବିଗୁଣିଆର ।
ଗୁଣବାନର ସର୍ବତ୍ର ଆଦର ହୋଇଥାଏ, ଗୁଣହୀନର ଆଦର ନ ଥାଏ ।

୭୬୫୨. ଗୁରୁ, ଗୁଡ଼ ରହିଲା, ଚେଲା ଶର୍କରା (ଚିନି) ପାଲଟିଲା ।

୭୬୫୩. *ସମାର୍ଥରେ:-* ପୁଅ, ବାପକୁ ବଳିଗଲା ।

୭୬୫୪. *-ସମାର୍ଥରେ-* ଗୁରୁଠାରୁ ଚେଲା ଭାରି ।
ଯେବେ ଶିଷ୍ୟ ଗୁରୁକୁ ଟପିଯାଏ ଏପରି କୁହାଯାଏ ।

୭୬୫୫. ଗୁରୁଙ୍କୁ କପଟ, ମିତ୍ର ଠୁଁ ଚୋରୀ, ହୁଏ ସେ ନିର୍ଦ୍ଧନ ଅଥବା କୋଢ଼ୀ ।
ଗୁରୁଙ୍କ ସହିତ ଚାଲାକି, ମିତ୍ରର ଚୋରୀ କରିବା ପରିଣାମ ବଡ଼ ଖରାପ ।

୭୬୫୬. ଗୁଣ-ଅବିଗୁଣ ଜାଣନ୍ତି ସଭିଏଁ, ଭାବ ଥିବ ଯହିଁ ସେ ତାକୁ ସୁହାଏ ।
ଗୁଣ-ଅବିଗୁଣ ସମସ୍ତଙ୍କୁ ଜଣା । ମାତ୍ର ଯିଏ ଯାହାକୁ ଭଲପାଏ, ସେ ହିଁ ତା ପାଇଁ ଉତ୍ତମ । ପୁଣି କି ଛୋଟ କି ବଡ଼ ଗୁଣ ଅବଗୁଣ ସମସ୍ତେ ଜାଣନ୍ତି ମାତ୍ର ଯାହାର ଯେପରି ପ୍ରକୃତି ସେହିପରି ତାର ଚରିତ୍ର ହୋଇଥାଏ ।

୭୬୫୭. ଗୃହସ୍ଥ କହେ ଅଖାଦ୍ୟ ଅଭକ୍ଷମ, ଛାଗ କହେ ସେ ପ୍ରାଣରେ ମୁଲାୟମ ।
ଆମିଷ ଅଖାଦ୍ୟ ଓ ଅଭକ୍ଷ ।

୭୬୫୮. ଗୃହସ୍ଥ ଅଲକ୍ଷ୍ମୀ ପାଏ, ଚାଉଳ ବାଟି ପିଠା ଖାଏ ।
ଯେତେ ବିଭବଶାଳୀ ହେଲେ ମଧ ଅନ୍ୟଛଡ଼ା ଗତିନାହିଁ ।

୭୬୫୯. ଗୃହିଣୀ ନ ପାଏ ଭାତ, କୁକୁର ନାଡୁଛି ବେକ ।
ଖାଇବାକୁ ନ ପାଇ ବାହାଦୁରୀ ମାରିବା

୭୬୬୦. ଗୃଧ୍ର ଦୃଷ୍ଟି । (ଗିଧ ଦୃଷ୍ଟି) ।-ଶାଗୁଣା ଦୃଷ୍ଟି ।

୭୬୬୧. ଗୃହସ୍ଥି ଯୋଡ଼ିବା ।
ବିବାହ ସାଙ୍ଗକୁ ସଂସାର ଚଳାଇବା ପାଇଁ ରୋଜଗାର ବ୍ୟବସ୍ଥା କରିବା ।

୭୬୬୨. ଗୃହିଣୀ ଗୃହ ମୁଚ୍ୟତେ ।
ସମ୍ପୂର୍ଣ୍ଣ ସଂସ୍କୃତ ପଦ - ନ ଗୃହଂ ଗୃହମିତ୍ୟା-ଗୃହିଣୀ ଗୃହମୁଚ୍ୟତେ ।

୭୬୬୩. ଗୃହିଣୀ ଲକ୍ଷ୍ମୀରୂପିଣୀ, ବାମ ହେଲେ କାଳ ଭୁଜଙ୍ଗିନୀ ।

୭୬୬୪. ଗୃହିଣୀ ଭାଙ୍ଗିଲେ ଘଡ଼ା,
ବାରିଆଡ଼େ ତାକୁ ଗଡ଼ା ।
ଝିଅ ଭାଙ୍ଗିଲେ କଂସା,
ଚାଲେ ମୁରୁକି ହସା ।
ବୋହୂ ଭାଙ୍ଗିଲେ ସରା,
ଯାଏ ପଡ଼ା ପଡ଼ା ।

ବୋହୂ ଉପରେ ଯେଉଁ ସାମାଜିକ ଅବିଚାର ଚାଲେ ତାହା ଏଥିରେ ପ୍ରସ୍ଫୁଟିତ ।

୭୬୬୫. ଗୃହାରମ୍ଭାୟ ଦୁଃଖାୟ ନ ସୁଖାୟ କଦାଚନ ।

୭୬୬୬. ଗେଡ଼ି, ଲୁଗା ପିନ୍ଧିଥାଏ ସତର ପେଡ଼ି ।

୭୬୬୭. ଗେଲ କରୁ କରୁ ତେଲ ବାହାରିବା ।

ହସରୁ ବିଷ ବାହାରିବା । ଝିମିଟି ଖେଳରୁ ମହାଭାରତ ଉପୁଜିବା ।

୭୬୬୮. ଗେଣ୍ଡେଇଶୁଣୀଲୋ ପିଠା ଖା, ମୋ ଗୋଡ଼ ନ କାଟ ।

ଏହି କଥା କହି ଗ୍ରାମର ଝିଅ ବୋହୂମାନେ ଶ୍ରାବଣ ଅମାବାସ୍ୟା ଦିନ ପୋଖରୀରେ ଚିତଉ ପିଠା ପକେଇଥାନ୍ତି । ଗୋଡ଼ ବାଲି ନଖାଇବ ବୋଲି ବିଶ୍ୱାସ ।

୭୬୬୯. ଗେଣ୍ଡା ଶଙ୍ଖ ପାଲଟିବା ।

ଅକିଞ୍ଚନ ବସ୍ତୁ ସମୟ ସୁଯୋଗ ପାଇଲେ ବହୁ ମୂଲ୍ୟ ପଦାର୍ଥରେ ପରିଣତ ହୁଏ ।

୭୬୭୦. ଗେରସ୍ତ ଅଲକ୍ଷ୍ମୀ (ଭୁତ) ହେଲେ, ଧାନ କୁଟି ପିଠା ଗିଳେ ।

୭୬୭୧. ଗେରସ୍ତ ଭିଟା ଦୋଓଡ଼େ (=ଦୁଇଥର ଚାଷ), ମୁତି ବସି ହଗ ମାଡ଼େ ।

୭୬୭୧. ଗେରସ୍ତ କହେ-ପ୍ରାଣରେ ମଇଲି, ଛାଗଳ କହେ- ଅଲଣା ହୋଇଲି ।

୭୬୭୨. ଗେରସ୍ତ ଓଜନ ବୁଝା,ଚୋର ବାନ୍ଧେ ତିନି ବୋକଚା ।

୭୬୭୩. ଗେରସ୍ତ ଉପରେ ଗେରସ୍ତ, ଆଗ ଗେରସ୍ତଟି ଫେରସ୍ତ ।

୭୬୭୪. ଗୋଇଠା ଖାଇ, ଗୋଇଠା ମାରି ଗୋଡ଼ ଆଉଁସି ।

ପ୍ରତିହିଂସା ନନେଇ, ଅତ୍ୟଧିକ କ୍ଷମାଶୀଳ ହେବା । ତୋଷାମଦ କରିବା ।

୭୬୭୫. ଗୋଷ୍ଠୀକୁ ନେବା । ଗୋଷ୍ଠୀର ପିଣ୍ଡ, ଗୋଷ୍ଠୀର ମଥା ।

ମୁଁ ତୋ ଗୋଷ୍ଠୀକୁ ନିଏ । ଅର୍ଥାତ୍ ବଂଶ ଉଠେଇ ଗାଳିଦେବା ।

୭୬୭୬. ଗୋଇଠା ଖିଆ ଜାତି, ଅଇଁଠା ଖିଆ କୁତୀ ।

କୁକୁର ଅଇଁଠା ଚାଟିଲା ଭଳି ଅପମାନରେ ଦିହ ସୁହା ହେବା ଲୋକ ।

୭୬୭୭. ଗୋଇଠା ମାରି ପଣସ ପଚାଇବା ।

ଜୋର ଜବରଦସ୍ତ କୌଣସି କାର୍ଯ୍ୟ କରାଇବା ।

୭୬୭୮. ଗୋଇଠା ମାରି ବିଷ୍ଣୁ କରିବା ।

ପ୍ରଥମେ ଅପମାନ ଦେଇ ପରେ କ୍ଷମା ମାଗିବା ।

୭୬୭୯. ଗୋ କନ୍ୟା ଭୂମି ଭାଗ୍ୟେ ଥିଲେ ମିଳେ ।

ସୌଭାଗ୍ୟ ଉଦୟ ହେଲେ ଚାଷ ପାଇଁ ଭଲ ଗୋରୁ, ସ୍ତ୍ରୀ ପାଇଁ ସୁନ୍ଦରୀ ଓ ଗୁଣବତୀ କନ୍ୟା, ଉତ୍ତମ ଜମିବାଡ଼ି ସୁବିଧାରେ ମିଳିଥାଏ ।

୭୬୮୦. ଗୋଗୋଛ ବାଡ଼ିଆ। -ଗାଣ୍ଡିଆ ମୁଣ୍ଡିଆ ମାଡ଼ ।

୭୬୮୧. ଗୋ-ବଧ ପାତକ ମହାଦେବଙ୍କୁ ପାର ପାଇ ନାହିଁ ।

ପୂଜା ପାଇଁ ରଖିଥିବା କୁଶ ଗୋଟିଏ ବାଛୁରୀ ଖାଇ ଯିବାରୁ ମହାଦେବ କ୍ରୋଧରେ ସେ ବାଛୁରୀଟିକୁ ହତ୍ୟା କଲେ । ତାଙ୍କର ଏହି ପାପ ନିମନ୍ତେ ବାଛୁରୀର ମୁଣ୍ଡଟି ତାଙ୍କ ହାତରେ ଲାଖି ରହିଲା । ପରେ ସେ ତପସ୍ୟା ଦ୍ୱାରା ଏଥିରୁ ମୁକ୍ତ ହେଲେ । ତେଣୁ ଗୋ-ବଧ ମହାପାପ । ଏଥିରୁ ସହଜରେ ମୁକ୍ତି ନାହିଁ ।

୭୬୮୨. ଗୋଟିଏ ମୁଦ୍ରାର ଦୁଇପାଖ ।-ଗଭୀର ସାମଞ୍ଜସ୍ୟ ।

୭୬୮୩. ଗୋଟାକ, ପାଞ୍ଚଟା- ସାତଟା ହେବା(କରିବା) ।

୭୬୮୪. ଗୋଟିଏ ଧାନକୁ ରଜାମୁଲକ ଦେଇ ଶୁଝିପାରେ ନାହିଁ ।

ଚକ୍ରବୃଦ୍ଧି ସୁଧର ଭୟାବହତା । କରଜ ନେଲେ ଚକ୍ର ବୃଦ୍ଧିରେ ସୁଧ ଏପରିବଢ଼େ ଯେ ତାକୁ ପରିଶୋଧ କରିବାକୁ ରଜାର ମୁଲକ ବିକ୍ରି କଲେବି ନିଅଣ୍ଟ ପଡ଼େ ।

୭୬୮୫. ଗୋଟିଏ ଭାତ ଚିପିଲେ, ହାଣ୍ଡିକ ଭାତ ଜଣାପଡ଼େ ।

ଗୋଟିଏ କାର୍ଯ୍ୟରୁ ଲୋକର ଚରିତ୍ର ଜଣାଯାଏ ।

୭୬୮୬. ଗୋଟିଏ ଚାଉଳରେ ଗଢ଼ା । -ନିଖୁଣ, ସୁନ୍ଦର ଚେହେରା ।

୭୬୮୭. ଗୋଟାକ ଯାକ ତୁଳସୀ ।

ଅନ୍ତର କପଟୀ ଲୋକ ପ୍ରତି । ପୁରୀରେ ତୁଳସୀ ମାଳି ବିକାଳି ପୁରା କାଠ ମାଳିରେ ଗୋଟିଏ ମାତ୍ର ତୁଳସୀରେ ମେରୁ ମାଳିଟି ତିଆରି କରିଥାଏ ଏବଂ ଯାତ୍ରୀ ମାନଙ୍କ ବିଶ୍ୱାସ ଜନ୍ମାଇବା ପାଇଁ ବିକାଳି କେବଳ ମେରୁ ମାଳିକି ଧରି ନିୟମ କରି କହେ-ମୁଁ ନୀଳଚକ୍ରକୁ ଚାହିଁ କହୁଛି ଏ ଗୋଟାକ ଯାକ ତୁଳସୀ । ବିକାଳି ବୁଝେ- ନିୟମ କରିବା ପାପ ନୁହେଁ କାରଣ ସେ ଯେଉଁ ମେରୁ ମାଳିଟି ଧରିଛି ସେଇଟି ତୁଳସୀରେ ତିଆରି- ମାତ୍ର କ୍ରେତା ବୁଝେ ପୁରା ମାଳିଟି ତୁଳସୀରେ ତିଆରି ।

୭୬୮୮. ଗୋଟିଏ ଆଖି, ଦଇବ ସାକ୍ଷୀ ।- ଏପରି ଅବସ୍ଥାରେ ଦୈବ ହିଁ ଭରସା ।

୭୬୮୯. ଗୋଟି ଗୋଟି କରି କୋଟିଏ ହୁଏ ।- ଅଳ୍ପରୁ ବହୁତ ହେବା ।

୭୬୯୦. ଗୋଟିଏ ଡ଼େମ୍ଫର ଦୁଇଟି ଫୁଲ ।-ରୂପ ଓ ଗୁଣରେ ଦୁଇଜଣ ସମାନ ।

୭୬୯୧. ଗୋଟିଏ (ଏକା) ଗାଈର ଗୋବର ।

୭୬୯୨. *ଏକାର୍ଥରେ-* ଗୋଟିଏ (ଏକା) ଲାଉର ମଞ୍ଜି ।

୭୬୯୩. *-ଏଜନ* -ଗୋଟିଏ (ଏକା) ଭାଡ଼ିର ପାରା ।- ଏକ ସ୍ୱଭାବ ବିଶିଷ୍ଟ ବ୍ୟକ୍ତି ।

୭୬୯୪. ଗୋଟିଏ (ଏକା) ମାଘରେ ଶୀତ ଯାଏ ନାହିଁ ।

କୌଣସି ଅସୁବିଧା ସବୁଦିନ ପାଇଁ ଏକାବେଳକେ ଦୂର ହୋଇ ଯାଏ ନାହିଁ ।

୭୬୯୫. ଗୋଟିଏ ହାତରେ ତାଳି ବାଜେ ନାହିଁ ।

୭୬୯୬. *ଏକାର୍ଥରେ-* ଗୋଟିଏ ମୁହଁରେ କଳି ଲାଗେ ନାହିଁ ।

କଳହ ବା ବିବାଦ ପାଇଁ ଦୁଇପକ୍ଷ ଲୋଡ଼ା ହୁଏ ।

୭୬୯୭. ଗୋଟିଏ ବାଳରେ ଜୁଡ଼ା ପଡ଼େ ନାହିଁ ।

୭୬୯୮. ଗୋଟିଏ ପଖାରେ ଦୁଇଟି ଖଣ୍ଡା ରହେ ନାହିଁ ।

୭୬୯୯. ଗୋଟିଏ ଦୁଃଖରେ ଗୋଟିଏ ସୁଖ ।- ଦୁଃଖ ପରେ ସୁଖ ଲାଗି ରହିଛି ।

୭୭୦୦ ଗୋଟିଏ ହାଟରେ କିଣି ଆଉ ଗୋଟିଏ ହାଟରେ ବିକିବା ।

ଅତିଶୟ ବୁଦ୍ଧିମାନ ଓ ସିଆଣିଆ ଲୋକ ।

୭୭୦୧. ଗୋଟିଏ ବୋଲୁଅ (ବାଟୁଳି) ରେ ଦୁଇଟି ପକ୍ଷୀ ମାରିବା ।

୭୭୦୨. *ଏକାର୍ଥରେ-* ଗୋଟିଏ ଟେକାରେ, ଯୋଡ଼ାଏ ଆମ୍ବ ଝଡ଼େଇବା ।

ଏକା ଚେଷ୍ଟାରେ ଦୁଇଟି ଉଦ୍ଦେଶ୍ୟ ସାଧନ କିରବା ।

୭୭୦୩. ଗୋଟାକେ ତରି, ଗୋଟାକେ ମରି, ଗୋଟାକେ ଘର ଦୁଆର କରି ।

୭୭୦୪. ଗୋଠେ ଅଣ୍ଡିରା ଘରେ ମାଇ, ବଂଶ ବୁଡ଼ିଲାରେ ଭାଇ ।

୭୭୦୫ ଗୋଠ ଖଣ୍ଡିଆ - ଏକୁଟିଆ ହବା ।

୭୭୦୬. ଗୋଠ ଖଣ୍ଡିଆ ଗାଈ ।

ଗୋଠରୁ ଅଲଗା ହୋଇ ଚରୁଥିବା ଗାଈ ପରି ସାଙ୍ଗ, ସାଥୀ, ସାଇ, ପଡ଼ିଶା ମାନଙ୍କ ସଙ୍ଗେ ମିଳିମିଶି ରହିବାକୁ ସୁଖ ନ ପାଉଥିବା ବ୍ୟକ୍ତି ।

୭୭୦୭. ଗୋଠ ମାତିଲେ, ଖଣ୍ଡିଆ ବି ମାତେ ।

୭୭୦୮. ଗୋଠ ଖଣ୍ଡିଆର ଗୋସେଇଁ ମରେ ।

ଗୋଠ ଖଣ୍ଡିଆ ଗାଈର ମାଲିକ ତାକୁ ଖୋଜି ଖୋଜି ହଇରାଣ ହୁଏ ।

୭୭୦୯. ଗୋଡ଼ ଚଳିଲେ ପେଟ ଚଳେ । -ପରିଶ୍ରମ କଲେ ଖାଇବାକୁ ମିଳେ ।

୭୭୧୦. ଗୋଡ଼ର ଫାଶି ଗଳାକୁ ନେଉଛି ।- ଅବସ୍ଥା ଗୁରୁତର କରିବା ।

୭୭୧୧. ଗୋଡ଼ ଭୂଇଁରେ ନ ଲାଗିବା ।- ଗର୍ବ ବା ଆନନ୍ଦରେ ବିହ୍ୱଳିତ ହେବା ।

୭୭୧୨. ଗୋଡ଼ରୁ ପାଣି ମାରିବା । - ଥକି ଯିବା ।

୭୭୧୩. ଗୋଡ଼ରେ କୁରାଢ଼ି ମାରିବା ।- ନିଜେ ନିଜର ଅନିଷ୍ଟ କରିବା ।

୭୭୧୪. ଗୋଡ଼କୁ ଶାଙ୍କୁଳି ହାତ୍‌କୁ ବେଡ଼ି ।- ବିଘ୍ନ

୭୭୧୫. ଗୋଡ଼ ବଢ଼ାଇ ବସିବା ।

କୌଣସି କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ ହୋଇ ଅପେକ୍ଷା କରିବା ।

୭୭୧୬. ଗୋଡ଼ ଭାଙ୍ଗି ଠିଆ ହେବା ।- ଅପେକ୍ଷା କରିବା ।

୭୭୧୭. ଗୋଡ଼ ଲମ୍ବାଇବା ।

କୌଣସି ବସ୍ତୁ ଦେବା ବା କାର୍ଯ୍ୟ କରିବା ପାଇଁ ଅତ୍ୟଧିକ ସର୍ତ୍ତ ଆରୋପ କରିବା ।

୭୭୧୮. ଗୋଡ଼େଇ ଥିବୁ ଧରିବୁ ନାହିଁ, ଉଞ୍ଚେଇ ଥିବୁ ମାରିବୁ ନାହିଁ ।

ଡ଼ରାଇ କାର୍ଯ୍ୟ କରିବା ଭଲ । ଦେହରେ ହାତ ମାରି ଦେଲେ କଥା ସରିଯାଏ ।

୭୭୧୯. ଗୋଡ଼ ଖସିଲେ ଜଣେ ମରେ, କୁଣ୍ଢ ଖସିଲେ ବଂଶ ମରେ ।

ପରିବାରକୁ କୁଣ୍ଢେଇ ରଖି ନ ପାରିଲେ ଅତ୍ୟନ୍ତ କ୍ଷତି ଘଟେ ।

୭୭୨୦. ଗୋତ୍ର ମରା ଡ଼ାହୁକ, ବଂଶମରା ଗୁଣ୍ଡୁଚି ।

ଯେ ଶତ୍ରୁର ବଶୀଭୂତ ହୋଇ ଆତ୍ମୀୟ ସ୍ୱଜନମାନଙ୍କର କ୍ଷତି ଘଟାଏ ।

୭୭୨୧. ଗୋଦର ଗୋଡ଼କୁ ଫୁଲ ଚନ୍ଦନ ।- ଅଯୋଗ୍ୟକୁ ପୂଜା ।

୭୭୨୨. ଗୋଦରା ଗୋଡ଼ରେ ଆଳୁ ପରିବା,
ଗୋଦରୀ କହଇ ପୋଡ଼ି ଖାଇବା ।

ଗୋଦର ଗୋଡ଼ର ଆଳୁ ଆକୃତିର ମାଂସ ଖଣ୍ଡ ଫଳି ଥାଏ, ସେଥିପ୍ରତି ।

୭୭୨୩. ଗୋଦରା କୋଡ଼େ ଯେତେ (କୋଡ଼ଇ ଯେତିକି),
ମାଡ଼େ ସେତେ (ମାଡ଼ଇ ସେତିକି) ।

ଗୋଦରା ପାଦ ସାଧାରଣ ପାଦ ଠାରୁ ବଡ଼ । ତେଣୁ ସେ ଯେତିକି ବିଲ କୋଡ଼େ, ସେତିକି ମାଡ଼ି ମକଚି ଦେଇ ଯାଏ । ସେହିପରି ଅସାବଧାନ ସହକାରେ କାର୍ଯ୍ୟ କଲେ ବହୁତ ବ୍ୟତିକ୍ରମ ରହିଯାଏ ।

୭୭୨୪. ଗୋଦରା ଗୋଦରୀ ଗୋଡ଼ରେ ବିଷ ଫୋଟକା ।

ଦୁଇଟି ମନ୍ଦଗୁଣ ଏକାଠି ହେବା ।

୭୭୨୫. ଗୋଦରୀ ଲୋ, ଗୋଡ଼ ତଳକୁ (ତୋ ଗୋଡ଼କୁ) ଅନା ।

ଦୋଷ କାଢୁଥିବା ଲୋକ, ତାର ନିଜ ଦୋଷ ସମ୍ବନ୍ଧରେ ଅବହିତ ହେବା ଉଚିତ ।

୭୭୨୬. ଗୋଦର ଗୋଡ଼ରେ ମାଉଁଶ ।

୭୭୨୭. ଗୋଦରୀକୁ ପେନ୍ଦରୀ ।

୭୭୨୮. ଗୋଦାମ ରଦ୍ଦି । -ଅତ୍ୟନ୍ତ ଅପଦାର୍ଥ ।

୭୭୨୯. ଗୋଦରୀକୁ ଶ୍ରୀବନ୍ତୀ (ଶ୍ରୀମତୀ)

ସେ ଗୋଡ଼କୁ ବୁଲେଇ ବୁଲେଇ ପକାନ୍ତି ।

ଅପାତ୍ରରେ ସମ୍ମାନ ଅର୍ପଣ କଲେ ସେ ଗର୍ବରେ ଫୁଲି ଉଠେ ।

୭୭୩୦. ଗୋଦର ଗୋଡ଼ରେ କଣ୍ଟା ଫୁଲେ ଫୁଲେ ଯାଏ ।

୭୭୩୧. ଗୋଦରା ଦେଖିଲେ ଲସିବ, ଦାନ୍ତୁରା ଦେଖିଲେ ହସିବ ।

ଯେ ଦାନ୍ତୁରା ନୁହେଁ, ସେ ଆଉ ଦାନ୍ତୁରା ହେବାର ଆଶଙ୍କା ନାହିଁ; କିନ୍ତୁ ଗୋଦର ହେବାର ସମ୍ଭାବନା ରହିଛି ।

୭୭୩୨. ଗୋଧି ସାପ ବିଷ, ଘଡ଼ ଘଡ଼ି ମାଇଲେ ଛାଡ଼େ ।-ଏହା ଏକ ଅନ୍ଧବିଶ୍ୱାସ ।

୭୭୩୩. ଗୋପରେ ବଢ଼ିବା ।

କୃଷ୍ଣ କଂସର ଅଜାଣତରେ ଗୋପରେ ବଢ଼ିବା ପରି ଅଲକ୍ଷରେ ଥିବା ।

୭୭୩୪. ଗୋରସ (=ଦୁଧ) ଆମିଷ, ଏକାଠେଇଁ ବିଷ ।

ଦୁଧ ସହିତ ମାଛ ମାଂସ ଖାଇବା ନିଷେଧ ।

୭୭୩୫. ଗୋରୁ ଠାପୁଆ ବଞ୍ଚନ୍ତି, ମଣିଷ ଠାପୁଆ ମରନ୍ତି ।

୭୭୩୬. ଗୋରୁ ଲାଙ୍ଗୁଡ଼ ଧରି ପାରି ହୋଇଯିବା ।

୭୭୩୭. *ଏକାର୍ଥରେ*-ଗୋରୁ ଲାଙ୍ଗୁଡ଼ ଧରି ବୈତରଣୀ ପାର ହେବା ।

ଶଗଡ଼ିଆ ଗୋରୁର ଲାଙ୍ଗୁଡ଼ ଧରି ବୈତରଣୀ ପାର ହୁଏ । ସେହିପରି ଖାତକ ଦେଣା ବାବଦକୁ ଗୋରୁଟିଏ ଦେଇ ମୁକ୍ତ ହୁଏ ।

୭୭୩୮. ଗୋରୁ ପଛେ ମରୁ, ମାଣିକ ବାହାରୁ ।

ମାଣିକ ଆଶାରେ ଗୋବଧ ପାପ ଅର୍ଜନ କରିବା ।

୭୭୩୯. ଗୋରୁକୁ ଘାସ, ବ୍ରାହ୍ମଣଙ୍କୁ ଗ୍ରାସ ।

୭୭୪୦. ଗୋରୁ ମାରି ଶାଗୁଣା ପୋଷିବା ।

ଉପକାରୀ ବ୍ୟକ୍ତିର ଅନିଷ୍ଟ ସାଧନ କରି ଅପକାରୀ ବ୍ୟକ୍ତିର କଲ୍ୟାଣ କରିବା ।

୭୭୪୧. ଗୋରୁ ପ୍ରୀତି ଲିହା ଲେହି, ମଣିଷ ପ୍ରୀତି ଖିଆ ଖୋଇ ।

ପରସ୍ପରକୁ ଚାଟିବାରେ ଗୋରୁଙ୍କ ପ୍ରୀତି ଭାବ ଜଣାପଡ଼େ । ସେହିପରି ଖାଇବା ପିଇବାକୁ ଦେବାରେ ମଣିଷଙ୍କ ପରସ୍ପର ପ୍ରତି ପ୍ରୀତି ପ୍ରକାଶ ପାଏ ।

୭୭୪୨. ଗୋ ରସରେ ପୋଡ଼ିଥିବା ଲୋକ ଦହି ଦେଖିଲେ ଡ଼ରେ ।

ତତଲା ଦୁଧରେ ହାତ ପୋଡ଼ି ଯାଇଥିବା ବ୍ୟକ୍ତି ଦହି ଦେଖିଲେ ଡ଼ରେ । ଯାହା ପୁଅକୁ ସାପ କାମୁଡ଼େ, ତା' ମା' ପାଳବିଣ୍ଡା ଦଉଡ଼ି ଦେଖିଲେ ଡ଼ରେ ଅର୍ଥରେ ।

୭୭୪୩. ଗୋରୁ ମୂଲେଇବ ହାଟରେ ପଶି,

ଝିଅ ମୂଲେଇବ କୋଠାରେ ବସି ।

୭୭୪୪. ଗୋରୁ (ଗାଈ) ଲାଙ୍ଗୁଡ଼ ଛୁଇଁ ହଲପ କରିବା ।

ଗୋରୁ (ଗାଈ) ଲାଙ୍ଗୁଡ଼ ଛୁଇଁ ମିଥ୍ୟା କହିଲେ ଘୋର ପାପହୁଏ । ତେଣୁ ଏହା ଛୁଇଁ ଯାହା କହନ୍ତି ତାହା ସତ୍ୟ ବୋଲି ଧରାଯାଏ ।

୭୭୪୫. ଗୋରୁ ମୁଣ୍ଡ ଥାପି କପା ତୋଳିବା ।

ଜନ୍ତୁମାନଙ୍କୁ ହୁରୁଡ଼େଇବା ପାଇଁ ଗୋରୁ ମୁଣ୍ଡ ଥାପି କପା ତୋଳିବା ପରି ଅନ୍ୟକୁ ଆଗରେ ରଖି ନିଜର ସ୍ୱାର୍ଥ ସାଧନ କରିବା ।

୭୭୪୬. ଗୋରୁ ମାରି ଜୋତା ଦାନ କରିବା ।

୭୭୪୭. *ସମାର୍ଥରେ* - ବ୍ରାହ୍ମଣକୁ ଜୋତା ଦାନ ।

ଗୋରୁ ଚମଡ଼ାରୁ ଜୋତା ତିଆରି ହୁଏ, ପୁଣି ସେହି ଜୋତାକୁ ଗୋରୁକୁ ମାରି ଦାନ କରିବା ନିରର୍ଥକ, ଗୋଇଠା ମାରି ବିଷ୍ଣୁ କରିବା ତୁଲ୍ୟ । ଅର୍ଥାତ୍ ପାପ ଅର୍ଜିତ ଅର୍ଥ ଦ୍ୱାରା ଉକ୍ତ ପାପରୁ ଉଦ୍ଧାର ପାଇବା ପାଇଁ ଜାଣି ଶୁଣି ପାପ ପାଇଁ ବୃଥା ପ୍ରାୟଶ୍ଚିତ କରିବା ।

୭୭୪୮. ଗୋଳି ପାଣିରେ କଙ୍କଡ଼ା (ମାଛ) ଧରିବା ।

୭୭୪୯. ଗୋଳି ପାଣିରେ କେଞ୍ଚୁଆ (ଜିଆ), (ପେଟର ବଡ଼ କୃମି) ବାଇ ।

୭୭୫୦. ଗୋବର ସାଉଣ୍ଟି (ଗୋଟେଇ) ନ ଜାଣି ଗାଣ୍ଠୁଆ ଫୋପାଡ଼ିବା ।

ନିଜେ କିଛି କାର୍ଯ୍ୟ ନ କରି ଅନ୍ୟର କାର୍ଯ୍ୟରେ ବାଧାଦେବା ।

୭୭୫୧. ଗୋବଧ ପାତକ ଗଉଡ଼ ମୁଣ୍ଡରେ ଯାଏ ।

ଗୋରୁ ମଲେ ମାଲିକକୁ ଦୋଷ ଲାଗେ, ମାଲିକ ପ୍ରାୟଶ୍ଚିତ ନିଜେ ନ କରି ଗଉଡ଼ ଦ୍ୱାରା କରାଏ ଓ ସମସ୍ତ ଖର୍ଚ୍ଚ ବହନ କରେ ।

୭୭୫୨. ଗୋବର ଗଣେଶ ।- ଅକର୍ମା ଲୋକ ।

୭୭୫୩. ଗୋବର ଗଦାରେ ପଦ୍ମ ଫୁଟିବା ।

ଅଥାନରେ ସୁନ୍ଦର ପିଲା ବା ପଦାର୍ଥ ଜନ୍ମ ହେବା ବା ଦେଖାଯିବା ।

୭୭୫୪. ଗୋବରା ଚଢ଼େଇକୁ (କି) ପାଚିଲା କଦଳୀ ଦେଖାଇବା ।

ପ୍ରଲୋଭନ ଦେଖାଇବା ।

୭୭୫୫. ଗୋସେଇଁ ନ ଥିଲେ ଘନ ଚକର ।

ଗୃହ ବା ଅନୁଷ୍ଠାନର ମୁରବି ନ ଥିଲେ ତାଙ୍କ ଅନୁପସ୍ଥିତିର ସୁଯୋଗ ନେଇ ନାନା ବିଶୃଙ୍ଖଳା ସୃଷ୍ଟି ହୁଏ ।

୭୭୫୬. ଗୋସେଇଁ ଗଲେ ଫାଣ୍ଡିକି, ମେଖ ଆଣିଲେ ଗାଣ୍ଡିକି ।

୭୭୫୭. *ଏକାର୍ଥରେ*-ଦାସେ ଯାଇଥିଲେ ଫାଣ୍ଡିକି,
ମେଖ (ଗୋଜ) ଆଣିଛନ୍ତି ଗାଣ୍ଡିକି ।

ଗୁହାରି କରିବାକୁ ଯାଇ ଓଲଟା ଫଳ ହେବା, ନିଜର ଉପକାର ଆଶାରେ ଯାଇ ଅପକାର ହେବା ।

୭୭୫୮. ଗୋସେଇଁ ଖିଆ (=ଗୋରୁଙ୍କୁ ଗାଳି) ବଳଦ ମୁହଁରୁ ଜଣାପଡ଼େ ।

ଖରାପ ଗୋରୁର ମୁହଁରେ ଦୁର୍ଲକ୍ଷଣ ଦେଖାଯାଏ ।

୭୭୫୯. ଗୋସେଇଁ ମୁଣ୍ଡ ବଥାଉଛି,
ବଡ଼ି ପିତା ପାଣି ଭାକୁର ମାଛ,
ଟେକି ଟେକି ଗୁଣ୍ଡା ପକାଉଛି ।

୭୭୬୦. ଗୋଲ ବୁଲିଯିବା ।-ଗୋଲଗାଲ ବା ହୃଷ୍ଟ ପୁଷ୍ଟ ହୋଇଯିବା ।

୭୭୬୧. ଗୋରୁ ଜନ୍ମ ଘୁଞ୍ଚି ଯାଇ ଗନ୍ଧର୍ବ ଜନ୍ମ ହେଲା ।

ଦୁଃଖର ସମୟ କଟି ସୁଖର ସମୟ ଉପସ୍ଥିତ ହେବା ।

୭୭୬୨. ଗୋଦର ଗୋଡ଼ରେ ପାଣ୍ଡୋଇ (=ଜୋତା) ।

୭୭୬୩. ଗୋଦର ଗୋଡ଼ର ନାତ ।

୭୭୬୪. ଗୋବର ପୋକ ପଦ୍ମ-ମଧୁ ଖାଇବାକୁ ଚାହେ ।

୭୭୬୫. ଗୋବର ପୋକ, ଦୀପ ଲିଭାଇବାର ଆଧି (=କ୍ଷମତା) ।

୭୭୬୬. ଗୋଳରେ ହରିବୋଲ ।

୭୭୬୭. ଗୋଟି (କଉଡ଼ି) ଚିତ୍ ହୋଇ ପଡ଼ିବା ।

ଉଦ୍ଦେଶ୍ୟ ସଫଳ ହେବା । ମାମଲା ପଟିଯିବା ।

୭୭୬୮. ଗୋତ୍ର ଉଦ୍ଧାର କରିବା ।

ପୂର୍ବ ପୁରୁଷ ବା ବଂଶର ନାମ ନେଇ ଗାଳି ଗୁଲଜ କରିବା ।

୭୭୬୯. ଗୋଲକ (ଗୋରଖ) ଧନ୍ଦା ।-ବିଷମ ସମସ୍ୟା ।

୭୭୭୦. ଗୋଲ କରି ଯିବା ।-ଟାଳଟୁଳ କରିବା ।

୭୭୭୧. ଗୋଲ କରିବା ।-ଧପେଇବା ।

୭୭୭୨. ଗୋଲକ ବାସୀ ହେବା ।-ମରିଯିବା ।

୭୭୭୩. ଗୋରୁ ଯାର ଗୋବର ତାର ।

୭୭୭୪. ଗୋରୁ ଇଚ୍ଛାରେ ହଳ ଚଳେନି ।

୭୭୭୫. ଗୋରୁ କୁଟୁମ୍ବ ଚଟିଲେ ଚାଟିଲେ,
ମଣିଷ କୁଟୁମ୍ବ ଦେଲେ ନେଲେ (ଗଲେ ଅଇଲେ) ।

୭୭୭୬. ଗୋରୁର ପୀରତି ଚାଟି, ମଣିଷ ପୀରତି କଣ୍ଟି ।

୭୭୭୭. ଗୋରୁ ମଧ୍ୟରେ ଏଁଡ଼େ, ଜାତି ମଧ୍ୟରେ ଡ଼େଡ଼େ
ଖୁଆଇଲେ ପିଏଇଲେ ମାରେ ଟେଡ଼େ ।

୭୭୭୮. *ଏକାର୍ଥରେ* - ଜଳ, ଜଙ୍ଗଲ, ଅନ୍ଧାର ରାତି,
ଏଁଡ଼େ ଗୋରୁ ନେଡ଼େ ଜାତି ।

୭୭୭୯. -*ଏଜନ*- ପିର ବରାବର ନେଡ଼େ, ସୁନାର ଖୁର ଏଡ଼େ ।
ଘର ପାଖରେ ଗେଡ଼େ,
ବିଶ୍ୱାସ କଲେ ସେ ଭେଡ଼େର ଭେଡ଼େ (=ମେଣ୍ଢା) ।

୭୭୮୦. -*ଏଜନ*- ସୁଅର (=ଘୁଷୁରି), ଶୁଣ୍ଡି, ଏଡ଼େ ଗୋରୁ, ନେଡ଼େ ।
ଏଚାରିଙ୍କୁ ଯେ ପରତେ ଯାଏ ସେ ଭେଡ଼େର ଭେଡ଼େ ।

୭୭୮୧. ଗୋରୁର ଛିଙ୍କ ।

ପଶୁ କରିବା ଦୋଷ, ନ କରିବା ବି ଦୋଷ, ଅର୍ଥାତ ଛୋଟ ଲୋକକୁ ଖୋସାମତି ।

୭୭୮୨. ଗୋରୁ ହଜିଲେ ମିଳେ ।

ଏପରି ସ୍ଥାନ ଯେଉଁଠି ସବୁକିଛି ଖୋଜିଲେ ମିଳେ । ଯେପରି କଲିକତା ସହର ।

୭୭୮୩. ଗୋରୁ କିଣିବ ଆଗେ ପଛେ, ପୋଖରୀ ଖୋଳିବ ଘର ନାଛେ ।

ଆଗପଛ ଦେଖିବାହିଁ ଗୋରୁ କିଣିବ । ଅର୍ଥାତ୍ ଗୋଟିଏ ଗୋରୁ ପଲରେ ଆଗରେ ବା ପଛରେ ଯେଉଁ ଗୋରୁ ଯାଏ ତାହା କିଣିବା ଉଚିତ କାରଣ ଆଗରେ ଯାଉଥିବା

ଗୋରୁ ବଳିଷ୍ଠ ଏବଂ ପଛରେ ଯିବା ଗୋରୁ ସ୍ଥୁଳ (ମୋଟାମୋଟି) । ଘରପଛରେ ବା ସଦରକୁ ପୋଖରୀ ଖୋଳିବା ।

୭୭୮୪. ଗୋରୁ, ଜୋରୁ, ଘୋଡ଼ା ତିନିହେଁ ବେକ ମୋଡ଼ା ।

୭୭୮୫. ଗୋରୁ, ଜୋରୁ, ଧାନ, ଦେଖ ବିଦ୍ୟମାନ (ତିନିହେଁ ରଖନ୍ତି ମାନ)
ଗୋରୁ, ଜୋରୁ, ଧାନ ନ ଦେଖିଲେ ଉଭାନ ।

୭୭୮୬. ଗୋରୁ, ଜୋରୁ, ପାଟଣୀ (=ପାଟଣୀ ଧାନ) ମଧ୍ୟେ ମଧ୍ୟେ ପିଟୁଣି ।

୭୭୮୭. ଗୋରୀ କେଣେ ଯାଇଥିଲୁ କି ?
ଓଦା ଲୁଗାରେ କାଦୁଅ ଟିପା ପାଣି ବୋହୁଥିଲୁ କି ?

୭୭୮୮. ଗୋରୁ ଖାଇଲେ ବଢ଼େ, ଛେଳି ଖାଇଲେ ଝଡ଼ିପଡ଼େ ।

୭୭୮୯. ଗୋରୁ ନ ଚିହ୍ନଇ ହଳ, ମନୁଷ୍ୟ ନ ଚିହ୍ନେ କାଳ ।

୭୭୯୦. ଗୋରୁ ବିକାଏ ଥାଟରେ, କପଡ଼ା ବିକାଏ ପାଟରେ ।

୭୭୯୧. ଗୋରୁ ମଲେ ଧରିବ ଟେକି, ମଣିଷ ମଲେ ଧରିବ ଚାପି ।

୭୭୯୨. ଗୋରୁ ମାରି ଗୋଲକ ବାସି, ଗଙ୍ଗା ସ୍ନାନେ ସର୍ବନାଶି ।

୭୭୯୩. ଗୋଡ଼-ଫଟା, କାନ-କଟା, ଅଣ୍ଟା-ଯାଦୁ ଯାହାର ।
ସର୍ବଦା (ସଦାହିଁ) ବିରସ ମନ, ସୁଖ ନାହିଁ ତାହାର ।

୭୭୯୪. ଗୋ, କନ୍ୟା, ବସୁମତୀ, ତିନି ଘାଟରେ କର୍ମଗତି ।

୭୭୯୫. ଗୋପରେ ନାହିଁ ସୁବଳ ସଖା,
କାନ୍ଦି କାନ୍ଦି ମଲା ଶୂର୍ପନଖା ।

୭୭୯୬. ଗୋପପୁର ଷଣ୍ଢ ।
ଯେଉଁ ବ୍ୟକ୍ତି ଯାହା ମନକୁ ପାଏ ତାହା କରେ, କାହାରି କଥା ଶୁଣେ ନାହିଁ କି ମାନେ ନାହିଁ; ଏପରି ସ୍ଥଳେ ତାକୁ ଗୋପପୁରର ଷଣ୍ଢ ବୋଲି କହିଥାଆନ୍ତି ।

୭୭୯୭. ଗୋଛା (=ଧାନଗୁଚ୍ଛ) କାଟିଲେ ଜମି ଖଲାସ ।

୭୭୯୮. ଗୋଁଜାମିଲ ଦେବା ।
ହିସାବ ନ ମିଳିଲେ କୌଣସି ସଂଖ୍ୟାକୁ ଗେଞ୍ଜି ଦେଇ ହିସାବ ମିଳାଇ ଦେବା ।

୭୭୯୯ ଗୋଡ଼ା (ମୂଳ) କାଟି ଅଗରେ ପାଣି ।
ଗଛମୂଳ କାଟି ଅଗରେ ପାଣି ଦେଲେ କି ଗଛ ବଞ୍ଚିବ ?

୭୮୦୦. *ଏକାର୍ଥରେ-* ଗୋଡ଼ା(ମୂଳ) କାଟି ଅଗରେ ଜଳ ଢ଼ଳା,
ମୁଣ୍ଡରେ ପାଦ ଥୋଇ ଗୋଡ଼ ଧରା ।

୭୮୦୧. *-ଏଜନ-* ନାଥ ମାରି, ଗୋଡ଼ ତଳେ ପଡ଼ା,
ଗୋଡ଼ା(ମୂଳ) କାଟି ଅଗରେ ପାଣି ଢ଼ଳା ।

୭୮୦୨. ଗୋଡ଼ିମ୍ବ ଏପର୍ଯ୍ୟନ୍ତ (ଏବେବି) ଭାଙ୍ଗିନି ।
ଅଣ୍ଡାରୁ ବାହାରିବା ପରର ପ୍ରଥମାବସ୍ଥା । ପକ୍ଷ୍ୟହୀନ, ଅନଭିଜ୍ଞ ; ଇଂରାଜୀରେ Callow State.

୭୮୦୩. *ସମାର୍ଥରେ* - ଗୋଡ଼ିମ୍ବ ଭାଙ୍ଗିନି ଯେବେ, ଉଠି ନାହିଁ ନିଶ ତେବେ ।

୭୮୦୪. *-ଏଜନ-* ଗୋଡ଼ିମ୍ବ ଫୁଟିଲେଇ ଖୋଜିଲା ମଦ ।

୭୮୦୫. ଗୋଦର ଗୋଡ଼ରେ ମଳି,
ଅଳତା ଅବା ପାଶୁଳି (=ପଦାଙ୍ଗୁଳିର ଭୂଷଣ ବିଶେଷ) ।

୭୮୦୬. ଗୋବଧ ସମୟରେ ଦାଦା(କକେଇ) କର୍ତ୍ତା ।

୭୮୦୭. ଗୋବରଗଦା ଉଞ୍ଚା ହେଲେବି କି ?ରାଜବାଟୀ ନୀଚା ହେଲେବି କି?

୭୮୦୮. ଗୋବରର ଧୁତୁରା ଫୁଲ, ହାଟକୁ ନେଲେ ତିନିକଡ଼ା ମୂଲ ।

୭୮୦୯. ଗୋବର-ପୋକ ଗୋବର ଖୋଜେ,
ବେଙ୍ଗ ଖୋଜେ ଭୋଗା (=କାମରସରେ ବିଭୋର) ।
ସିଂହାସନରେ ବସିଲେ ରାଜା, ହୁଏ ନାହିଁ ଧୋବା ।

୭୮୧୦. ଗୋବର-ପୋକ ପଦ୍ମମଧୁ ଖାଇତେ ସାଦ (=ଅଭିଳାଷ) ।

୭୮୧୧. *ସମାର୍ଥରେ-* ପଦ୍ମର ମଧୁ ଗୋବରା (=ଗୋବର ପୋକ) ଖାଇଲା ।
ସମାର୍ଥ ପଦଟି ପ୍ରାଚୀନ ଓଡ଼ିଆ କବି ଗୋପାଳ ଉଡ଼େଙ୍କ ଦ୍ୱାରା ବଙ୍ଗଳାରେ ରଚିତ ।

୭୮୧୨. ଗୋ ମଡ଼କ ବେଳେ ମୁଚିର ପାର୍ବଣ ।

୭୮୧୩. *ସଂପୂର୍ଣ୍ଣ ପଦ-* ଗୋମଡ଼କରେ ମୁଚିର ପାର୍ବଣ,
ବୁଢ଼ୀ ଶାଳୀର ଗଳାରେ ରୁମ ।

୭୮୧୪. ଗୋଲାପ ଜଳରେ ଛଞ୍ଚେଇବା (=ଜଳଶୌଚ) ।

୭୮୧୫. *ସମାର୍ଥରେ-* ମୁକ୍ତାଭଷ୍ମ ଚୂନରେ ପାନ ଖାଇବା ।

୭୮୧୬. *-ଏଜନ-* ପାଟ ଶାଢ଼ୀର ଧଡ଼ି ଛିଣ୍ଡେଇ ବାନ୍ଧିବା ।

୭୮୧୭. ଗୋଲାପ ବାଗରେ ପୋକ ଶୁଂଘା ।
ପୋକ ଶୁଂଘା ଗୁଳ୍ମ ଜଙ୍ଗଲରେ ହୁଏ । ଗୋଲାପ ଫୁଲ ବଗିଚାରେ ତାର ଅବସ୍ଥାନ ସମ୍ଭବପର ନୁହେଁ । ସେହିପରି ପଣ୍ଡିତ ମଣ୍ଡଳିରେ ମୂର୍ଖର ଆବିର୍ଭାବ ବିଡ଼ମ୍ବନା ।

୭୮୧୮. ଗୋଲାପ-ରାଗେ କୁକୁର ହଗେ ।

୭୮୧୯. ଗୋଲାପ ଫୁଲର କଣ୍ଟା ।

ଗୋଲାପ ଫୁଲମାନଙ୍କ ମଧ୍ୟରେ କୋମଳ, ମନୋହର ଓ ସୌନ୍ଦର୍ଯ୍ୟ ଯୁକ୍ତ ସୁବାସ ମଣିଷକୁ ଆକର୍ଷିତ କରିଥାଏ । ମଣିଷର ଅସାବଧାନତା ପାଇଁ ଫୁଲ ଦେହର କଣ୍ଟା ଫୋଡ଼ି ହୋଇ କଷ୍ଟ ଦେଇଥାଏ । ତେଣୁ ସଂସାର କ୍ଷେତ୍ରରେ ସର୍ବଦା ସାବଧାନତା ଅବଲମ୍ବନୀୟ । ଏଣୁ କୁହାଯାଇଛି-ହାତେ ମାପି ଚାଖଣ୍ଡେ ଚାଲିବା ।

୭୮୨୦. ଗୋଲାପ ଯଦି ରଙ୍ଗା ହୁଏ, ରାତିରେ ବି ଛତ୍ରୀ ରୁହେ ।

ତେଣୁ କୁହାଯାଇଛି, ଅଳପ ଲୋକର ଅଧିକାର ରକ୍ଷିଙ୍କୁ ବୁହାଇଲେ ଭାର ।

୭୮୨୧. ଗୋଳମାଳରେ ଚଣ୍ଡୀପାଠ ।

୭୮୨୨. ଗୋଳମାଳରେ ହରିବୋଲ ଗଣ୍ଡଗୋଳ ସାର ।

ଗୋଳମାଳ ମଧ୍ୟରେ ଛଳନା କରି ଫାଙ୍କି ଦେବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।

୭୮୨୩. ଗୋସେଇଁ ଠାକୁର ମରେ, ମାନ ରକ୍ଷାକରି ତରେ ।

୭୮୨୪. ଗୋସେଇଁ ଠାରୁ କଂସେଇ ଭଲ ।

୭୮୨୫. *ସଂପୂର୍ଣ୍ଣ ପଦ:-* ତୁମେ ପଇସା ପାଇଲ ହସିଦେଲ
କାମ ବେଳକୁ କାଲ ।
ତୁମ ଗୋସେଇଁ ଚେଇଁ (=ଠାରୁ), ଆମ୍ଭେ କହୁଛୁ,
କଂସେଇ ଖୁବ୍ ଭଲ ।

୭୮୨୬. *-ଏକନ-* ବୃଥାରେ ତିଳକ ଧରି, ଖାଉ ଭସ୍ମଚୁର ।
କଂସେଇ ଅନେକ ଭଲ, ଗୋସେଇଁ ଠାରୁ ।

୭୮୨୭ ଗୋବର କରିବା । - କାମ କରିବା ।

୭୮୨୮. ଗୋବର ଛୁଇଁବା ।- ନିୟମ କରିବା, ହଲପ କରିବା ।

୭୮୨୯. ଗୋଳିଆ ଗୋଳିଆ । - ଅସ୍ତ ବ୍ୟସ୍ତ ହେବା ।

୭୮୩୦. ଗୋଲ ହୋଇଯିବା । - ପଳେଇ ଯିବା ।

୭୮୩୧. ଗୋରୁ ଭଳି କମ୍ପିବା ।-ଅତ୍ୟନ୍ତ ଭୟଭୀତ ହେବା ।

୭୮୩୨. *ଏକାର୍ଥରେ* - ବରଡ଼ା ପତ୍ର ପରି ଥରିବା ।

୭୮୩୩. ଗୋଡ଼ ଉପର ମୁଣ୍ଡ ତଳ ।- ଓଲଟା

୭୮୩୪. ଗୋଡ଼ ଧୂଳି ।- ଆଶୀର୍ବାଦ ।

୭୮୩୫. ଗୋଡ଼ (ପାଦ) ଧୂଳି ପୋଛିବା ।- ସେବା କରିବା, ଆରାମ ଦେବା ।

୭୮୩୬. ଗୋଡ଼ ଧୁଆ ।

ତୁଳନାତ୍ମକ କଥାରେ ପ୍ରଯୁକ୍ତ । ମୋ ଗୋଡ଼ ଧୁଆକୁ ଅଯୋଗ୍ୟ ବା ସରିନୁହେଁ ।

୭୮୩୭. ଗୋଡ଼ ତଳକୁ ନିଘା ।- ଆପଣା ଦୋଷ ଦେଖିବା ।

୭୮୩୮. ଗୋଡ଼ ଧରିବା ।- ଶରଣ ପଶିବା ।

୭୮୩୯. ଗୋଡ଼ ଧୋଇ ପିଇବା - ଆଦର ସତ୍କାର କରିବା ।

୭୮୪୦. ଗୋଡ଼ରେ ଆଖି ହେବା ।- ସବୁ କାମ ସାବଧାନ ସହକାରେ କରିବା ।

୭୮୪୧. ଗୋଡ଼ରେ ବେଡି ।- ପ୍ରତିବନ୍ଧିତ ହେବା, ଫସିଯିବା ।

୭୮୪୨. ଗୋଡ଼ ଝାଡ଼ିବା ।- ରାଗରେ ତମ ତମ ହୋଇ ପାଦ ଝାଡ଼ିବା ।

୭୮୪୩. ଗୋଡ଼ ଭାଙ୍ଗିବା ।- ଅସହାୟ ହୋଇ ପଡ଼ିବା ।

୭୮୪୪. ଗୋଡ଼ ରଖିବା ।- ଆଧାର ବା ଅବଲମ୍ବନ ଖୋଜିବା ।

୭୮୪୫. ଗୋଡ଼ରେ ନଟୁ ବାନ୍ଧିବା ।

ସସର୍ତ ପ୍ରତିବନ୍ଧିତ କରିବା, ନିୟନ୍ତ୍ରଣରେ ରଖିବା ।

୭୮୪୬. ଗୋଡ଼ରେ ମୁଣ୍ଡ ଲଗେଇବା ।-ପ୍ରଣାମ କରିବା, ତୋଷାମଦ କରିବା ।

୭୮୪୭. ଗୋଡ଼ରେ ଶନିଶ୍ଚର ଲାଗିବା ।

କାର୍ଯ୍ୟ ସାଧନ ପାଇଁ ନିରନ୍ତର ଚକର କାଟିଲାଭଳି ଦୌଡ଼ା ଦୌଡ଼ି କରିବା ।

୭୮୪୮. ଗୌରୀ ରଖିବ, ଆପଣା ସିନ୍ଦୁର ଲିଭିବ, ଭାଗ୍ୟ ନ ଯିବ ।

କେହି ନିଜ ଚାକରକୁ ବାହାର କରି ଦେବାର ଧମକ ଦେଲେ, ଚାକର ନିଜର ସ୍ୱାଧୀନତା ପ୍ରକଟ କରିବା ପାଇଁ ଏପରି କହିଥାଏ ।

୭୮୪୯. ଗୌର ଚନ୍ଦ୍ରିକା ।

ମୂଳ ଗୀତର ପୂର୍ବରୁ ମଙ୍ଗଳା ଚରଣ ସ୍ୱରୂପ ଗୌରଚନ୍ଦ୍ର ବା ଶ୍ରୀ ଚୈତନ୍ୟ ମହାପ୍ରଭୂଙ୍କ ବନ୍ଦନା । ଅର୍ଥାତ୍ ଅସଲ କଥା ପୂର୍ବରୁ ଦୀର୍ଘ ଭୂମିକା ।

୭୮୫୦. ଗୌରୀ ଲୋ ଗୌରୀ

ତୋ କପାଳରେ ବୁଢ଼ା ବର, ମୁଁ କରିବି କି ?

୭୮୫୧. ଗଉଡ଼ ଗୋରୁ ଚରାଏ, ରାଜା ମଣିଷ ଚରାନ୍ତି ।

୭୮୫୨. ଗାଁଆ ଧୁଆଧୋଇ ଯହିଁରେ ପଶେ

ମାଆ ଲାଜକୁଳୀ ଠେଙ୍ଗିରେ ଘଷେ ।

୭୮୫୩. ଗୁରୁ କାମିନୀ ଯେବେ ରତେ, ଧବଳ ହୋଇ ମୁଖ ହସ୍ତେ ।

୭୮୫୪. ଗୋପି ଲୋଚନ ଥନଥନ,ନ କାଳୀ କାନ୍ଦିଲା ବିଧାନ ।

୭୮୫୫. ଗ୍ରହଣର ଚାନ୍ଦ ସଭିଏଁ ଦେଖନ୍ତି ।

ମନୁଷ୍ୟ ବିପଦ ଗ୍ରସ୍ତ ହେଲେ ସମସ୍ତଙ୍କର କୌତୁହଳର ବିଷୟବସ୍ତୁ ହୋଇଥାଏ ।

୭୮୫୬. ଗ୍ରହଣ ଲାଗିଲେ ସମସ୍ତେ ଦେଖନ୍ତି ।

ଭଲମଣିଷର ଦୋଷ ସମସ୍ତଙ୍କର ଚର୍ଚ୍ଚାର ବିଷୟ ହୋଇଥାଏ ।

୭୮୫୭. ଗ୍ରହଣର ଚନ୍ଦ୍ର ।-ଭଲ ମଣିଷକୁ ବି କଳଙ୍କ ଲାଗେ ।

୭୮୫୮. ଗ୍ରହର ଫେର ।-ଦୁର୍ଦ୍ଦିନ ପଡ଼ିବା ।

୭୮୫୯ ଗ୍ରହଙ୍କ ମଧରେ ମିହିର(=ସୂର୍ଯ୍ୟ), ଯେସନେ ଅଟଇ ଯେ ସାର ।

୭୮୬୦. ଗ୍ଲାନିରେ ସଢ଼ିବା ।

ପସ୍ତେଇ ହେବା । ଲଜ୍ୟା ବା ଅତ୍ୟନ୍ତ ଦୀନତା ଅନୁଭବ କରିବା ।

## -ଛଟା- 'ଗ'

୭୮୬୧. ଗଇଁଠା ଖଣ୍ଡକୁ ଅଇଁଠା କଲି
କଥା କିଏ ମିଶେଇଲା
ଗଲାଦିନ କଥା ଲେଉଟି ଆସେ କି
ଯେତେ ଆଶା କଲେ ଭଲା ?

ପ୍ରେମିକ ପ୍ରତି ପ୍ରେମିକାର ପ୍ରେମଭାବ ତିକ୍ତ ହେବାରୁ ପ୍ରେମିକାର ଅନୁଶୋଚନା ।

୭୮୬୨. ଗଇତା ଗଛର ଜିଭ ଲହ ଲହ
ଉଠିଛି ପୋଖରୀ ତୁଠରେ
ଭାଉଜ ଦଉଡ଼େ ବାଗି ବାରି (=ବାଡ଼ି ବାଡ଼ି) ହୋଇ
ନଣନ୍ଦ ଦଉଡ଼େ ପଛରେ ।

୭୮୬୩. ଗଉଡ଼, ଲଉଡ଼ି ଘେନି ଦଉଡ଼ ।

ପୂର୍ବେ ଗାଈ ମଇଁଷି ପାଳିବା, ଚରାଇବା ଗଉଡ଼ର ବୃତ୍ତି ଥିଲା । ସକାଳୁ ସେ ବାଡ଼ିଧରି ଗୋଠ ଘେନି ଯାଉଥିଲା । ସେଥିପାଇଁ ଏହି ବ୍ୟଙ୍ଗ ସୂଚକ ଛଟା ପ୍ରଯୁକ୍ତ ।

୭୮୬୪. ଗଉଡ଼ ଘର ଦହି,
ଆମ୍ବୁଆଳି (=ଯେଉଁ ଋତୁରେ ଆମ୍ବ ହୁଏ) ଦିନେ ଶୋଇପଡ଼ିଛି,
ଆମିଳା ପଖାଳ ଖାଇ ।

୭୮୬୫. ଗଉଡ଼ ଘର ଝୋଟି,
କାଲି ଆସିଛି ବୋହୂପିଲାଟି
ଅଢ଼େଇ ଆଙ୍ଗୁଳ ଚୁଟି ।
ନବ ବିବାହିତା ବୋହୂର ଦୁଷ୍ଟ ପ୍ରକୃତି ପ୍ରତି ବ୍ୟଙ୍ଗ ।

୭୮୬୬. ଗଉଡୁଣୀର ଖଡୁ,
ନ ଦେଲେ ନ ଦେବୁ ତଉଁରୀ ଶାଢ଼ୀ (=ମୋଟାସୂତା ଶାଢ଼ୀ)
ମୁହଁ କାହିଁପାଇଁ ମୋଡୁ ।

୭୮୬୭. ଗଉଡୁଣୀ ଘର ଘି' ପଲମ,
ନଅକ ନକେଇଲା
ପନ୍ଦର-ହାତି ତଉଁରି ଶାଢ଼ୀ
ମୋ କାନ୍ଧକୁ ନ ପାଇଲା ।
ବାପଘର କଥା ବାହୁନି ବାହୁନି, ଗେହ୍ଲେଇ ସକେଇଲା ।

୭୮୬୮. ଗଙ୍ଗଶିଉଳି, ଖରାଲାଗି ତୁ କି ଗଲୁ ଝାଉଁଳି ।
ଗଙ୍ଗଶିଉଳି ଫୁଲ କୋମଳାଙ୍ଗୀ କିଶୋରୀର, ଖରା ଓ ଶ୍ୱଶୁରଘର ଅତ୍ୟାଚାରର ପାଇଁ କିଶୋରୀ ପ୍ରତି ସମବେଦନା ପ୍ରକାଶ ପାଇଛି ।

୭୮୬୯. ଗଙ୍ଗେଇ (=ପକ୍ଷୀ ବିଶେଷ) ମୋ ପାଇଁ ମୁନ୍ଦେ ବୁଡ଼
ତତେ ଦେବି ଛେନାଗୁଡ଼ ।
ଗଙ୍ଗେଇପକ୍ଷୀ ବାରମ୍ୱାର ମାଛ ଝାମ୍ପିବା ପାଇଁ ପୋଖରୀରେ ବୁଡ଼େ । ପିଲାମାନେ ତାକୁ ଦେଖି ଚିଡ଼େଇ ଚିଡ଼େଇ ପୁଣି ଆଉଥରେ ଆଉଥରେ ବୁଡ଼ିବା ଲାଗି କୁହନ୍ତି । ଏହା ଏକ ଗ୍ରାମ୍ୟଜୀବନର ଅପଲକ ଦୃଶ୍ୟ ।

୭୮୭୦. ଗଜ-ପଲଙ୍କରେ ଶୋଇଲି,
ଦିନଯାକ ଅଭିମାନରେ ଗଲା, ରାତିକୁ ଓପାସ ରହିଲି ।
ସୁସଜ୍ଜିତ ପଲଙ୍କରେ ସାଇତା ବାସରରାତିର ସଜ୍ଜିତ ନାୟିକାର ଅନୁଶୋଚନା ।

୭୮୭୧. ଗଛଛାଇ ଦେଖି ବସିଲି,
ଯାଦୁଆ ମୁହଁ ମୁଁ ଜାଣିନଥିଲି, ସବୁ ଚାଦରକୁ ରସିଲି ।
ବେଶଭୂଷଣରେ ଆକୃଷ୍ଟ ହେଉଥିବା ପ୍ରେମିକା, ପରେ ପ୍ରେମିକ ଭୁଗୁଥିବାର ଜାଣି ଅନୁଶୋଚନା ।

୭୮୭୨. ଗଛକୁ ଦେଲି ଆଙ୍କୁଡ଼ି
କେଉଁ ଜୀବନକୁ ଯୋଡ଼ା ଭାରିଯା
ଗୋଡ଼କୁ କଲି ମୁଁ ସାଙ୍କୁଡ଼ି (=ବେଡ଼ି) ।

ଦରିଦ୍ର ଲୋକର ଦୁଇଟି ବିଭା ହେବାପରେ ଦ୍ୱିତୀୟପକ୍ଷ ସ୍ତ୍ରୀର ଅନୁଶୋଚନା ।

୭୮୭୩. ଗଛରେ ପାକଲା କେନ୍ଦୁ,
ଘଇତା ଆଗରେ ସକେଇ କାନ୍ଦୁ
ଦିଅର ସଂଗତେ ବନ୍ଧୁ ।

ନିଜ ଗେରସ୍ତକୁ ଛାଡ଼ି ପରକୁ ଆଦରିବା ।

୭୮୭୪. ଗଜ ବତା (=କବାଟ ପଛରେ ଦିଆଯାଇଥିବା ଆଡ଼ିବତା),
କବାଟ ଦିହକୁ ବଡ଼ ହିତା ।

ଆଡ଼ିବତା କବାଟକୁ ଶକ୍ତ କରେ । ସେମିତି ମଣିଷର ମୁର୍ଦ୍ଧଣା ତାକୁ ଶକ୍ତ କରେ ।

୭୮୭୫. ଗଜମଣ୍ଡା, ତାକୁ ଖାଇଲେ ହେବ ଭେଣ୍ଡା ।

ମଝିରେ ଗୋଜ ବା ଭୁଣ୍ଡି ଥିବା ମଣ୍ଡାପିଠା ଖାଇଲେ ମଣିଷର ସ୍ୱାସ୍ଥ୍ୟ ଭଲ ରୁହେ ।

୭୮୭୬. ଗଡ଼ ପାଇକ ଅଇଲେ ଧାଇଁ
ଲେଉଟିଆ ମୂଳ ରଖିଲେ ନାହିଁ ।

ପୂର୍ବେ ରଜାଙ୍କ ସୈନ୍ୟମାନେ ଚୋରୀ, ଡ଼କେଇତି ଓ ଲୋକଙ୍କ ଉପରେ ଜୁଲମ୍, ଅତ୍ୟାଚାର କରି ସେମାନଙ୍କୁ ହଇରାଣ ହରକତ୍ କରୁଥିଲେ । ସେଇ ସ୍ମୃତିକୁ ଏହି ଛଟାଟି ବହନ କରିଛି ।

୭୮୭୭. ଗଡ଼ିଆ ଘାଟର ବାଟର ଛାଇ
ଯେତେ କୂଟ କରେ ଆପଣା ଭାଇ ।

ଭାଇ ଭଗାରି ହେଲେ ସେ ସାଧାରଣ ଶତ୍ରୁ ଠାରୁ ଅଧିକ ଭୟଙ୍କର ହୁଏ ।

୭୮୭୮. ଗତ ଏ ଦିନେ ବିଆଳି (=ଆସୁଧାନ) ବଛା
ପିଠି ଖାଉଥିଲା ଖରା
ଆଗେ ଖାଉଥିଲୁ କୁଣ୍ଡା ଚକୁଳି
ଏବେ ରୁଚୁନାହିଁ ପୁର-କାକରା ।

ଦୁର୍ଭାଗ୍ୟରୁ ସୌଭାଗ୍ୟଶାଳୀ ହୋଇଥିବା ଯୁବତୀର ଫୁଲାପଣ ପ୍ରତି ବ୍ୟଙ୍ଗ ।

୭୮୭୯. ଗରମ ପାଣିରେ ପିଆଜ
ମାଇପ ରାନ୍ଧିଲେ କାଚର କାଚର
ଭାଉଜ ରାନ୍ଧିଲେ ସୁଆଦ ।

ନିଜ ସ୍ତ୍ରୀ ଅପେକ୍ଷା ଭାଉଜ ପ୍ରତି ଅଧିକ ଶ୍ରଦ୍ଧା ଦେଖାଉଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।

୭୮୮୦. ଗହମ ଖାଇଲା ପୋକ
କାହୁଁ ଆସିଥିଲା ହୁଣ୍ଡା ରସିକ
ଘରଯାକ ପାନପିକ ।

ନୂଆ ପାନଖିଆଳି ପାନପିକ କେଉଁଠି ପକାଇବ ନ ପକେଇବ କିଛି ବାଛବିଚାର ରଖେନାହିଁ । ତେଣୁ ଘର ସାରା ପାନଛେପ ବିଛାଇ ହୋଇଯାଇଥାଏ ।

୭୮୮୧. ଗହମ ଶୁଖେଇ ଦେଲି
ମନ ବିରସରେ ନ କହ କଥା
କେଉଁ ଦୋଷ କରିଥିଲି ?- ଅଭିମାନୀ ସ୍ତ୍ରୀର ଗାଥା ।

୭୮୮୨. ଗହିରୀ ବିଲର ଟେକା
ବଡ଼ଘର ବୋହୂ ଆସନ୍ତି ଏକା
ଚାଦର ଘୋଡ଼େଇ ପକା
ଯାଉଳି ମଶାଲ ଦେଖା
ଯୋଡ଼ି ହୁଳହୁଳି ପକା ।

ବଡ଼ଘର ବୋହୂ ପଥୁରିଆ ବିଲରେ ଏକୁଟିଆ ଆସିବାରେ ବିଦ୍ରୁପ ଏବଂ ମଶାଲ ଦେଖାଇବା କିମ୍ବା ହୁଳହୁଳି ପକାଇବା କ୍ଷେତ୍ରରେ ବ୍ୟଙ୍ଗତା ପ୍ରକାଶ ପାଇଛି ।

୭୮୮୩. ଗହରି ବିଲରେ ତ ଉଡ଼ଇ ମୁଗକୋଡି
ପତିତ ପାବନ ଯେ ବାନା ମୋ ଉଡୁଛି
ଝିଅ ଦେଇ ପୁଅ ହୋଇ ପାରିଛି
ଓଡ଼ିଶା ଗଜପତି ହୋ ।
ହାଣିଲି ମହାନିମ୍ବ ଭସାଇ ଦେଲି ଜଳେ
ସେ ପାଇଁ ଲାଖିଲା ବାଙ୍କି ମୁହାଁଣରେ
ଦେବତା ବୋଲି ପୂଜା ଯେ ପାଇଲା
ବନ ଦେଉଳରେ ହୋ ।

୭୮୮୪. ଗହନ ଲଟା ଅନ୍ଧାର ପକ୍ଷ
ପାଣି ବରଷଇ ଗିରି ଶିଖ
ମେଘ-ଘଡ଼ଘଡ଼ି- ଛଟକ ବିଜୁଳି
ନ ଦିଶଇ ସଖି ବାଟ ପନ୍ଥ
ଆଗେ ବଇଦେହୀ, ତୋର ମୁଖଚନ୍ଦ୍ରମାକୁ ସରି ନାହିଁ ।
ଆମେ ଅନାଥ ହୋଇଲୁଁ ବେନିଭାଇ ।

୭୮୮୫. ଗାଆଁ ଦେଢ଼ଶୁର ଟୋକା ମଳାଶୁର
କାହାକୁ କରିବି ଲାଜ
ହେଲେ ପଛେ ହେଉ ଭଉଣୀ ଜୋଇଁ
ବେଳେ ମାଣ୍ଡିଯିବେ ଶେଯ ।

୭୮୮୬. ଗହିରୀ ବିଲରେ ଟେକ ।
ଗୋଟେଇ ଆଣିଛି ଆଖି ବୁଜିକରି
ଗୋବର ଗୋଟିଆ ଟୋକା ।
ବିଭାହେବା ଲାଗି ବାଛି ଆଣିଥିବା ବରକୁ ଦେଖି ଯୁବତୀର ରୁଚିପ୍ରତି ବ୍ୟଙ୍ଗ ।

୭୮୮୭. ଗହ୍ଲାରୀ, ବୁଢ଼ା କୋଉ ମଣିଷରେ ସୁମାରୀ ।
ବୁଢ଼ା ମଣିଷପଣିଆ ପ୍ରତି ବ୍ୟଙ୍ଗ ।

୭୮୮୮. ଗଲା କଥା ଗଲାଣି, କିଆଁ ଲାଗିଛି ହଣାହଣି ?
ଅତୀତ କଥାକୁ ଘଣ୍ଟାଘଣ୍ଟିକଲେ କିଛି ଫଳହୁଏନାହିଁ । ଅଧିକନ୍ତୁ ସେହି ମନ୍ଥନରୁ ବିଷ ବାହାରି ବିଶେଷ ଅନିଷ୍ଟ ସାଧନ କରିଥାଏ ।

୭୮୮୯. ଗଲି ଅଇଲି, ଯାହା ଦେଖିଲି ତାହା କହିଲି ।
ଯାହାଦେଖେ ଯାହା ଶୁଣେ ଅବିକଳ ସେଗୁଡ଼ିକ କହେ । 'ସାରଳା ରତ୍ନଭଣ୍ଡାର ରସସାଗର' ସଂକଳନର ଏହାହିଁ ମୂଳମନ୍ତ୍ର ।

୭୮୯୦. ଗାଆଁ ଚାରିଆଡ଼େ ବୁଲି ଅଇଲି
କେହି ନ କହିଲେ ବସ୍‌ବୋଲି ।
ବାରବୁଲୀ, ବିଲଚୋରୀ ସ୍ତ୍ରୀର ଚରିତ୍ର ପ୍ରତି ଆକ୍ଷେପ । ଏପରି ସ୍ତ୍ରୀ ତାର ଘର ସଂସାରର ଜଞ୍ଜାଳ ଓ ଦାୟିତ୍ୱ ପାଳନ ନ କରି ସାହି ସାହି ବୁଲି ଗପ ମାରେ । ତେଣୁ କାର୍ଯ୍ୟବ୍ୟସ୍ତ ପରିବାର ଏପରି ସ୍ତ୍ରୀକୁ ଘରେ ବସାଇ ଗପିବାରୁ ଅବ୍ୟାହତି ପାଇବା ପାଇଁ ତାକୁ ବସ୍ ବୋଲି କହନ୍ତି ନାହିଁ ।

୭୮୯୧. ଗାଈ ଛାଡ଼ିଦିଅ ଘରୁ
ବାଳ ଛାଡ଼ିଦିଅ ଅଣ୍ଟାକୁ ପଡୁ
ଲକ୍ଷେ ଚମ୍ପାଫୁଲ ଝଡୁ ।

ଯୁବତୀର ସୌନ୍ଦର୍ଯ୍ୟ ତାର ଲମ୍ବାକେଶରେ । ତେଣୁ ତା ଉପରେ ଚମ୍ପାଫୁଲ ପଡୁ ବୋଲି କୁହାଯାଉଛି । ଅର୍ଥାତ୍ ତାର ବିବାହ ସୁନିଶ୍ଚିତ ।

୭୮୯୨. ଗାଈ ନାଆଁ ଦେଲି ପାଟ
ବୋହୂ ନାଆଁ ଦେଲି କୁଞ୍ଚି କବାଟ
ଓଳିଆ ସନ୍ଧିରେ ବାଟ ।

ଏଥିରେ ଗୁପ୍ତପ୍ରେମର ସଂକେତ ନିହିତ । ତେଣୁ ବୋହୂକୁ କୁଞ୍ଚିକବାଟ ନାମରେ ଡାକିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ପୁଣି ଅଳିଆ ସନ୍ଧିଦେଇ ଆସିବା ଲାଗି ପ୍ରେମିକକୁ ସଂକେତ ଦିଆଯାଇଛି ।

୭୮୯୩. ଗାଈ ନାଆଁ ଦେଲି ନେତ
ମୋ ଘରେ ଲାଗିଲା ନିତି ଖୁଣ୍ଟୁଣ ।
ନିଇତି ଖାଇଲା ଖେତ ।

ଗେଲବସର କରି ଗାଈଟିଏ ପାଳି ନେତ ବୋଲି ନାଆଁ ଦିଆଯାଇଥିଲା । ସେ ଓଲେଇ ଗାଈ ବାଡ଼ଭାଙ୍ଗି ପରର ଫସଲ ଖାଇଲାରୁ, ନିତି କଳି ଲାଗୁଥିଲା ।

୭୮୯୪. ଗାଈମାଡ଼ିଗଲା ନଡ଼ା
କାନ୍ତମନେ ଯେବେ କପଟ ନଥିଲା
କିମ୍ପା କଲେ ପାଖଛଡ଼ା ?

ବିରହିଣୀ ପ୍ରେମିକାର ଅନୁଶୋଚନା ।

୭୮୯୫. ଗାଈ ଛାଡ଼ିଦେଲେ ଖାରିଆ (=ଲୁଣି-ଟାଙ୍ଗର) ପଦାରେ
ବାଛୁରୀ ରହିଲା ଗୋଠେ
ମାଆଟି ବୋଲଇ ଝିଅଟି ସୁନ୍ଦର
ରହିଗଲା ଧୋବା ତୁଠେ ।

୭୮୯୬. ଗାଈ ହଗିଗଲା ଲଣ୍ଡେ
ବୋଉକୁ ଦେଖିଲି ଗୁଣ୍ଡିଚା ଦାଣ୍ଡେ
ଛାତି ହୋଇଗଲା କୁଣ୍ଡେ ।

ପୁରୀ ରଥଯାତ୍ରାରେ ବୋଉ ସହିତ ବିବାହିତ ଝିଅର ବଡ଼ଦାଣ୍ଡରେ ଅକସ୍ମାତ୍ ଦେଖା ହେଲାରୁ ଆନନ୍ଦରେ ସେ ଉଲ୍ଲସିତ ହେଲା ।

୭୮୯୭. ଗଙ୍ଗାର ପାଣି ଗରଙ୍କେ ଟାଣି
ପୋଖରୀ ପାଣି ଜଡ଼
ସତ୍ୟକରି କହଟି ଦେଇ (ନାନୀ)
ଘଇତା ଦେଉର ଛାଡ଼ ।

୭୮୯୮. ଗାଣ୍ଡିରେ ଲେଙ୍ଗୁଟି ମୁଣ୍ଡରେ ଜଟ
ଶୋଇ ପଡୁଥାଏ ନଅଟ ନଟ ।

ପୃଥୁଳ ଗଣ୍ଡିଯୁକ୍ତ ଅଳସୁଆ ତଥାକଥିତ ବାବାଜୀ ପ୍ରତି ବ୍ୟଙ୍ଗ ।

୭୮୯୯. ଗାଣ୍ଡି ଲଙ୍ଗଳା ମୁଣ୍ଡରେ ଫୁଲ
ଚାଲି ଯାଉଥାଏ ଦୁଲ୍ ଦୁଲ୍ ।

ଲଙ୍ଗଳା ହୋଇ ମୁଣ୍ଡରେ ଫୁଲ ଖୋସିଥିବାର ନିର୍ଲଜ୍ଜ ବ୍ୟକ୍ତିପ୍ରତି ବ୍ୟଙ୍ଗ ।

୭୯୦୦. ଗାଁ ମୁଣ୍ଡେ କଲି ବାସ
ଧୋବା ଘର ଛାଡ଼ି ରେଙ୍ଗୁନ ଗଲା
ଧୋବଣୀ ମୋଡୁଛି ନିଶ ।

ସ୍ୱାମୀ ବିଦେଶକୁ ଗଲେ ସ୍ତ୍ରୀ ନିଜକୁ କଣ ନାଇଁ କଣ ବୋଲି ଭାବେ ଏବଂ ସେହି ହିସାବରେ ସେ ସମସ୍ତଙ୍କ ସହିତ ଅତିରଞ୍ଜିତ ବ୍ୟବହାର କରିଥାଏ । ସ୍ତ୍ରୀ ହୋଇ ମଧ ନିଶମୋଡ଼େ । ଏପରି ସ୍ତ୍ରୀପ୍ରତି ବ୍ୟଙ୍ଗ ।

୭୯୦୧. ଗାଳିଦେଉଥିବ ପରକୁ, ଓଲଟି ପଡ଼ିବ ଘରକୁ ।

ଅନ୍ୟକୁ ଗାଳିଦେଲେ ସେ ଗାଳି ନିଜ ଉପରକୁ ପଡ଼େ ।

୭୯୦୨. ଗିରସ୍ତ ବାପୁଡ଼ା ମାଇଗୁଲିଆ, ମାଇପ ଟାଣରେ ହୁଏ ହାଲିଆ ।

ସ୍ତ୍ରୀ ପାଖରେ ବଶୀଭୂତ ହୋଇ ନିଜତ୍ୱ ହରାଇ ଥିବା ପୁରୁଷ ପ୍ରତି ବ୍ୟଙ୍ଗ ।

୭୯୦୩. ଗୀତ ଶାସ୍ତ୍ର ପଢ଼ି ନ ଜାଣେ ଅର୍ଥ
ଅର୍ଥ ଲାଭ ନାହିଁ କରେ ଅନର୍ଥ ।

ରାଜ୍ୟ ନ ଥାଇ ହୁଏ ଚକ୍ରବର୍ତ୍ତୀ
ବିଦ୍ୟା ନ ପଢ଼ି ସାଇତଇ ପୋଥି ।

ହାତେ ଧନ ନାହିଁ ଖେଳଇ ଜୁଆ
ବାହା ନ ହୋଇ ଯେ କରଇ  ପୁତା (=ପେଷ୍ୟ ପୁତ୍ର) ।
ସାମର୍ଥ ନ ଥାଇ ଲୋଡ଼େ ରମଣ
ଲେଖନ ନ ଧରି ହୁଏ ବରଣ ।
କହେ ଦୀନବନ୍ଧୁ, ରାଣ୍ଡ ମୁଣ୍ଡରେ ଏ ସିନ୍ଦୂର ବିନ୍ଦୁ ।

୭୯୦୪. ଗୀତକୁ ରସ୍ସୁ, ଗୀତ ମାଗିନେଇ ଚାଳରେ ଖୋସ୍ସୁ ।
ରସିକ ନୁହେଁ  ଅଥଚ  ନିଜକୁ ରସିକ ବୋଲି ବାହାରେ ଦେଖାଇ ହୁଏ ।

୭୯୦୫. ଗୁଆଖିଆ ଘର ପୁଅଟିଏ
ବରଷକେ କିଣେ ଗୁଆଟିଏ
ଖାଇ ଖାଇ ରଖେ ଅଧୁଟିଏ । - କୃପଣ ବ୍ୟକ୍ତିପ୍ରତି କଟାକ୍ଷ ।

୭୯୦୬. ଗୁଡ଼ିଆ ଘରର ଗୁଡ଼
ନ ଦେଲେ ନ ଦେବ ବିଦମାଳକ (=ବାହୁର ଅଳଙ୍କାର)
ମୁହଁ କାହିଁ ପାଇଁ ମୋଡ଼ ?

୭୯୦୭. ଗୁଡ଼ିଆ ଘରର ଲଡୁ
ଚାଳ କଣାକରି ପସିଲା ସଡୁ
ଭାଙ୍ଗିଦେଲା କମ ଖଡୁ ।

୭୯୦୮. ଗୁଡ଼ିଆ ଘରର ମୁଢ଼ି
ଖୁଡ଼ିଙ୍କି ମାଗିଲି ବସୁଣିଟିଏ (=ନାକର ସୁନା ଅଳଙ୍କାର)
ଖୁଡ଼ିଦେଲେ ମୁହଁ ମୋଡ଼ି ।

୭୯୦୯. ଗୁରୁ ଶିଷ୍ୟ ଆସି ହେବେ ପରଖେ
ଝୁଲାମୁଣି ନେଇ ପେଡ଼ିରେ ରଖ
ତେବେ ଜଣାଯିବ ସବୁ
ଜନ ଜଗତରେ ଦେଖିଲେ ଜାଣିବେ
କିଏ ପୁଅ କିଏ ବାବୁ ।

୭୯୧୦. ଗୁଲୁବାସ, ପୁରୁଷ ପୁଅର ଭାରି ଆଶ
କ୍ଷଣେ ଦୟାକର ମାଳତୀ

ମରିହଜି ଗଲେ ସଂସାରୁ କି ନବୁ ?
କାଳେ କାଳେ ଥିବ ପୀରତି ।

ସଂସାର ଅସ୍ଥାୟୀ, ମାତ୍ର ପ୍ରୀତି ଚିରନ୍ତନ । ଯୌବନକୁ ସଂଚୟ କରି କିଛି ଲାଭ ନାହିଁ ତେଣୁ ଯୌବନକୁ ଉପଭୋଗ କରିବା ଉଚିତ । ଏହି ସବୁ କଥା କହି ଯୁବତୀକୁ ବିପଥଗାମୀ କରାଇବା ପାଇଁ ପ୍ରବର୍ତ୍ତାଇବା ।

୭୯୧୧. ଗେଲ ବସରିଆ ଡାକ
ଡାଟିକିଲା ମାଡ଼ ମାରିବା ପାଇଁ
କରି ପକାଉଛ କାଖ ।

ଯେଉଁ ସ୍ତ୍ରୀ ସ୍ୱାମୀଠାରୁ ଘରଭିତରେ ନିର୍ଘାତ ମାଡ଼ ଖାଏ ଏବଂ ବାହାର ଲୋକ କେହି ଆସି ତାକୁ ଛଡ଼ାଛଡ଼ି କରି ରକ୍ଷା କରିପାରନ୍ତି ନାହିଁ । ଏହିପରିସ୍ଥିତିରେ ସ୍ତ୍ରୀ କୁ ଟିକେ ସୁଆଗ କଲେ ସ୍ତ୍ରୀ ସ୍ୱାମୀର ନିଷ୍ଠୁରତାକୁ ସ୍ମରଣ କରେ ।

୭୯୧୨. ଗୋଇଠା ମାଡ଼କୁ ନାହିଁ ପରାଇ (=ପରବାୟ)
ଅଇଂଠା ପତର ଚାଟୁଛି ଯାଇଁ ।

ମର୍ଯ୍ୟାଦାହାନୀକର କାର୍ଯ୍ୟ କରୁଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।

୭୯୧୩. ଗୋଟିଏ ରାଣ୍ଡୀ, ଖୋଜିଲା ବେଳକୁ ଅନନ୍ତ ଖଣ୍ଡି ।

ଚାରିଆଡ଼େ ବୁଲୁଥିବା ବିଧବା ପ୍ରତି ବ୍ୟଙ୍ଗ ।

୭୯୧୪. ଗୋଟିଏ ଚାଉଳକୁ ଫାଳେ କରି
ସାତଶିଳ କରି ଚୁରି ଚୁରି
 ଅଧେ କଲି ସରୁ ଚକୁଳି
 ଅଧେ କଲି ପୁଲି
ଅଧେ ଦେଲି ପୁଅ ବୋହୂଙ୍କୁ
 ଆଲୋ ବୋହୂଟିଏ କାହିଁକି ହସ ?
 ନ ଖାଇ ପାରିଲେ ଚାଳରେ ଖୋଷ ।

କୃପଣତାକୁ ଉପଲକ୍ଷ୍ୟ କରି ବ୍ୟଙ୍ଗ କରାଯାଇଛି ।

୭୯୧୫. ଗୋଟିଏ ଦିଓଟି ବଜେଇ ଦେବି
ପୁଞ୍ଜିଏ ଛଅଟି ଖସେଇ ଦେବି ।

ଡୁଡୁ ବା ବାଗୁଡ଼ି ଖେଳର ରାହାଧରା ପଦ । ଅର୍ଥାତ୍ ଗୋଟିଏ ଦିଓଟି ଢାବଡ଼ା ବା ମୁଥ ମାରି ଦାନ୍ତ ଭାଙ୍ଗିଦେବି ।

୭୯୧୬. ଗୋଡ଼କୁ ସୁନ୍ଦର ଯୋତା, ମୁଣ୍ଡକୁ ସୁନ୍ଦର ମହଣ ଛତା ।
ବାବୁଆନି ସାଜସଜ୍ଜା ସମ୍ପର୍କରେ ଉକ୍ତି ।

୭୯୧୭. ଗୋଡ଼କୁ ସୁନ୍ଦର ସରୁ ଅଳତା
ଗଳାକୁ ସୁନ୍ଦର ମାଳି
ହାରକୁ ସୁନ୍ଦର ରତନ ପଦକ
କାନକୁ ସୁନ୍ଦର ନୋଳି ।
ପୂର୍ବକାଳର ଲୋକଙ୍କର ସୌନ୍ଦର୍ଯ୍ୟ ପ୍ରତି ରୁଚି ।

୭୯୧୮. ଗୋଡ଼ର ମୁଦି, ସବୁ ନଟକୁଟ ନାନୀର ବୁଦ୍ଧି ।
ନାନୀର କୁଟିଳତାକୁ ବ୍ୟଙ୍ଗ କରାଯାଇଛି ।

୭୯୧୯. ଗୋଡ଼ମୁଦି ଆଗୁଆଳି
କଥାଏ ଦି କଥା କହିଥାଆନ୍ତି
ସାଙ୍ଗେ ସାଙ୍ଗେ ଜଗୁଅଳି ।
ପ୍ରେମିକା ଯୁବତୀର ଚରିତ୍ରରେ ସନ୍ଦେହ କରି ଜଗୁଆଳି ବ୍ୟବସ୍ଥା କରାଯାଇଛି ।

୭୯୨୦. ଗୋଡ଼ ଜୋତା ଦେଲ
ଗୋଡ଼ ଖାଇଗଲା ଜନ୍ଦା
କେଉଁ ନାରୀ ସଂଗେ ପୀରତି କଲ
କାନନୋଳି ଦେଲ ବନ୍ଧା ।
ସ୍ୱାମୀର ପରକୀୟା ପ୍ରୀତି ପ୍ରତି ପତ୍ନୀର ଶୋଚନା ।

୭୯୨୧. ଗୋଡ଼ରେ କାଦୁଅ ମେଞ୍ଚାଏ
ମୁଣ୍ଡରେ କିଆଫୁଲଟାଏ ।
ଅପରିଚ୍ଛନ୍ନ ବ୍ୟକ୍ତିର ରସିକତା ପ୍ରତି କଟାକ୍ଷ ।

୭୯୨୨. ଗୋଡ଼ର ବାଙ୍କେଣି ବଳା
ଚାଲି ଯାଉଥିଲେ ଝମ୍ ଝମ୍ କରି ।
ମୁହଁ ଦିଶୁଥିଲା କଳା । - ବ୍ୟଙ୍ଗାତ୍ମକ ।

୭୯୨୩. ଗୋଦର ଗୋଡ଼କୁ ଦେ ହଲାଇ
ସାରୁ ବାଇଗଣ ଦେ ଚଳେଇ । - ବ୍ୟଙ୍ଗାତ୍ମକ ।

୭୯୨୪. ଗୋଦପ କୋଷ, ଏ ଦୁହିଁକି ନାହିଁ ବିଶ୍ୱାସ ।

ବାତଜ୍ୱର ହୋଇ କେତେବେଳେ ରକ୍ତ ଗଡ଼ିବ ତାର କିଛି ଠିକଣା ନାହିଁ ।

୭୯୨୫. ଗୋଦରୀ ଗୋଡ଼ରେ ବଳା, ତାକୁ ହଲେଇ ହଲେଇ ଚଳା ।

ଗୋଦରୀର ଅଳଙ୍କାର  ପରିଧାନ ସମ୍ପର୍କରେ ବ୍ୟଙ୍ଗ ।

୭୯୨୬. ଗୋଦରୀ ଗୋଡ଼ରେ ପାହୁଡ଼, (=ପାଦର ଅଳଙ୍କାର)

ପାଦ ଚାହିଁ  ଚାହିଁ ଦଉଡ଼ ।

ପାଦ ଅଳଙ୍କାରରେ ଗୋଦରୀର ସୌନ୍ଦର୍ଯ୍ୟ ବୃଦ୍ଧି ହୁଏ ନାହିଁ । ହାସ୍ୟକର ।

୭୯୨୭. ଗୋଦରୀ ଗୋଡ଼ରେ ଅଳତା ଦେଖ

ମୁଦି ନାକଚଣା କେମନ୍ତେ ସୁଖ

ଗୁଞ୍ଜର ପରର ଟିକା

ବୟସ କାଳରେ ବଡ଼ ଆଦର

ବୁଢ଼ନ୍ତ କାଳକୁ ପକା ।

୭୯୨୮. ଗୋବରା ନନା, ନାନୀ କାହିଁ ଗଲା ପଛକୁ ଅନା ।

ଏଠାରେ ବ୍ରାହ୍ମଣକୁ ବିଦ୍ରୁପ କରାଯାଇଛି । କାରଣ ନାନୀ ନନାର ସ୍ତ୍ରୀ ଲିଙ୍ଗ ନୁହେଁ ।

ପରନ୍ତୁ ନାନୀ ଅର୍ଥ ବଡ଼ଭଉଣୀ ।

୭୯୨୯. ଗୋବିନ୍ଦ ମୂଷା

ଘରେ ଘରେ ପଶି କାଟୁଛି ଖୋଷା ।

କେତେ ଖାଉଅଛି ଟାଙ୍ଗିଆ ପଶା

ରାତିଯାକ ଆଖି ନୋହୁଛି କଷା ।

ମୂଷାକୁ ଉପଲକ୍ଷ୍ୟକରି ଲମ୍ପଟକୁ ବ୍ୟଙ୍ଗ କରାଯାଇଛି । କାରଣ ଲମ୍ପଟ ରାତିସାରା

ଅନିଦ୍ରା ରହି ପରଘରେ ପଶେ ଓ ମାଡ଼ଖାଏ ।

୭୯୩୦. ଗୋରୀ ପଚାରେ କାଳୀଲୋ ?

ତୁ କାହାର ବାଳୀ ଲୋ ?- ଗୋରୀ କାଳୀକୁ ବ୍ୟଙ୍ଗ କରୁଛି ।

୭୯୩୧. ଗୋରୀ କାଳୀ ଦିହେଁ ଗାଧୋଇ ଗଲେ

ଭାଙ୍ଗିଲେ ଗଞ୍ଜେଇ ଡ଼ାଳ

ଗୋରୀ ପଚାରଇ କାଳୀ ଲୋ

ବଞ୍ଚିଥିବା କେତେ କାଳ ?

କାଳୀ କହଇ ଗୋରୀ ଲୋ।
ଦିନେ ତ ପୂରିବ କାଳ ।

ସୌନ୍ଦର୍ଯ୍ୟ ଅସ୍ଥାୟୀ । ଦିନେନା ଦିନେ ତାର ମୃତ୍ୟୁ ଘଟିବ । ଏକଥା କାଳୀ, ରୂପ ଯୌବନରେ ଗର୍ବିତା ଗୋରୀକି ଚେତାଇ ଦେଇଛି ।

୭୯୩୨. ଗୋରୁକୁ ମାଇଲୁ ଛାଟେ
ଗହିରୀ ବିଲରେ ଘଷି ପାରୁଥିଲି
ଚାଲିଗଲୁ ସେଇ ବାଟେ ।- ପ୍ରେମାତ୍ମକ ।

୭୯୩୩. ଗୋଳାଇଲି ସଜ ଦହି
ହାତ ବାଜୁବନ୍ଧ ଗୁଣ୍ଠିବି ବୋଲି
ପାଟରାଣୀ (=ପାଟରାର ସ୍ତ୍ରୀ) ସଂଗେ ସହୀ (=ସଖୀ)

୭୯୩୪. ଗୋଳେଇଲି ଗୋଳି ପାଣି
କେଉଁକଥା ଲାଗି ସାଆନ୍ତମଣି
ଯାଉଥିଲେ ମଥାମଣି । - ପ୍ରେମାତ୍ମକ ।

୭୯୩୫. ଗୋସେଇଁଖାଇ (=ଗୋରୁଙ୍କୁ ଗଳି) ଗାଈ
ନିତି ପର ବାଡ଼ ଡେ଼ଇଁ ।

୭୯୩୬. ଗୋଲକ ଧନ୍ଦା, ନ ଜାଣିବା ଲୋକ ହେବେ ଅନ୍ଧା ।

ଗୋଲକ ଧନ୍ଦା ଅର୍ଥାତ୍ ନାଁ ଦିଆ ବା ପ୍ରହେଳିକା ଯିଏ ଜାଣି ନଥାଏ ସେ ଉତ୍ତର ଦେବାକୁ ଧନ୍ଦିହୁଏ ।

୭୯୩୭. ଗୁଆଁର (=ମୂର୍ଖ) ଏକ, ବଡ଼ଲୋକ ସଙ୍ଗେ ଲାଗଇ ଟେକ ।
ଗୁଆଁର ଦୁଇ, ପର ଚାଳକୁ ଉଠାଏ ପୋଇ ।
ଗୁଆଁର ତିନ, ପରର ଅଧିନ ।
ଗୁଆଁର ଚାରି, ପରର ଟଙ୍କାରେ କାରବାରୀ ।
ଗୁଆଁର ପାଞ୍ଚ, ପର ଗଡ଼ିଆରେ ଛାଡ଼େ ପହଳା ମାଛ ।
ଗୁଆଁର ଛଅ, ଏଠି କଥା ସେଠି କହ ।
ଗୁଆଁର ସାତ, ଶଶୁରଘରେ ନିତ ଖାଏ ଭାତ ।
ଗୁଆଁର ଆଠ, ଯିଏ ମାଇପକୁ ପଠାଏ ହାଟ ।
ଗୁଆଁର ନଅ, ମାଇପକୁ ବିଶ୍ୱାସ କଥା କହ ।

ଗୁଆଁର ଦଶ, ମାଇପ କଥାରେ ଉଠ୍ ବସ ।
ଗୁଆଁର ଏଗାର, ଯେ ପାଞ୍ଚଲୋକଙ୍କୁ ଫାଙ୍କି କରେ ଘରଦ୍ୱାର ।
ଗୁଆଁର ବାଆର, କଥା ଉପରେ କଥା କହି ପାଞ୍ଚଲୋକର ସବାର ।

୭୯୩୮. ଗୋବର ଗୋଟେଇ ଝିଅ, ପାଇଲା ରାଜା ପୁଅ ବର ।
ମୁଡ଼ି ମୁଡ଼କି ଦେଖି କହିଲେ - କୋଉଁ ଗଛର ଫଳ ।

୭୯୩୯. ଗୋବର ଗୋଟେଇ ପୁଅ, ଭାଣ୍ଡଗାଁର ନାୟକ ।

୭୯୪୦. ଗୋବର ଗୋଟେଇ ପୁଅ, ଆଜି ଗାଁ ପଧାନ ବନିଛି
ଚାଲି ନ ପାରି ସେ ପାଲକି ମଗେଇଛି ।

୭୯୪୧. ଗୋବର ଗୋଟେଇ ପୁଅ ଦେହରେ ଓଢ଼ଣି ।

୭୯୪୨. ଗୋବର ଗୋଟେଇ ପୁଅର ନାମ ଚନ୍ଦନ-ବିଳାସ ।

୭୯୪୩. ଗୋବର ଗୋଟେଇ ପୁଅ ସଦର ନାଏବ ।

୭୯୪୪. ଗୋବର ଗୋଟେଇ ପୁଅ ସ୍ୱର୍ଗକୁ ଯାଏ ।

୭୯୪୫. ଗୋବର ପୋଡ଼େ ଗୋବର ହସେ,
ସବୁରି ଦିନେ ନା ଦିନେ ଅଛି ଶେଷେ ।

୭୯୪୬. ଗୁଡ଼ିର ପେଞ୍ଚ ।

୭୯୪୭. ଗାଁ ଲୋକେ ହୁସିଆର, ଘର-ବାଲେ ଖବର ଦାର ।
ପୂର୍ବେ ଗାଁ ଚଉକିଆ ରାତିରେ ଗାଁ ଜଗିଲାବେଳେ ଏହିପରି ଡାକ ଦେଉଥିଲା ।
ଫଳରେ ଚୋରମାନେ ତା ଡାକରୁ ଚଉକିଆର ସ୍ଥିତି ନିରୂପଣ କରି ପାରୁଥିଲେ ।

୭୯୪୮. ଗୋଟେ ଦିଟା ହିନ୍ଦୁଧର, ସକାଳେ ସଂଧ୍ୟାରେ ଜଳଖିଆ କର ।
ବାଂଲା ଦେଶରେ ପ୍ରଚଳିତ ଏକ ସ୍ଲୋଗାନ୍ ।

୭୯୪୯. ଗୁପତ ପୀରତି ବଡ଼ ମଧୁର, ଯାବତ ମିଳନ ନୁହେଁ ଶରୀର ।

୭୯୫୦. ଗୁଣ୍ଡିଚା ନାମ ତ୍ରିଅକ୍ଷର । ଯେ ମୁଖେ କଲାକ ଉଚ୍ଚାର ।
ତା ବଂଶେ ଯେତେ ପାପ ଥାଇ । ତାହା ସମସ୍ତ କ୍ଷୟ ଯାଇ ।

୭୯୫୧. ଗଙ୍ଗାଦି ନାନା ତୀର୍ଥ ନିକଟେ ଥାଇଣ ଚାତକ
ଜଳଦ ଜଳ ଟୋପିକୁ ଆଶ୍ରାକରି ଅବିରତେ ତୃଷିତ ।

୭୯୫୨. ଗୋବର ପୋକକୁ ଗୋବର ବାସଇ,
କୃମିକୁ ବାସଇ ମଳ,

ଜାର ପୁରୁଷକୁ ଦୋଚାରୁଣୀ ବାସେ
ମାଛିକୁ ଯେ ପୂଜ ନାଳ
ଖଳକୁ ବାସଇ ପର ଅପବାଦ
ଶାଗୁଣାକୁ ପୋଚା (=ଦୁର୍ଗନ୍ଧ) ମଡ଼ା,
ଚୋରକୁ ବାସଇ ପର ପଦାରଥ (=ପଦାର୍ଥ)
ମୋଚିକୁ ସଢ଼ା ଚମଡ଼ା ।

୭୯୫୩. ଗାଧୋଇବା ପାଇଁ ରଙ୍ଗ ହଳଦୀ, ଘେନି ବାଛି ରଖିଥାଅ
ସୁନ୍ଦର ଦେହକୁ ପଟାନ୍ତର ନାହିଁ, ଲିଆ ଉଦା ହାଣ୍ଡି ପ୍ରାୟ ।
ଫୁଲ ନୋଳିକରି କାଚ ପିନ୍ଧିଥା, ସୁନ୍ଦର ଦିଶିବ ବୋଲି
ଯେଉଁଠାରେ ଥାଅ ଧୂମ ଉଡୁଥାଏ, ଗୁଡ଼ିଆ ଝୁମୁକା ବାଡ଼ି ।

୭୯୫୪. ଗରୁଡ଼ ବାରୁଡ଼ ଘରଲୋ ମୋହର, ମୁଁ କାହୁଁ ଆଣିବି ଧନ
ବଡ଼ଘର ବୋଲି ଗଣିତ ଲୋଡୁଛୁ, ତହିଁ ନ ସରିବ ଦିନ ।
ବଡ଼ଘର ବୋହୂ ପ୍ରତି କଟାକ୍ଷ କରାଯାଇଛି ।

୭୯୫୫. ଗଉଡ଼ ବୋଲେ ଖର (=ରାଗ)
ଏ ମାଆ ମଲେ ମୁଁ ଭଲ ହୁଅନ୍ତି
ଏହି ଭାଙ୍ଗୁଛି ମୋ ଘର ।

୭୯୫୬. ଗଉଡ଼ ବୋଲେ ଖଙ୍ଗ (=ଅଭିମାନ)
ନିରନ୍ତର ଘରେ କଳି ଭିଆଇଛ
ଲୋକେ ଦେଖୁଛନ୍ତି ରଙ୍ଗ ।

## ହରିଜନ ଝିଅର ବାହୁନା ପଦ

୭୯୫୭. ଗାଇଲେ ଗାୟାଣି ଗୀତ ବାଜିଲା ବାଜଣା
ଢୋଲ ଦମା ଟମକ ନିଶାଣ ଯନ୍ତ୍ର ବୀଣା ।
ଗାଇଲେ ଗାୟାଣୀ ଗୀତ ଦେଲେ ହୁଳ ହୁଳି
ବାଦ୍ୟ-ନାଦ ଶବଦରେ ପଡ଼ିଲା ଉଛୁଳି ।

୭୯୫୮. ଗାଇ ଦେଲି ଦୋଳି ଗୀତ
ଦୋଳିରେ ଦୋଳିରେ ଉଡୁଙ୍କି ଯିବି, ସାତ ଶିଖ ପରବତ ।

୭୯୫୯. ଗାଁ ଗଣ୍ଡା ହାଉ ଯାଉ
ଠାକେରା ଗାଲରୁ କି ମଧୁ ପାଉ, ଦିବାରାତ୍ର ଧାଇଁ ଥାଉ ।

୭୯୬୦. ଗଛ କୋରଡ଼ରେ ଶାଗୁଣା ବସା
କାଳୀ କୋଦରୀର ତେଲଙ୍ଗି ଖୋଷ ।
ସାହି ସାହି ଲୋକ ହସା ।

୭୯୬୧. ଗୋଡ଼ରେ ଲେଖିଲି ହଂସ
ମୋତେ ଛାଡ଼ି କାନ୍ତ ଯିବ ବିଦେଶ
ସବୁ ହେବ ମୋର ବିଷ ।

୭୯୬୨. ଗୋଲାପ ଫୁଲର ହାର
ଯେତେ ଦୂରେ ଥିଲେ ତୁମ୍ଭେ ମୋହର
କେବେ ନ କରିବ ପର ।

୭୯୬୩. ଗୁହାଳ କଣରେ ମୂଷା
ବାପା ଦେଇଥିଲେ ପୁରୁଣା କଂସା
ଦାଣ୍ଡେ କଲେ ଲୋକ ହସା ।

୭୯୬୪. ଗାଈ ଗଲେ ନାଳେ ନାଳେ
ଗାଈଙ୍କ ପଛକୁ ବାଛୁରୀ ହଳେ
ଅଣ୍ଟାକୁ ଘାଗୁଡ଼ି ମାଳେ ।

୭୯୬୫. ଗଡ଼ି ଗଡ଼ି ଗଲା ବେଳ
ଉଞ୍ଚ ପିଣ୍ଡା ଦେଖି ଶରଧା କଲ
ବାପା, ପେଜଖିଆ ଘରେ ଦେଲ ।

୭୯୬୬. ଗଞ୍ଜେଇ ଗଛର ଛାଇ
ତୋର ମୋର ପୁଚି ଖେଳୁଥିବା
ଝୁରି ମରୁଥିବେ ଭାଇ ।

୭୯୬୭. ଗାଁ ମୁଣ୍ଡେ କଲି ଘର, ଧାଇଁ ପଡ଼ ହୋ' ସାଇ ପଡ଼ିଶା !
ମୋ ଘରେ ପଶିଛି ଚୋର ।

୭୯୬୮. ଗୋରୀ ହୋଇବ ଶଏ ଷାଠିଏ, କାଳୀଟି ଅମୂଲ ମୂଲ
ମଝିରେ ସେ ଯେଉଁ ତନୁପାତଳୀ, ସରଗ ଚାନ୍ଦର ତୁଲ ।

# ଢ଼ମାଳି

୭୯୬୯. ଗାଇବୁ ବୋଇଲେ ଗାଆ ଜାଇଫୁଲ,
ଗାଇବୁ ବୋଇଲେ ଗାଆ
ନ ଗାଇ ପାରିଲେ ଘରକୁ ଯାଆ
ମୋ ବଳଦ କୁଣ୍ଡରେ ଖାଆ
ନ ଯା ତେଲଙ୍ଗା ପେଣ୍ଠ
ତେଲି ଘଣା ଡ଼ାକେ କଟ କଟ ।

୭୯୭୦. ଗାଈକୁ ଛ' ବିଡ଼ା ଘାସ
ହରିପୁର ଲୁଗା ହରିଡ଼ା କଷ
ଚାଲଯିବା କପିଳାସ ।

୭୯୭୧. ଗାଈ ଗୋଡ଼ ତଳେ ମୁଦି
ଗେଙ୍ଗୁଟି ପଥର ବନ ହଳଦି
ଶିରେ ଶିରେ ଯିବ ଭେଦି ।

୭୯୭୨. ଗାଈକି ପିଟିଲି ଛାଟେ
ଗାଈ ପଳେଇଲା ବେଗୁନି ପଟେ
ମାମୁଁ ଘର ଡ଼େଇଁ ବାଟେ ?

୭୯୭୩. ଗୁହାଳ ଘରକୁ ଧଡ଼ା
ଜେମା ଶାଶୁଘର ପାଲିଙ୍କି ଚଢ଼ା
ଆଗରେ କାଞ୍ଚିଆ (=କାଞ୍ଚିଦେଶ) ଘୋଡ଼ା ।

୭୯୭୪. ଗଡ଼ି ଗଡ଼ି ଗଲା ବେଳ
ଟାଙ୍ଗରା ମୁଣ୍ଡରେ ସୋରିଷ ତେଲ
ପଛ ଘରଣୀକି ଗେଲ ।

୭୯୭୫. ଗରିଆ (=ଗରା) ମୁହଁରେ ଗବ
କଥା ନ କହିଲେ କି ଭାସିଯିବ
ଯାହା କପାଳରେ ଥିବ ।

୭୯୭୬. ଗରିଆ (=ଗରା) ମୁହଁ ତଳକୁ
ଯାଆରେ କାଳିଆ କୁଞ୍ଜ ବନକୁ
ଆଣିବୁ ପ୍ରାଣଧନକୁ ।

୭୯୭୭. ଗବ ଗଛ ଦୁଇ କେନା
ଗବଗଛ ତଳେ ମିଠାଇ ଦନା
ଖାଇଲେ ଜାଣିବୁ ସିନା ।

୭୯୭୮. ଗଛକୁ ଚଘିଲା (= ଚଢ଼ିଲା) କାଇ
ଜୁହାର କରୁଛି ମୋ ଦାଦାଭାଇ
ଗରିବକୁ ଦୟା କାହିଁ ।

୭୯୭୯. ଗଡ଼ ଗଡ଼ି ଗଲା ଗଡ୍ଡୁ
ବୁଢ଼ା ମଣିଷକୁ ଘଇତା କଲୁ
ଲେଁଗଡ଼ି ଲେଁଗଡ଼ି (=ଘୁଷୁରି ଘୁଷୁରି) ମଲୁ ।

୭୯୮୦. ଗାଇକି ମାଇଲି ଛାଟେ
ଗାଈ ପଳାଇଲା ହଳିଆ (=ଏକପ୍ରକାର ମାଟି) ଆଟେ (=ପଡ଼ିଆ)
ମାମୁଁ ଘର କେଉଁ ବାଟେ,
ମାମୁଁ ଘର ପିଣ୍ଡା ଉସାର ନାହିଁ
ଭେନାଇ (=ଭେଣେଇ) ବସିବେ ନାହିଁ ?
କାହିଁକି ଭେନେଇ ଗୁଡ଼ଟା (=ଗୋଡ଼ଟା) ଛୁଟା (=ଛୋଟା)
ଖାଇବ ଆରିସା ପିଠା ।

୭୯୮୧. ଗରିଆ (=ଗରା) ଉପରେ ଗଡ୍ଡୁ
କାହିଁକିରେ ଗଡ୍ଡୁ ଗଡ଼ି ଗଡ଼ି ଗଲୁ
ମୋତେ କଥା ଶୁନା (=ଶୁଣା) କଲୁ ।

୭୯୮୨. ଗରିଆ (=ଗରା) ଉପରେ ଗଡ୍ଡୁ
ମୋତେ ଛାଡ଼ିକରି ଉଡ଼ିଶା (=ଓଡ଼ିଶା) ଗଲୁ
ମୋହରି ନିଶାସ (=ନିଃଶ୍ୱାସ) ପଡୁ ।

୭୯୮୩. ଗଇରି ନାଆଁ ଗଉରା,
ନ ସହିପାରେ ମୁଁ ନନନ୍ଦ ତୁରା, ଖାଇବି ବିଷ ମହୁରା ।

୭୯୮୪. ଗାଆଁ ଦୁଲି ପଟା ଦୁଲି (=ଦୋଳି)
ଧାଇଁ ଧାଇଁ ଗଲି ଦୁଲିମି (=ଝୁଲିବି) ବୋଲି
ପରି (=ପଡ଼ି) ମଲି ମଝା ଖୁଲି ।

୭୯୮୫. ଗହିର ବିଲକୁ ଯାଇଥିଲି
ଚୁଙ୍ଗୁଡ଼ି ମାଛ ଆଣିଥିଲି
ଅଧେକଲି କଞ୍ଚା, ଅଧେ କଲି ଭଜା ।
ମୋ ଭାଇ ହେଲା ରଜା ।

୭୯୮୬. ଗୋବର ଗଡ଼ିଆ କଉ
ଆମେ ଦି ଭଉଣୀ ପୁଞ୍ଚି ଖେଳୁଥିଲୁ
ଝୁରି ମରୁଥିଲେ ବୋହୂ ।

## କୋବା ବାଡ଼ିଆ ଢ଼ମାଳି

୭୯୮୭. ଗଡ଼ି ଗଡ଼ିଗଲା ବେଲରେ, ଗଡ଼ି ଗଡ଼ିଗଲା ବେଲ
ଉପର ସାହିକି ଅନାଇଁ ଦେଲି
ଖୋଷାରେ ଫୁଟିଛି ଫୁଲ ।

୭୯୮୮. ଗଲା ଓଳି ତଳେ ଭାଲୁ ରେ, ଗଲା ଓଳି ତଳେ ଭାଲୁ
କାଟାରେ ମାଠିଆ ପେଟରେ ଛୁଆ
ଖଡୁ ଝୁମୁଝୁମୁ କଲୁ ।

୭୯୮୯. ଗାଈଗଲେ ନାଳେ ନାଳେ ରେ, ଗାଈ ଗଲେ ନାଳେ ନାଳେ
ଗାଈଙ୍କ ପଛରେ ବାଛୁରୀ ହଳେ
ହଜିଗଲେ ସଞ୍ଜବେଳେ ।

୭୯୯୦. ଗାଈ ଗୋଡ଼େ ଗଲା ମୁଦିରେ, ଗାଈ ଗୋଡ଼େ ଗଲା ମୁଦି
ସମ୍ବଲପୁରିଆ ନାଲି ହଳଦି
ଶିରେ ଶିରେ ଗଲା ଭେଦି ।

୭୯୯୧. ଗୁଆ ଗଛ ଧାରି ଧାରିରେ , ଗୁଆ ଗଛ ଧାରି ଧାରି
କେତେ ଦେଇ ନାହୁଁ ଯୋଗୀ ଭିଖାରୀ
ମୋତେ ଦେଲେ ଯିବ ସରି ।

# ଶିଶୁଝରା (ଢ଼ମାଳି)

୭୯୯୨. ଗିଲି ଗିଲି ଗୁଣ୍ଡି, ଗିଲି ଗିଲି ଗୁଣ୍ଡି ।
ପାକୁ ପାନେ
ମା ଠୋଉ ଯାଇ କଉଡ଼ି ଆଣେ ।
ମାଆ ବୋଇଲା କଉଡ଼ି ନାହିଁ
ଝଳକ ଲଡୁଟି ପାଇବୁ କାହିଁ?
ପକେଇ ଦେଲି ଖତ କୁଢ଼କୁ
କୁଆ ନେଇଗଲା ମାମୁଁ ଘରକୁ
ମାଇଁ ବୋଇଲା ଏଉଟି କିଏ
ମାମୁଁ ବୋଇଲା ଭଣଜା ଇଏ
ଧୋଇ ଧାଇ କରି ଘରକୁ ନେଏ
ଦୁଧ ଭାତ କରି ଗୁଣ୍ଡିଏ ଦେ
ଭାଡ଼ି ତଳେ କିନା ଗଡ଼େଇ ଦେଏ ।

ଶିଶୁ ଦଶମାସ ଯାଏ ଦୁଧ ପିଏ, ତାପରେ ତାକୁ ଅନ୍ନ ଖୁଆଇବାର ଅଭ୍ୟାସ କରାଯାଏ । ପ୍ରଥମରେ ଶିଶୁ ନ ଖାଇବା ପାଇଁ କନ୍ଦଳ ସୃଷ୍ଟି କରେ । ଜନନୀ ଶିଶୁକୁ କୋଳରେ ଧରି ଝୁଲାଇ ଝୁଲାଇ ଅନ୍ନର ଛୋଟ ଛୋଟ ଗୁଣ୍ଡି କରି ଉଲ୍ଲିଖିତ ଗୀତ ଗାଇ ଖୁଆନ୍ତି ।

୭୯୯୩. ଗୁଗୁ ପାଞ୍ଚ, ଗୁଗୁ ପାଞ୍ଚ
ବାପାଙ୍କ ଅଇଁଣ୍ଠା କିଏ ସେ ଖାଏ?
ବୋଉ ଖାଏ ।
ବୋଉ ଅଇଁଣ୍ଠା କିଏ ସେ ଖାଏ ?
ଭାଇ ଖାଏ ।
ଭାଇ ଅଇଁଣ୍ଠା କିଏ ସେ ଖାଏ ?
କୁନିଝିଅ ଖାଏ ।
କୁନିଝିଅ ଅଇଁଣ୍ଠା କିଏ ସେ ଖାଏ ?
ଗିରିଧ (=ଗିରିଧର) ଖାଏ ।

ଗିରିଧ (=ଗରିଧର) ଅଇଁଷା କିଏ ସେ ଖାଏ ?
କୁନିପୁଅ ଖାଏ ।
ସୁନା ଗଡ଼ିଆରେ ପଡ଼ିବୁ କି,
ଗୁହ ଗଡ଼ିଆରେ ସୁନା ଗଡ଼ିଆରେ ପଡ଼ିଲାରେ,
ଗୁହ ଗଡ଼ିଆରେ ପଡ଼ିଲାରେ ।
ପାଦରେ ପିଲାକୁ ବସାଇ ଟେକି ଟେକି ଏ ଖେଳ ହୁଏ ।

## ପ୍ରଭାତ ଭଜନ

୭୯୯୪. ଗୋବିନ୍ଦ ଗୋବିନ୍ଦ ଭାବନ୍ତି ମୁନି
ଗୋବିନ୍ଦ ଗୋବିନ୍ଦ କୈବଲ୍ୟ ଦାନି
ଗୋବିନ୍ଦ ଗୋବିନ୍ଦ ସଂସାର ସାର
ଗୋବିନ୍ଦ ନାମ ଗୋଟି ନର୍କୁ ଉଦ୍ଧାର ।

## କୃଷକ ଢ଼ମାଳି

୭୯୯୫. ଗୀତ ତ ଚାରି ପଦରେ ବୋଲିବୁ ହଳିଆ
ଭାତ ଧରି କମଳାତ ହିଡ଼ ମୁଣ୍ଡେ ଠିଆ
ପାଠ ତ ପଢ଼ାଇନି ନାହକ ଚାହାଳୀରେ
ଗୀତ ମୁଁ ବୋଲି ନାହିଁ ଲୋ କମଳା ପାଞ୍ଚ ହଳିଆରେ
ଗୀତ ତ ଗୀତ ଲୋ ଗମ୍ଭୀର ପହଲାରେ
କି ଗୀତ ବୋଲିବି ଲୋ କମଳା
ଧରିଛି ହଡ଼ା ହଳେ ।

୭୯୯୬. ଗୋଲାହାଟ ପରେ ତ ରାଘବ ପାଟଣା
ରାମନାମ ଗୋଟି ତ ହେଉଛି ବିକା କିଣ ।
ହାଟ ଥାଉ ଥାଉ ତ କର ବିକା କିଣା
ହାଟ ସରିଗଲେ ମୁଢ଼ରେ ମନୁଆ
ତୁ ହେବୁ ପଥ ବଣା ।

୭୯୯୭. ଗୋପଦାଣ୍ଡେ ଏକା ତ କେହି ନାହିଁ ସଖା
ଏକା ବଂଶୀ ସ୍ୱନ ଡ଼ାକ ଯେ ଦେଉଛି
ମୋ ପ୍ରାଣ ରାଧିକା ।

୭୯୯୮. ଗୋପର ଗଉଡୁଣୀ ଗୋପେ ହୁଅ ବାଇ
ଶ୍ରୀରାମ ବିଭାବେଳେ ଯେ ନଗଲ ବନ୍ଧାଇ
ତେଣୁ ଶାପ୍ୟ ଯେ ପାଇଲ
ବୁଲାଇ ବିକ ଦହି ।

୭୯୯୯ ଗୋପରୁ ଗୋପୀନାଥ ଆସିବେ ବୋଲି ହରି
ଶେଯ ମୁଁ ସଜାଇଲି ଯେ ପାଖୁଡ଼ା ଜାଇମଲ୍ଲି
ପାଖୁଡ଼ା ଜାଇ ମଲ୍ଲି ଚାଙ୍ଗଡ଼ାରେ (=ଚାଙ୍ଗୁଡ଼ିରେ) ଭରି
ମୋ ପୁରୀ ନଇଲେ ହେ ମାଧବ
ଆମ୍ଭେ ଗୋପୀଏ ମଲୁ ଝୁରି ।

୮୦୦୦. ଗହିରି ବିଲରେ ତ ଉଡ଼ଇ ମୁଗ ବୋଡ଼ି (=ପଣର ୧/୪ ଅଂଶ)
ପତିତ ପାବନ ଯେ ବାନା ମୋ ଉଡୁଛି
ଝିଅ ଦେଇ ପୁଅ ଯେ ପାଇଛି
ଓଡ଼ିଶା ଗଜପତି ।

୮୦୦୧. ଗୁଣ୍ଡିଚା ଘରକୁ ଯେ ବାହୁଡ଼ା ଘର କୋଣେ
ମୋ ଷୋଳ ଚକ ରଡ଼ି ଯେ ଦେଉଛି
କାଳିଆ ପଦ ଘାତେ ।

୮୦୦୨. ଗୁଣ୍ଡିଚା ମଣ୍ଡପ ମୋ ଚଉଦ ଯୋଜନ
ଖନ୍ଦାରେ ମହାସୁଆର ଯୋଗଣେ ବଳରାମ
ଗମ୍ଭୀର ଉହାଡ଼େ ତ ସୁଭଦ୍ରା ଯେ ଖେଳନ୍ତି ଭଗବାନ ।
ଖେଳୁ ଖେଳୁ ଦିନ ଯେ ଅଢ଼େଇ ପ୍ରହର
ସୁଦର୍ଶନ ତେଜ ଲାଗି ତ ପଳାଏ ଅନ୍ଧାର
ବରୁଣଜେମା ପୁଛନ୍ତି ନଣନ୍ଦକୁ ରାଇ
ଅଲାଜୁକି ନଣନ୍ଦ କେଉଁଠି ଥିଲୁ ତୁହି
ଭୁଆସୁଣୀ ହୋଇ ତ ସରମ ନ କଲୁ
ଭାଇ ସଙ୍ଗେ ଜଣେ ହୋଇ ଯେ, ସପତୁଣି ହେଲୁ ।

୮୦୦୩. ଗୋବିନ୍ଦ ଗୋପାଳ ଯେ ନାମ ଗୋବର୍ଦ୍ଧନ
ଗରୁଡ଼ ପିଠିରେ ଯେ ବିଜେ ଭଗବାନ
ନେଇ ତୁ ଦେଖାଇବୁ ରେ ଗରୁଡ଼, ଦ୍ୱାରକା ଭୁବନ ।

## ଶଗଡ଼ିଆ ଢ଼ମାଳି

୮୦୦୪. ଗାଧୋଇ ପାଧୋଇ ମାଧୋଇ ଘରକୁ ପଳା ସଇ (=ସହି)
ପଖାଳ ଭାତେ ମାଡ଼ ଯେ କରିବ ଶାଗ ତ ଖରଡ଼ାଇ ।

୮୦୦୫. ଗାଁକୁ ସୁନ୍ଦର ତ ନଡ଼ିଆ ଗୁଆ ତାଳ
ଦୂରକୁ ସୁନ୍ଦର ତ ପରବତ ମାଳ
ବନ୍ଧୁକୁ ସୁନ୍ଦର ତ ଦିଶଇ ଦୂରବାଟ
ସିନ୍ଧୁକୁ ସୁନ୍ଦର ତ ଲହଡ଼ା ଭଙ୍ଗା ଘାଟ ।
ସଭାକୁ ସୁନ୍ଦର ତ ପଧାନ ସାନଭାଇ
ଗୋଠକୁ ସୁନ୍ଦର ତ ଦୁହାଁଳିଆ ଗାଈ ।
ଘରକୁ ସୁନ୍ଦର ଯେବେ ଲୋ ଘରଣୀ
ନ ଯିବୁ ବାପ ଘର ।

୮୦୦୬. ଗହିର ବିଲରେ ତ ମୋଟି ମୋଟି କିଆ
ମୋତେ ଛାଡ଼ି ଦିଅର ନ ହେବୁ ଆନେ ବାହା
ଯେବେ ବିଭା ହେବୁ ତୁ ମାଆବାପ ବୋଲେ
ଛିଣ୍ଡାଇବି ଦୋଳ ଯେ ମୁକୁଟ ବରଣ ବେଦି ତଳେ ।

୮୦୦୭. ଗୋଲାହାଟ ପରେ ଅନାହତ ଧ୍ୱନି
ଗୁରୁ ଆଶ୍ରେ କଲଚିହ୍ନକୁ ମୂର୍ଦ୍ଧନି
ଗହ ଗହ ଶବଦେ ଲୟ କରିଥିବୁ
ଗମି ପାରିଲେ ମୃମ ରେ ମନୁଆ କଳ୍ମଷ (=ପାପ) ନାଶିବୁ ।

## ଦାଣ୍ଡଧୁଆ-ଶଗଡ଼ିଆ ଢ଼ମାଳି

୮୦୦୮. ଗଗନ ଶିଖରେ ଗୋଲା ହାଟ ପରେ
ଗହ ଗହ ଧ୍ୱନି ଶୁଭୁଛି ସେଠାରେ
ଧ୍ୱନିକୁ ଜାଗି ଯୋଗୀ ନିଶ୍ୱାସ ଅଟକି
ଅଞ୍ଜଳି ଚିତ୍ତକୁ ନିଶ୍ଚଳ କରି ରଖି
ମନମତ ହସ୍ତୀକୁ ଅଙ୍କୁଶ ଜ୍ଞାନ କରି
କାଉଁରି ମଣ୍ଡଳ ଅଛଇଁ ଆବୋରି

ଚଇତନ ଦ୍ୱାରୀକୁ ପ୍ରହରୀ ଜଗାଇ
ପିଣ୍ଡ ଜଗାଇଛି ଯୋଗୀନ୍ଦ୍ର
ବ୍ରହ୍ମାଣ୍ଡ ଆବୋରଇ ।

୮୦୦୯. ଗଗନ ଶିଖେ ଗଣ୍ଠି ପୋତିଲି ଯତ୍ନ କରି
ଗଜ ଗଭୀରକୁ ଯେ ଚଉରସ ଭରି
ଘେନି ରସାର୍ଣ୍ଣୀଲା ବତ୍ରିଶ ଗୁଣେ ଦ୍ୟନ୍ତି
ଘୋଟି ରହିଅଛି ମୂଢ଼ରେ ମନୁଆ ବେଢ଼ ଚଉକତି ।

## ଖଣ୍ଡା ଉଲାରିବା ଢ଼ମାଳି

୮୦୧୦. ଗାଞ୍ଜେ ଗଣପତି, ଭଦ୍ର କାଳିକା
ପରଞ୍ଜେ ପାର୍ବତୀ ରହିଛି ଏକା । (୧)
ଗଣ୍ଡାରେ ବ୍ରହ୍ମା କରିଛନ୍ତି ଘର
ଅଭୟ ଅଛି ଅଭୟ ପଞ୍ଜରା । (୨)
ଆହୁତି ପରେ ବାଉତି ଅଛି
ସିଂହଦ୍ୱାରେ ସିଂହବାହିନୀ ରହିଛି। (୩)
ମଥାରେ ରହିଛି ରାହୁ
ଏତେ ବୋଲି ଖଣ୍ଡା ଉଲୁରି ଯାଉ । (୪)
ରଣ ବିବାଦେ ଯେଣେ ଇଚ୍ଛା ଯାଇ
ଭୈରବୀ ସାହା ଦୁର୍ଗାଙ୍କୁ ଧାୟି । (୫)

## ଚଢ଼େୟା ଢ଼ମାଳି

୮୦୧୧. ମୁଟିଆରେ ଦେଲି କାଳୀ
ଗୁଟି ଗୁଟି କରି ବନ୍ଦନା କରୁଛି
ଚଢ଼େୟାରେ, ହୋଇଥିବୁ ମୋରଭଳି (୧)
ଯାଉଥିଲି ବନ୍ଧେ ବନ୍ଧେ
ବନ୍ଧର ଦେବତା ଲାଗି ଅଇଲା
ଚଢ଼େୟାରେ, ଯାଚିଥିଲି ଗଞ୍ଜା ଖଣ୍ଡେ (୨)
ସଜନା ମୁଳେ ପାଉଁଶ

ହାତରେ ଧରିଛି କାଣ୍ଡ ବାଉଁଶ
ଚଢ଼େୟାରେ, ପୁଡ଼ି ପାଡ଼ି ଗଲା ନିଶ । (୩)
ହିଡ଼ ତଳେ ମୃଷାମାଟି
ଗାଧୋଇ ଯିବାକୁ ବ୍ରାହ୍ମଣୀସଜ
ଚଢ଼େୟାରେ, ଖୁସାତଳେ ଦାନ୍ତକାଠି । (୪)

୮୦୧୨. ଗହିରି ବିଲରେ କଇଁ
ମୁକୁତା ନାଥଙ୍କ ଚରଣ ତଳରେ
ଶରଣ ପଡୁଛି ମୁହିଁ ।

୮୦୧୩. ଗହିରି ବିଲରେ କଇଁ
ତରବର ହୋଇ ଅଇଲି ଧାଇଁ
କାନ୍ତ, ମୁଣ୍ଡେ ଓଢ଼ଣା ନାହିଁ ।

୮୦୧୪. ଗହିରି ବିଲରେ ବର
ପୁଅଝିଅ ଛାଡ଼ି ସଭାକୁ ଅଇଲି
ଶୁଣିଣ ଡାକ ତୁମ୍ଭର ।

୮୦୧୫. ଗହିରି ବିଲରେ ଚାଲି
ଘୋଡ଼ା ନାଁ ଦେଲି 'ଅଣ ବିଜୁଳି'
ଘୋଡ଼ା ମୁଣ୍ଡେ ପାଟଫୁଲି ।

## ରଥଯାତ୍ରା ଢ଼ମାଳି

୮୦୧୬. ଗୁଣ୍ଡିଚା ରହଣି ଯାତ୍ରା ଯେ କଲୁ
ରହିବା ଦେଖି ଏମାନ ନେଲୁ
ସଙ୍ଗରେ ଥିଲେ ଭାଇ କଳେବର
ଆମ୍ଭେ ଲକ୍ଷ୍ମୀକି କେମନ୍ତେ ନ୍ୟନ୍ତୁ ସଙ୍ଗର
ଏ ନୋହେ ବେଭାର
ବାହାରେ ତିନ୍ତିଲେ ସେବକ ମୋର ।

# ଚଇତପର୍ବ ଢ଼ମାଳି

୮୦୧୭. ଗାଆ, ଗାଆ ମୋର ଗାଆକି ରତନ
ଗାଆ ତେବେ ଶୁଣି ଦେଖୁ
ତମର ଆମର ଏକାନ୍ତ ହେଲା
ପଦେ ପଦେ ଗାଇବାକୁ ।
ଢୁକି ଯାରେ ଧନ ! ଢୁକିଲା ବେଳ,ନ ମିଳିବ ସବୁ କାଳ ।

୮୦୧୮. ଗୁଣମଣି ଡାକିଲି ତୋତେ
ଆଛା ବୁଝାମଣା କଲୁ ।
ବାଲୁତ କାଳର ଅମୂଲ୍ୟ ଜୀବ
ପାଣିରେ ଭସାଇ ଦେଲୁ ।
ଗମ୍ଭାରି ଗଛରେ ଛାଡ଼ିଲୁ ପିଢ଼
ଝପ କରି ଘିଡ଼ି ଭିଡ଼ ।

୮୦୧୯. ଗାଇବି ବନ୍ଦନୀ ଶୁଣ କାନ ଡ଼େରି
ମୋହନ ମୁରଲୀ ନାଦେ
ଶୁଣିବୁ ବୋଇଲେ କହିବୁ ଆମେ
ରସ ବିଷ ପଦେ ପଦେ
ଏବେ ସେ ଦେଖିଲୁ ବନ୍ଧୁର ସୁଖ
ଛାଡ଼ି ପଳାଇଲା ଦୁଃଖ ।

୮୦୨୦. ଗଭାରେ ବୁଣିଲି ବାୟା ଭଣ୍ଡଧାନ
ତହିଁରେ ଭରିଲା ଝର ।
ହାତରେ ଧରିଲା ପରି କହୁଛୁ
ଘରର ଘରଣୀ ପର ।
ମରିଯିବି ଧନ ତୁମର କୋଳେ
ପୀରତି ଲାଗିଲା ବେଳେ ।

୮୦୨୧. ଗାଇଗଲା ରାଣି ବେଳ ଗଲା ବସି
କାକୁଡ଼ି ଧଇଲା କସି

ତୁମର ଆମର ମୁହାଁସ ଥିଲେ
ଯୁବା କାଳେ ଯିବା ମିଶି ।
ଆସ ଆସ ଧନ ବନ୍ଧୁ ବାନ୍ଧିବା
ହସି ହସି ଦିନ ନେବା ।

୮୦୨୨. ଗାଈ ରାଶିରେ ଯେ ରହିଲେ ଷଣ୍ଢ
ଖୋଜି ବୁଲୁଥାଏ ନିତି
କଇଲା ପାଟିରେ ତମେ ଶୁଣିଲେ
ତୋ ସଙ୍ଗେ ହେବ ପୀରତି ।
ସବୁ ପିତା ବୁଦା ଫଳିଲା ଗଛି
ମର ମନ ମିଶା ଅଛି ।

୮୦୨୩. ଗଉଡ଼ ଘରର ଗାଈ ଗୋରସ
ଆମଠାରେ ଦୟାଥିଲେ
ତମର ଯେମିତି ଦୟା ରଇଲେ
ଆସିବ ଉପାୟ ବଳେ
ଆସିଲେ ଗୋଲାପି କରିବି ଲାଡ଼
ଏଇକଥା ତମେ ଛାଡ଼ ।

୮୦୨୪. ଗଛ ଗୋଟେ ଅଛି ନାଇଁ ପତର
ଗଙ୍ଗାବାଲି ପରି ମଞ୍ଜି
ପାଖରୁ କେମନ୍ତେ ଅନ୍ତର ହେବି
ଦଇବ ଦେଇଛି ଖଞ୍ଜି ।
ତମଠାରେ ମୋର ବଳିଲା ମତି
ତମର ମନ କେମିତି ।

୮୦୨୫. ଗମ୍ଭୀରି ଭିତରେ ବେଲରୁ ଖଟ
ଭଲା ଗଲା ରସବନ୍ତୀ
ହାତେ ଫୁଲ ସୋରା ବଢ଼ାଇ ଦେଲେ
ହସି ହସି ବସିଥାନ୍ତି ।
ବାଲିଫୁଲ ମୋର ବଦଳି ଗଲି
ଏଥର ମୁଁ ରସିଗଲି ।

୮୦୨୬. ଗହନ ଲଟା ଅନ୍ଧାର ପକ୍ଷ
ପାଣି ବରଷଇ ଗିରିଶିଖ
ମେଘ ଘଡ଼ଘଡ଼ି ଛଟକ ବିଜୁଳି
ନ ଦିଶଇ ବାଟ ପନ୍ଥ ।

୮୦୨୭. ଗୁଣମଣି ବେନୁପାଣି
ଗୁଣମଣି ତନୁ କ୍ଷୀଣ ହେଲାଣି
ଗୋପପୁର ନିଶାମଣି ।

୮୦୨୮. ଗେରସ୍ତ ଖଣ୍ଡିଗଣିଆ
କଥାକେ ଛାତିରେ ଜାଳଇ ନିଆଁ ।
ଦିଅର ମୋର ଟାପରା
କାନି ପଣତକୁ ଟଣା ଓଟରା ।
ସାବତ ଶାଶୂ ମୋହର
ଅଳପ କଥାରେ କରେ ଧିକ୍କାର ।
ନଣଦ ଉଲେଇ ହୁଅନ୍ତି
ଉଠୁଣ ବସୁଣୁ ଖୁଣ୍ଟାଦିଅନ୍ତି ।

୮୦୨୯. ଗାଧୁଆ ତୁଠରେ ପହରେ ଗେଲ
ନଈ ସେ ପାରିରେ ପାଚିଲା ବେଲ ।

୮୦୩୦. ଗାଧୁଆ ତୁଠରେ ପହରେ ଠିଆ
ନଈ ସେ ପାରିରେ ଶୁଖିଲା କିଆ ।

୮୦୩୧. ଗୁହାଳ ପିଢ଼ାରେ ଲାଉ,
ଫଡ଼ାଏ କାଟିଲେ ପୁଞ୍ଜାଏ ହେଉ
ଭାଇ ବାହାଘର ଯାଉ ।

୮୦୩୨. ଗଛ-ପଟା ଦୋଳି ଖେଳ ସଙ୍ଗାତ ଲୋ
ଫୁଲ, ଲଗା ଦୋଳି ଖେଳ
କୋଳି ଖାଇ ଖାଇ ଦୋଳି ଖେଳୁଥିଲେ
ଦେଖିଲେ ମାଇପେ ଭୋଳ ।

୮୦୩୩. ଗଛରୁ ପଡ଼ିଲା ତାଳ
ରଙ୍ଗ ଶାଢ଼ୀ ପିନ୍ଧି ନାନୀ ବୁଲି ଗଲ
ବେକେ ସୋରିଷିଆ ମାଳ ।

୮୦୩୪. ଗହ୍ଲା ପୁନେଇଟି ଭଲ ।
ଦୋଳି ଗୀତ ସେଇ ଶିଖେଇ ଥିଲା
ଏବେ ଶାଶୁଘର ଗଲା ।

୮୦୩୫. ଗୁଡ଼ିଆ ଘରର ବଣା
ଖରାବେଳେ ବାପା ବାଟ ଚାଲୁଥିବେ
କିଏ ଦେବ ଛେନା ପଣା ।

୮୦୩୬. ଗାଈ ଧାଇଁଗଲା ଦାଣ୍ଡେ
ମୋ ଭାଇ କରିଛି କୁଡ଼ିଆ ଖଣ୍ଡେ,
ବୋହୂ ରହୁନାହିଁ ଦଣ୍ଡେ ।

୮୦୩୭. ଗୁଡ଼ିଆ ଘର ଖଣତି
ବଡ଼ ଘର ବୋଲି ଦେଇଛ ବାପା
ଚିତୋଉ ପିଠା ଗଣତି ।

୮୦୩୮. ଗୋର ଆଟିକା ଗୋଳି ରଖିଲି ଲୋ,
ବସନ୍ତ ଗୁରୁବାରକୁ
ମାଳୀଘର ଫୁଲ ଗୁନ୍ଥି ରଖିଛି ଲୋ
ଭାଇଙ୍କ ଲମ୍ୱ ବାଳକୁ ।
ବାଳ ହୋଇଗଲା କୁଞ୍ଚି କୁଞ୍ଚିଆ ଲୋ
ଫୁଲ ହୋଇଗଲା ବାସି,
ସକାଳ ଗାଧୁଆ ପଖାଳ ଖିଆ ଲୋ
ସବୁଦିନେ ପରବାସୀ ।

୮୦୩୯. ଗୋଲାପ ଫୁଟି ରହିଛି
ତହିଁକି ଭ୍ରମର ଲୋ ବାଇ ହୋଇଛି
ପଲଙ୍କେ ଭାଳି ବସିଛି।

୮୦୪୦. ଗୁଆ ଗଛ ପୁଞ୍ଜି ପୁଞ୍ଜି
ଗୁଆ ଗଛ ମୂଳେ ପୁଅ ଜନମ
ନାଆଁ ଦେଲି ଚଇତନ ।

୮୦୪୧. ଗୁଆଗଛ ପୁଞ୍ଜି ପୁଞ୍ଜି
ଭାଉଜ କରିଛି ତତଲା କାଞ୍ଜି
ଭାଇନା ବସିଛି ଭୁଞ୍ଜି ।

୮୦୪୨. ଗୁହାଳ ପିଣ୍ଡାରେ ଲାଉ
ନିଜ ଘଇତାକୁ ଯୋଗିନୀ ଖାଉ
ମଝିଆଁ ଦିଅର ଥାଉ ।

୮୦୪୩. ଗୋଲାପ ଫୁଲର ହାର
ଯେତେ ଦୂରେ ଥିଲେ ତୁମ୍ଭେ ମୋହର
କେଭେଁ ନ କରିବ ପର ।

୮୦୪୪. ଗାଈକି ଛ ବିଡ଼ା ଘାସ
ସୀତା ଠାକୁରାଣୀ ଗରଭ ମାସ
ରାମ ଦେଲେ ବନବାସ ।

୮୦୪୫. ଗହମ ବୁଣା ହୋଇଛି
ମୋ ଧନ ଦେହକୁ ଖରା କାଟୁଛି
ଚାନ୍ଦୁଆ ଟଣା ହୋଇଛି ।

୮୦୪୬. ଗାଈ ଗଲା କିଆରିକି
ସାହୁ ମାଇପ ଲୋ ହଟି (=ଚାତୁରୀ) ବସିଛି
ଘୋଡ଼ା ବାଳ ଚଉଁରୀକି ।

୮୦୪୭. ଗଛରେ ଚଢ଼ଇ କାଉ
ଖୋଜାବେଳେ ତୁହି ଦେଖାନ ଦେଉ
ପଛରେ ଆକୁଳ ହେଉ ।

୮୦୪୮. ଗୋବର ଗଡ଼ିଆ କଇଁ
ଅତି ଧୋବ ଲୁଗା ପିନ୍ଧିବ ନାଇଁ
ମୋ ଦେହ ସହିବ ନାହିଁ ।

୮୦୪୯. ଗାଈ ମାଡ଼ିଗଲା କୁଟା
ବୋହୂ ଆଣିଥିଲା ଖାଲି ପେଟିଟା
ନଣନ୍ଦ ଦେଉଛି ଖୁଣ୍ଟା ।

୮୦୫୦. ଗଛକୁ ଚଢ଼ିଲା କାଇ
ତୋ ଲାଗି ଛାଡ଼ିଲି ମୋ ବାପା ଭାଇ
ତୋର ସାଙ୍ଗେ ନେଲୁ ନାହିଁ ।

୮୦୫୧. ଗୁହାଳ ପିଢ଼ାରେ ପୋଇ
ତୋ ବାପକୁ ନେବ ବିଲ ବଛାଇ
ଆମ୍ବୁଲ ଟାଙ୍କୁରା ଦେଇ ।

୮୦୫୨. ଗଡ଼ିଆ ଖୁଲିଗଲା ପାନି (=ପାଣି)
ଗୁରେଇ ପାଲିର ଗୌଣ୍ଡିଆ ଆନିଛେ ରାନୀ
ଢ଼େବିରି ଆଖିଟା କାନୀ (=କାଣି)

୮୦୫୩. ଗହିର ବିଲର ଖଇ (=ଧାନ)
ବାବୁ ଯାଇଛନ୍ତି ପଇସା ପାଇଁ
ଚାବି କାଠି ମିଳୁ ନାହିଁ ।

୮୦୫୪. ଗହିର ବିଲର ନଡ଼ା
ଗାଉଣୀ ଭାଇର ତୁଣ୍ଡେ ଦଉଡ଼ା
ମୁଣ୍ଡୁଳି (=ଛୋଟ କାଲ) ପଡ଼ିଛି ଘୋଡ଼ା ।

୮୦୫୫. ଗବଗଛ ଘାଉଁ ଘାଉଁରେ
ଗବଗଛ ଘାଉଁ ଘାଉଁ
ଗାଉଣୀ ଭାଇକି ପଚାରୁ ଅଛି
ଘଟ ନ ଜମିଲା କାହୁଁ ?
ଘଟ ଜନମିଲା ଈଶ୍ୱରଙ୍କଠାରୁ
ପାର୍ବତୀ କାଟି ସୂତା
ସେଇ ସୂତା ନେଇ ସ୍ଥାନରେ ବୁଲାଇ
ତା ନାମ ଗଜ ମୁକୁତା ।

୮୦୫୬. ଗଡ଼ିଆ ଆଡ଼ିର ନିମ
ବାଳ ବାନ୍ଧିଦେବି ଗରୁଡ଼ ଖମ
ବାଛି ନେଇଯିବ ଯମ ।

୮୦୫୭. ଗାଈ ଶିଙ୍ଗ ମୋଡ଼ି ମୋଡ଼ି
କାହାଘରେ ଅଛି ଟଙ୍କା କଉଡ଼ି
ଫିଟାଅ ବୋହୂର ପେଡ଼ି ।

୮୦୫୮. ଗାଆଁ ଗୋହିରୀର ବେତ
ମାଆ ମଙ୍ଗଳାଙ୍କୁ ମୋ ଦଣ୍ଡବତ
ଅନୁକୂଳ ହେଲା ଗୀତ ।

୮୦୫୯. ଗୁରସେ ପଡ଼ିଲା ମାଛି
କୋଇଲିରେ ଗୁରସେ ପଡ଼ିଲା ମାଛି
ମାଆ ଥିଲେ ସିନା ଦିଅନ୍ତେ ଉତ୍ତର
ମାଉସୀ କଲା ଅନ୍ତର ।

୮୦୬୦. ଗୋରୀ ଯା ଚାଲି ଧୀରେ ଧୀରେ, ଛନକା ଛପାଇ ଛାତିରେ ।

୮୦୬୧. ଗାଆଁ ନାଁ ଡୁଡୁକା (=କାନର ଅଳଙ୍କାର)
ବାଜିଗଲା ଘୁଡୁକା
ଡୁଡୁକାର ଦୁଃଖୀର ରଙ୍କୀ ପିନ୍ଧିଥିଲେ ଝଲକା ।
ପେଡ଼ିଗଲି ଗୁଡ଼
ଗାଆଁ ରାମପୁର
ରାମପୁରର ବଡ଼ ବଡ଼ ଲୋକ ହୋଇଗଲେ ଚୋର
ଦୁଏଁ ବେଟିଆର କାଲି
ଗଲି ମହୁଲପାଲି
ମହୁଲପାଲିଥି ପାଠପଢ଼ାଉଥିଲା, ରଘୁମନି ମାଲୀ ।
ମାରିଗଲି ଖତ
ତହିଁରେ ପାଶେ ରୋତ
ରୋତ ଗୌନ୍ତ୍ୟା ରାମଚନ୍ଦ୍ର ବଡ଼ ଗୁଣବନ୍ତ, ନାଇଁ ନ ସତ୍ୟବନ୍ତ ।

୮୦୬୨. ଗଣ୍ଠିସୁନା ଗଳାହାର ନନ୍ଦର କହ୍ନାଇ
ଗ୍ୟାନ (=ଜ୍ଞାନ) ହଜିଗଲା ମୋର ବୁଦ୍ଧି ଦିଶୁ ନାହିଁ ।
ଟପା ମାରି ମାରି ମୋର ଦେହ ଶେଷ ହୋଇ
ଠାକୁରାଣୀ ପାଦେ ପଡ଼ି ନାଗର,
ନେଇ ଯା ନର୍ଦ୍ଧାଇ । (=ଦୌଡ଼ାଇ) ।

## ବୋଲା-ବୋଲି ଢ଼ମାଳି

୮୦୬୩. ପୁରୁଷ - ଗରଜେ ଅଦିନେ ମେଘ
କଥା କହି ଜାଣୁ ତୁ ବଡ଼ ବାଗ
ତୁଟାଉ ମନ ସରାଗ ।
ସ୍ତ୍ରୀ - ଗରୁଆ ତାଳ ବରଡ଼ା
ମନ ବିଡୁଥିଲି ତୁମରି ପରା
ବଳେ ବଳେ ଦେବି ଧରା ।

* * * *

୮୦୬୪. ସ୍ତ୍ରୀ- ଗଡ଼ିଆ ଆଡ଼ିରେ କଇଁ
ନିୟମ କରନି ମୋ ଦେହ ଛୁଇଁ
ମୋ କଥା ଭୁଲିବ ନାଇଁ ।
ପୁରୁଷ - ଗଣ୍ଠିବି ତୋ ହାତଗଣ୍ଠି
ତତେ ନ ଭୁଲିବି ମୋହ ରାଣଟି
ଗଲେ ଯିବ ଛାତି ଫାଟି ।

## ହଳିଆ ଢ଼ମାଳି

୮୦୬୫. ଗରବ ଗଞ୍ଜନ ଅଟନ୍ତି ଶ୍ରୀରାମ
ଭାଙ୍ଗିବେ ଗାରିମା ନ ଜାଣୁ ରାବଣ
ଘୋର ଅରଣ୍ୟରେ ଥିଲେ ତାଙ୍କ ନାରୀ
ଘେନି ତୁ ଅଇଲୁ ମୂଢ଼ ରାବଣ, ପ୍ରତିଜ୍ଞା ତାଙ୍କରି
ଆଣିଣ ପରନାରୀ ମନରେ ନାହିଁ ଶଙ୍କା
ଅଳପେ ନାଶ ଯିବ ସୁବର୍ଣ୍ଣମୁହାଁ (=ସୁବର୍ଣ୍ଣମୟୀ) ଲଙ୍କା ।

୮୦୬୬. ଗହୀର ବିଲାନ୍ତୁ କହ୍ନାଇ ନେଲେ ହଳ
ରାଧା ନେଲେ ଦହି ପଖାଳ
ପହଡ଼େ ହେଲାବେଳ
ଘଡ଼ିଏ ହେଲେ ଠିଆ
ଏଡ଼େ ନିଦାରୁଣ କଲାତ କହ୍ନେଇ
ଫାଟି ତୋ ଯାଉ ହିଆ ।
୮୦୬୭. ଗଉଡ଼ ଗୋଠରେ ଉଡ଼ଇ ପାଉଁଶ
ଗଉଡୁଣୀ କରେ ବେଳ ତରାସ
ଗଉଡୁଣୀ ଟୋକି ବଡ଼ ଚତୁର
ଗଭାରେ ଖୋସି (=କେନ୍ଦୁଳୀଫୁଲ)
କଛାରେ ମାରିଛି କିଆଫୁଲ ।
ଦହି ବିକି ଯାଇ ନ ମାଗିବୁ ଧାନ
ଚାଷୀପୁଅ ବଡ଼ ଚତୁର ମାଗିବ ପ୍ରୀତି ଦାନ ।
୮୦୬୮. ଗାଈର ଦାମୁଡ଼ିଟି ଧରମର ବଛା (=ବାଛୁରୀ)
ଉଛୁର ନ କରିବୁ ଭାଇରେ ହଳିଆ
ଚାଲିବେ ମନଇଛା ।
ଗଉଡ଼ କାନ୍ଦଇ ଗୋଷ୍ଠକୁ ଅନାଇ
ଟିକା ଚନ୍ଦିନିଆ ବଛା (=ବାଛୁରୀ)
ଗୋଷ୍ଠରୁ ଗଲା କାହିଁ ।
୮୦୬୯. ଗଉଡ଼ ଗୋପାଳ ନାମରେ ଗୋବର୍ଦ୍ଧନ
ଗରୁଡ଼ ପିଠିରେ ବିଜେ ଭଗବାନ
ନେଇ ଦେଖାଇବୁ ପରା ଗରୁଡ଼
ଦ୍ୱାରିକା ଭୁବନ ।
ଦ୍ୱାରିକା ଭୁବନ ଈଶ୍ୱରଙ୍କ ସ୍ଥାନ
ତହିଁ ମଲେ ମୁକ୍ତି କାରଣ ।
ଗଙ୍ଗାରେ ପିଣ୍ଡଦାନ ।

୮୦୭୦. ଗୋସାଇଁ ଯାଇଛି ଧାନବିଲକୁ
ଧାନବିଲରୁ ଆଣିବ ଶଙ୍ଖଚିଲକୁ ।
ଶଙ୍ଖଚିଲ ବୋଲି କହିବୁ ନାହିଁ
ଦିଅର ଆଗରେ ବସିବୁ ନାହିଁ ।

୮୦୭୧. ଗୁଆ କୋଳି ପାଞ୍ଚଣ
ଝାଡ଼ିଦେଲେ ମାଡ଼ିବସିବ
କୁରୁବଳ ଛଅଣ ।-ବାଗୁଡ଼ି ଖେଳ / ଡୁଡୁଖେଳର ରାହା ଧରିବା ପଦ ।

୮୦୭୨. ଗୁରୁ ମନେ ନ ସେବି ଗରବ ଭାବ ବହୁ
ଗୁପତ ଅଧାମ୍ ବିଦ୍ୟା ଜାଣିବୁ ତୁ କାହୁଁ ?
ଗଳୁଅଛି ରସ ଯେବଣ ଶିଶୁମୁନା ରନ୍ଧ୍ରେ
ଗିଳିଯିବୁ ମନ ପବନ ସଙ୍ଗତେ
ଗୁରୁଙ୍କ ପରସାଦେ ।

୮୦୭୩. ଗୋପ ଗଉଡୁଣୀ ଚନ୍ଦ୍ରାବତୀ ରାଇ
ଗୋପରୁ ଗଡ଼ିଲେ ଯେ ଝୁଣ୍ଟିଆ ବଜାଇ
ଝୁଣ୍ଟିଆର ବେଢ଼େ ଶବଦ ମଧୁର କାମଦ୍ୱାଇ ।

୮୦୭୪. ଗହୀର ବିଲରେ ପଟା ପଟା କାଦ
ଗୋରୀ ଗୋଡ଼େ ବାଙ୍କି ଯେ ବାଜେଣି
ଟେକି ମୋ ପକା ପାଦ ।

୮୦୭୫. ଗାଧୋଇ ପାଧୋଇ ତ ଧରମକୁ ସାକ୍ଷୀ
ପୁତ୍ର କି ଦାନ ଦେବୁ ଧରମ
ସେ ନାରୀ ବଡ଼ ଦୁଃଖୀ ।

୮୦୭୬. ଗାଆଁକୁ ସୁନ୍ଦର ତ ନଡ଼ିଆ ଗଛର ଛାଇ
ବିଲକୁ ସୁନ୍ଦରତ କିଆ ଗୋଠ ଗାଈ
ପୁରୁଷକୁ ସୁନ୍ଦର ତିରୀ (=ତିରୀଲା, ସ୍ତ୍ରୀ)
ଯେ ପିତଳ ଖଡୁବାହୀ ।

୮୦୭୭. ଗହୀର ବିଲରେ ମୟୂର ଝାଡ଼େପକ୍ଷୀ
ଗୋରୀ ତା ଝାଡ଼େ ବୁକୁ ପଣତ
ଭେଣ୍ଟିଆ ଛବି ଦେଖି ।

୮୦୭୮. ଗହୀର ବିଲରେ କାଣ୍ଟିଆ ବଗ (=ଧୂଶରବଣ୍ଣ ବଗ) ବସା
ମାଇଲୁ ଦିଅର ନ ଭାଙ୍ଗିବୁ ଖୋସା
ମାଇଲୁ ଦିଅର ଭଲାଇ କଲୁ ମତେ
ମୋ ବାପଘର ଗଲେ ପଚାରିବି ତତେ ।
ବାପଘରେ କୋଠା କରିଦେବୁ ତୁହି
ତୁ ନ ଅସିଲେ ବୋହୂ ଡାକିଯିବି ମୁହିଁ ।
ମୋହର ବାପଘର ପଥର ପାଉଛ
ତହିଁରେ ଲଗା ହୋଇଛି ନଡ଼ିଆ ତିନିଗଛ ।
ନଡ଼ିଆ ତିନିଗଛରେ ଫଳଇ ନେନ୍ତି ନେନ୍ତି
ଉଚ୍ଚ ପିଣ୍ଡାରେ ବାଳି ଯେ ଗୋପାଳ ଖେଳୁଛନ୍ତି ।

୮୦୭୯. ଗଛ ମଧେ ନଡ଼ିଆ ପତର ମଧେ ପାନ
ସ୍ତିରୀ ମଧେ ରାଧିକା ପୁରୁଷ ଭଗବାନ ।

୮୦୮୦. ଗୋପ ଗୁଆଲୁନୀ ଗୋପପୁରେ ବାଇ
କାହ୍ନୁ ସଙ୍ଗେ ଗଲେ ତାଳସଜ ଖାଇ
ତାଳବନେ ନିଦ ପରା ମାଡ଼ଇ ଅଭଲେ କାନ୍ଦଇ ।

୮୦୮୧. ଗାଇବ ହଳିଆ ଗୀତ
ଟେକିଥିବ ରାଗ
ଶୁନୁଥିବେ ଘାଟର ପାନ୍ତି ବେଳେ
ଖରଡ଼ିଦେବ ଶାଗ
ଶାଗ ଖରଡ଼ନା (=ଖରଡ଼ିବା) ଯେ
ଲେଉଟିଆ ଭାଜି
ତହିଁ ମିଶିଥିବ ଜୀରା ଲବଙ୍ଗ
ରାନ୍ଧୁଣୀ ଅଧାବୁଢ଼ୀ ।

୮୦୮୨. ଗାଉଛନ୍ତି ଗୀତ ବଜାଉଛନ୍ତି ବୀଣା
ଢ଼ଳି ନାଚୁଛନ୍ତି ଗୋପୀ ଗୋପାଳ ମଧରେ ଚନ୍ଦ୍ରସେଣା ।
ଚନ୍ଦ୍ରସେଣା ବୋଇଲା ମୋ ଘର ବୁଢ଼ିଲା
ତ୍ରିପଣ୍ଡ କଳାଭୂତ ରାଧାଙ୍କୁ ଗିଳିଲା ।
ମୋତେ ଗିଳିବାକୁ ଜଗି ବସିଛି, ତ୍ରିପଣ୍ଡ କଳାଭୂତ ।

ତ୍ରିପଣ୍ଡ କଳାଭୂତ କେମନ୍ତେ ଛାଡ଼ିବ
ଦୁଧଗୁଡ଼ ନଇବେଦ୍ୟ ଶୀତଳ ବାଢ଼ିବ
ଆପେ ରଘୁନାଥ ଗୁଣିଆ ଭୂତକୁ ଛଡ଼ାଇବ ।

୮୦୮୩. ଗହୀର ବିଲରେ ଚୋର ପାଳଧୂଆ
ଆଜି ତ ଗୋରୀର ଉଛୁର ଗାଧୁଆ
ଉଛୁର ଗାଧୁଆକୁ ନ ଶୁଖଇ କେଶ
କେଶକୁ ପୋଛଇ ତାର ଘେନି ଝୀନ ବାସ ।

୮୦୮୪. ଗଣ୍ଡା ନ ଅଇଲା ବୋଲି ଜାଣିଲେ ପାର୍ବତୀ
ନାଗାବଳୀ (=ନାଗର୍ଜୁନଙ୍କର ମାଆ) ଅର୍ଜୁନକୁ ପଠାନ୍ତି ତଡ଼ତି ।
ଧନୁଶର ନାଗା ଧୀରେ ଧୀରେ ଚାଲେ
ସରଯୁ ନଦୀ ତୀରେ ଗଣ୍ଡାକୁ ଭେଟିଲେ ।
ଦେଖିଲେ ଗଣ୍ଡାଗୋଟି ହୋଇଛି ପ୍ରାଣେ ହତ
ଦେହ ଆଉଁସିଣ ଯେ ଦେଖିଲେ ଶର ଘାତ
ଆଜ ମୋର ଗଣ୍ଡାକୁ କିଏ କଲା ଶର ଘାତ
ବ୍ରହ୍ମା ବିଷ୍ଣୁ ହର ଯେ ହେବେ କରିବି ଶିର କାଟ ।

୮୦୮୫. ଗହିର ବିଲକୁ ହଳଯାଉ ନାହିଁ
ଭାଉଜ ଘୋଟଣା ଦିଅର ଖାଉ ନାହିଁ
ଖାଆ ଗୋ ଦିଅର ମୋ ମୁଖକୁ ଅନାଇ
କାଲିକି ଆଣିବି ଗଜା ଦାମଡ଼ା ଚାଲିବ ଧାଇଁ ଧାଇଁ ।

୮୦୮୬. ଗଣ୍ଡିଆ[୧] ପଚାରଇ ନାଙ୍ଗିଆ[୨] ମୋର ଭାଇ
ଚୁଲିଆର[୩] ବକା[୪] କାଢ଼ିବା ଓଡ଼ା[୫] ମୋ ଧମକାଇ ।

(୧) ଯିଏ ଖାଇ ଭିତରେ ଆଖୁ ଭର୍ତ୍ତିକରେ (୨) ଯିଏ ବଳଦ ଅଡ଼ାଏ
(୩) ଯିଏ ଚୁଲୀ ଜାଳେ (୪) ଝାଳ (୫) ଭଡ଼ା ।

୮୦୮୭. ଗାଧୋଇ ପାଧୋଇ ତ ପୋଖରୀ ହୁଡ଼େ ଠିଆ
ମେଲିଦେଲେ କେଶରେ ଫୁଟିଯାଏ କିଆ
କିଆ ମୋ ବାସନାକୁ ଆସିବେ ରସିକ ପାନଖିଆ ।

୮୦୮୮. ଗୁହାଳ ପିଢ଼ାରେ (=ଚାଳରେ) ଲଗାଇଦେଲି ପୋଇ

ଘଇତା ସତୁଆ ଯେ ନ ଆସିଲା କହି ।
ଯେବେ ତୁ ଯାସିବୁ ଶାଢ଼ୀ ଶଙ୍ଖା ଥୋଇ
ତୋହ ଆଗେ ଖାଇବି ବିଷରେ ଛେନା ଗୁଡ଼ ଦେଇ ।

୮୦୮୯. ଗାଧୋଇ ନ ଯାଆ ସ୍ୱାମୀ ଘରେ ଦେବି ପାଣି
ବାଧାରେ ଆସିଲେ ବାଢ଼ିବି ତୋରାଣି
ହାତ ଯୋଡ଼ି କରି କହୁଛି ନ କର ସଉତୁଣୀ ।

୮୦୯୦. ଗାଳିପଛେ ଦିଅ ଛାଡ଼ି ଦେବି ନାହିଁ
ଗୁପତ ପୀରତି ମାଇଁ କରିବୁ ଗାଇବି ଗୁଣ ମୁହିଁ ।

୮୦୯୧. ଗୋପର ଗଉଡୁଣୀ  ଚନ୍ଦ୍ରାବତୀ ରାଇ
ରାମର ବିଭାକୁ ନ ଗଲେ ବନ୍ଧାଇ
ରାମ ତ ଶାପ ଦେଲେ ଗଉଡ଼ ବୁଲଇ ବିକି ଦହୀ ।

୮୦୯୨. ଗହିର ବିଲକୁ ମୁଁ କାଟି ଗଲି ଘାସ
ଏହିଠାରେ ହଳ ଫିଟିବେ ମଠକୁ ଯିବେ ଦାସ
ମଠକୁ ଯାଇ ଦାସେ ନ ପାଇଲେ କିଛି
ଥିଲା ଫଟା ମୃଦଙ୍ଗ ଟିପୁଣ ଥିଲେ ବସି ।

୮୦୯୩. ଗହନ ବନେ ରାମ ବୁଲୁଥିବେ ରହି
ଗ୍ରାମ ନ ମାଡ଼ିବେ କୈକାୟା ଛନ୍ତି କହି
ନ ମାଡ଼ିବେ ଗ୍ରାମ ଯେ ନ ମାଡ଼ିବେ ଦେଶ
ପିତା ସତ୍ୟ ରାମ ପାଳିବେ  ଚଉଦ ବରଷ ।
ଘୋର ବନେ ରାମର ବନ୍ଧୁ ସଖା ନାହିଁ
ଘେନି ରାମ ଦିନ ବଞ୍ଚିବେ ଲକ୍ଷ୍ମଣ ସୀତା ଦୁଇ ।

୮୦୯୪. ଗୁଡ଼ିଆ ଘରର  ଚଟୁ ସଙ୍ଗାତେ
ଆମ ଭାଲୁକୁଣୀ  ଚହଟ ଚିକଣ
ତାଙ୍କ ଭାଲୁକୁଣୀ ଫାଟୁ ସଙ୍ଗାତେ
ତାଙ୍କ ଭାଲୁକୁଣୀ ଖୁଣ ।

୮୦୯୫. ଗୋବର ଲଣ୍ଡିଏ ଘାଣ୍ଟି ଆସିଛି
ବଡ଼ ନଈ କୁରାଣ୍ଡରେ (=ସମତଳ ବଗିଚାର ଭୂଇଁ)

ଯୋଡ଼ି ଯୋଡ଼ି ସାଙ୍ଗ ଛାଡ଼ି ଆସିଛି
ବୋପାଘର ରାଇଜରେ ।

୮୦୯୬. ଗଛରେ ଶୁଖଇ ଧାନ ଗୋ,
ମୟୂର ଟୁକଇ ଗୋଡ଼ି ଗୋ ।
ପିଲାଟି କାଳରୁ ବାହା ହୋଇଥିଲି,
ସମସ୍ତେ ଡାକନ୍ତି ଖୁଡ଼ୀ ଗୋ ।
ଖୁଡ଼ୀ ଖୁଡ଼ୀ ବୋଲି ପହରେ ଠିଆ,
କଥା ନ କହିଲା ଗରଳଖିଆ
ଖୁଡ଼ା ଥିଲାବେଳେ ମୁହିଁ ଥାଆନ୍ତି,
ଗୋଡ଼ ମାଡ଼ି ଗୋଡ଼ଚିରି ଥାଆନ୍ତି ।

୮୦୯୭. ଗହରି ବିଲରେ ପଟାଳିଆ କାଦ
ଅଶୀଏ ବୁଆଳୀ ଲାଗିଗଲେ ବାଦ ।
ଆଗେ ତ ଯେ ଯିବ ତା ପିଲାକୁ ଅଧାର ଦେଇ ଯିବ ।

୮୦୯୮. ଗୁଆମାଳ ତଳେ ନିଆଁ ଲୋ
ବଡ଼ ଘର ଝିଅ ଦାଣ୍ଡରେ ଠିଆ
ଆସିଛି ଗଞ୍ଜେଇଖିଆ ।

୮୦୯୯. ଗଡ଼ଗଡ଼ିଆର ପଠା ଲୋ
କଟକ ମିଠେଇ ଖାଇବି ବୋଲି
ନାଥ ହେଲେ କଟକିଆ ଲୋ ।

୮୧୦୦. ଗହୀର ବିଲରେ ହଳ
ତତେ କିଏ ଦେଲା ବଉଳ ମାଳ
ବୁଡ଼ାଇଲୁ ଜାତି କୁଳ ।

୮୧୦୧. ଗଡ଼ିଆ ଆଡ଼ିରେ କଇଁ
ନିୟମ କରନି ମୋ ଦେହ ଛୁଇଁ
ମୋ କଥା ଭୁଲିବ ନାହିଁ ।
ତୋ ହାତେ ମୋ ହାତ ପଡ଼ିବ ଗଣ୍ଠି
ତତେ ନ ଭୁଲିବି ମୋର ରାଣଟି
ଗଲେ ଯିବ ଛାତି ଫାଟି ।

୮୧୦୨. ଗାଧୋଇ ଗଲେ ତ ଖରା ପଡ଼ିବ
ପୋଖରୀ ଗଲେ ତ ତରା ପଡ଼ିବ
ଛୁଅଁମୁନେ ଦେବ ନଖ ଅଳତା
ଗୋପପୁରେ ଥାଇ ଦେବ ବାରତା ।
ହାତକେ କଉଡ଼ି ହାତକେ ପିଠା
ଅଣ୍ଟା ଦରାଣ୍ଡିଲେ ତାଆସ ମୁଠା ।
ଭାତ ଛାଡ଼ି ଗଲେ କାଲି ଖାଇବି
ତୁମ୍ଭଙ୍କୁ ଛାଡ଼ିଲେ କାହୁଁ ପାଇବି ।
ଗାଈ ଛାଡ଼ିଗଲେ କାଲି ବାଛୁରୀ
ମୁଁ ଛାଡ଼ି ଯାଉଛି ରଜା କଚେରୀ ।

## ପଲ୍ଲି ଢ଼ମାଳି

୮୧୦୩. ଗରବ ଗଞ୍ଜନ ହରି ଗୋପର କହ୍ନାଇ
ଗାଢ଼ ଗାରିମା ଦେଖିଣ ଗରବ ଭାଙ୍ଗଇ
ତୁମକୁ ମୁରୁଛି ପାରି ନାଗର,
କେ ପାରିବ ରହି ।
୮୧୦୪. ଗଡ଼ି ଯାଉଅଛି ଜ୍ଞାନ ହଜିଲା ମୋହର
ପାଦ ନ ଟଳଇ ଗୁରୀ ରୂପ ଦେଖି ତୋର
ଅଙ୍ଗରେ ବିଷ ଘୋଟିଛି ନାଗରୀ,
ଧରି କୋଲେ ଝାର ।
୮୧୦୫. ଗିଆଁତି ପତର ଲେଖ ଲୋ ମାଆ
ଗିଆଁତି ପତର ଲେଖ
ଯେଉଁଠାରେ ଥିବ ଧନ ଦରବ
ସେଇଠାରେ ନେଇ ରଖ ।
୮୧୦୬. ଗାଡ଼ିଆର ଚାରିପାଖେ ବୁଣିଲି ସୋରିଷ
ସୋରିଷ ମଜା ନେଲା ମହୁରାଡ଼ି(ଳି) ମାଛ ।
୮୧୦୭. ଗାଡ଼ିଆର ଚାରିପାଖେ ବୁଣିଲି ଧନିଆ
ଧନିଆର ମଜା ନେଲା ବିଦେଶୀ ବଣିଆ ।

୮୧୦୮. ଗାଁଡ଼ିଆର  ଚାରିପାଖେ ବୁଣିଲି ମୁଁ କପା
ଡାଳ ଭାଙ୍ଗି ଫୁଲ ତୋଳେ ରାଧିକା ଅପା ।

୮୧୦୯. ଗୁଦୁରୁ ଗୁଦୁରୁ ବାଜା ବାଜେ କିସ କରିବା ପାଇଁ
ମାଝିବାବୁ ଘରେ ବିଭାଟୀକା ବିଭା କରିବେ ଭାଇ ।
ମୁଣ୍ଡା ଗୁଡ଼ାର ଗୁଣ୍ଡାଧୁଙ୍ଗିଆ ଆଣି ଝପାଇଲେ
ଖିରିକ୍ ତାଟି ଓଛାଇ କରି କୁଟୁମ୍ବ ବସାଇଲେ ।
କୁମ୍ କୁମ୍ କୁମ୍ କୁମି କୁଆଡ଼ି
ଛୋଟା କା ଯେ ମନ୍ କର୍‌ଲା ମାଝି ବୁଆରୀ ।

୮୧୧୦. ଗାଧିଲି ଖାଇଲି ପହଡ଼ି ଶୋଇଲି
ବେଳ ହେଉଛି ଉଛୁର
କେତେବେଳେ ଯାଏ ମଠ କରୁଅଛ
ଝଟ ଝଟତି ବାହାର
କେତେ ଭଙ୍ଗିରେ ମାରୁଛୁ ଆଖି
ବଡ଼ ବୋହୂରେ ମୋର
ଝଟ କରି ଲୁଗାପଟା ଧରି
ଚାଲିଯିବା ଲୋ ଘର ।

୮୧୧୧. ଗୁଡ଼ିଆ ଘର ଖଇଁଞ୍ଚ
ତୋ ମନ ମୋ ମନ ଏକା ହୋଇଛିରେ
ମତେ ଜାତିକି ଭୟ ଲାଗୁଚି  ନାଗରରେ ।

୮୧୧୨. ଗୁନାପିନ୍ଧା ନୁନୀ ମାରୁଛି ଆଖି
ରସିକ ନାଗର ଭେଣ୍ଡିଆ ଦେଖି  ।

୮୧୧୩. ଗଙ୍ଗଶିଉଳି, ରାତିହେଲେ ତୁମ ବାସ ଚହଟଇ
ସକାଳ ହୋଇଏ ପଡ଼ ମଉଳି ।

୮୧୧୪. ଗ୍ରାମ ଗର୍ଭିଣୀ ଫଳଯୁତ
ତିନି ଦେଇ ହରରେ ପୁତ
ଏକରେ ପୁଅ, ଦୁଇରେ ମାଈ
ଶୂନ୍ୟରେ ପଡ଼ିଲେ ଗର୍ଭଯାଇ ।

# ଶୋଚନା ଢ଼ମାଳି

୮୧୧୫. ଗୁହାଳ ବଣରେ ମୂଷା
ପେଜପିଆ ଘରେ କି ଲୋକ ହସା
ହେ ଭଗବତୀ !
ଉଡ଼ିଯାଉଥାଏ ହଂସା ।
ବୋଉ କୋଉ ଦୋଷ କଲା
ପେଟା କରଡ଼ରେ ସମର୍ପି ଦେଲା
ହେ ଭଗବତୀ !
ମୁହଁ ବାରେ ନ ଚାହିଁଲା ।
ବାପାଙ୍କ ଦାରୁଣ ପଣ
କୋଠ ତୁଛାକଲେ ନୋହି କାରୁଣ୍ୟ
ହେ ଭଗବତୀ !
ଫିଙ୍ଗି ଦେଲେ ତ ଦୂର ଦେଶେଣ ।
ଭାଇଏ ଭଗାରି ହେଲେ
ଦି' ମାସର ବାଟେ ଛାଡ଼ିଣ ଗଲେ
ହେ ଭଗବତୀ !
ଶୁଭ ବାରତା ନଦେଲେ ।
ମଉଳା ରାଢ଼ ହୋଇଲା
କଳାମେଘି ଶାଢ଼ୀ ମୁରୁଛି ଦେଲା
ହେ ଭଗବତୀ !
ଥରୁଟେ ଦେଖି ନଇଲା ।
ଭଉଣୀ ହେଲା ନିଷ୍ଠୁର
ହରଡ଼ିଆ ମାଳ ଦେଲା କଣ୍ଠର
ହେ ଭଗବତୀ !
ମୁଖ ନ ଚାହିଁଲା ମୋର ।

ସହି ସଙ୍ଗାତଙ୍କ କଥା
ମନରେ ପଡ଼ନ୍ତେ ବୁକୁରେ ବଥା
ହେ ଭଗବତୀ !
ଫାଟି ଯାଉଥାଏ ମଥା ।
ହୁଅନ୍ତି କାକ କୋକିଳ
କେମନ୍ତେ ଦେଖନ୍ତି ଜନନୀ କୋଳ
ହେ ଭଗବତୀ !
ନେତ୍ର ହୁଅନ୍ତା ଶୀତଳ ।
ସତେ ଭାଗ୍ୟ ଉଦେ ହେବ
ଜନନୀ କି ନେତ୍ର ଥରେ ଦେଖିବ
ହେ ଭଗବତୀ !
ପରାଣ ଶୀତଳ ହେବ ।
ଦୁଲଣୀ ଗାଁ ଦୁଲଣି
ଶୁଣିବେ ଗରଳ ଖାଇ ମଲାଣି
ହେ ଭଗବତୀ !
ଦଂଶିଛି କାଳ ନାଗୁଣୀ ।
ପିଅର ହୋଇବେ ତୋଷ
ଝିଅର ନ ଦେଖି ବଡ଼ ବିରଷ
ହେ ଭଗବତୀ !
ଭାଇନାର ପଉରୁଷ ।

୮୧୧୬. ଗହିରା ମଞ୍ଜକୁ ଶାଳୁଆ ଖୁମ୍ବଲୋ
ସୁଅମ ଗଣ୍ଡିରେ ଗାତ
ସାତ ପୁରୁଷଟା କଉଁ ସଜେ ଗଲା
କୁଟି କାଣ୍ଡି ଖାଉଁ ଭାତ ।
ଦେ ସମଲାଇ, ସମା କୁଟଇ ଧାନ
ଦି ସଉତୁଣୀ ଢ଼ିଙ୍କି ଲାଞ୍ଜିରେ

ଖାଆନ୍ତି ବଙ୍ଗାଳୀ ପାନ ।

ଏହି ଢ଼ିଙ୍କି ଗୀତ ପଦ୍‌ଙ୍କ୍ତିରେ, ଢ଼ିଙ୍କି କେଉଁ କାଠରେ ତିଆରି ହେବ ତାର ସୂଚନା ଦିଆଯାଇଛି । ପୁଣି ମନୁଷ୍ୟର ଶରୀର ଭେଦ ସମ୍ପର୍କରେ ମଧ୍ୟ ସୂଚିତ ହୋଇଛି । ଏଥିରୁ ଓଡ଼ିଆ ଜାତିର ଘରେ ବାହାରେ ସର୍ବତ୍ର ଦର୍ଶନର ଚର୍ଚ୍ଚା ହେଉଥିବାର ପ୍ରତିୟମାନ ହୁଏ ।

୮୧୧୭. ଗରିଆ ଉପରେ ଗଡୁ
ସମ୍ବଲପୁରିଆ ମୋରି ସଡୁ
ମେଛା (=ନିଶ) ଟିକେ ଟିକେ ବଢୁ
କେଲି କରଞ୍ଜ ମାଲି ।

୮୧୧୮. ଗଜାମୁଗ ଗଛ ଛାଇ
ମନୁ ହେବାଯାଏ ଭୁଲିବ ନାହିଁ
କହ ମୋର ଦେହ ଛୁଇଁ,
କେଲି କରଞ୍ଜ ମାଲି ।

୮୧୧୯. ଗରିଆ ଉପରେ ଗିନି
ମନରୁ ମହନି ନପାରେ ଜିଣି
ଘେନି ବସାଇବି କୋଲେ ଆଣି
କେଲି କରଞ୍ଜ ମାଲି ।

୮୧୨୦. ଗୁଡ଼ିଆ ଘରର ମୁଢ଼ି
ଖୁଡ଼ିକି ମାଗିଲି ରସୁଣ କୋଲେ
ଖୁଡ଼ି ମୁହଁ ଦେଲା ମୋଡ଼ି ।

୮୧୨୧. ଗହମ ଖାଇଲା ପୋକ
କାହୁଁ ଆସିଥିଲା ମହାନ୍ତି ରଙ୍କ
ଘର ଯାକ ପାନ ପିକ ।

୮୧୨୨. ଗହମ ଖାଇଲା ପୋକ
କାହୁଁ ଆସିଗଲା ହୁଣ୍ଡା ରସିକ
ମୁହଁ ଯାକ ପାନ ପିକ ।

୮୧୨୩. ଗଙ୍ଗେଇ ଚଢ଼େଇରେ, ଗଙ୍ଗେଇ ଚଢ଼େଇ
ମୋ ଧନପେଇଁ ଥରେ ବୁଡୁ
ଟୁବୁକିନା ବୁଡ଼ି, ମାଛ ଆଣିଦେଲେ
ତୋତେ ଦେବି ସୁନା ଖଡୁ ।

୮୧୨୪. ଗଙ୍ଗା ପୁଅ ଗାଣ୍ଡିରେ ବଥ
ତା ପଡ଼ିଶା ଆନନ୍ଦ ରଥ ।

୮୧୨୫. ଗଙ୍ଗାଧର ମିଶ୍ର ବଡ଼ ଅକଡ଼ିଆ
ତା ପଡ଼ିଶା ଛୋଟା ବାଜିଆ ।

୮୧୨୬. ଗଉଡ଼ ବୁଦ୍ଧି ଥରେ, ପଖନ (=ପାଷାଣ) ବୁହେ ଗୁରେ ।

୮୧୨୭. ଗଉଡ଼, ଭଣ୍ଡାରି, ଗୋଖା, ନିତି ଭାଙ୍ଗୁଥିବ ପଖା
ତେବେ ସେ ଯାଇ ଦେବେ ଦେଖା ।

୮୧୨୮. ଗଛତଳେ ଖାଲି ପଡ଼ିବ ଶୋଇ,
ଘର ଲୋଡ଼ା ଗାଈ ପାଇଁ, ନହେଲେ ମାଈପାଇଁ ।

୮୧୨୯. ଗଛକୁ ଚଢ଼ିଲା ଗୁଣ୍ଡୁଚି ମୂଷା, ଫଳଥିଲେ ସିନା ଖାଆନ୍ତା
ଉପର ମନକୁ କଥା ବାରତା ଦମ ଥିଲେ ସିନା ଆଇତା ।

୮୧୩୦. ଗତକଥା କଥା ମନେ ନାହିଁକି,
ତାଳ ଗଛ ମୂଳେ ମାଡ଼ ମାରିଥିଲି
ବାଇଗଣ ପଡ଼ା ପେଇଁକି ।

୮୧୩୧. ଗରିଥା ଉପରେ ଗୋଡ଼ଟା ରଖା,
ପଚାଇ ପଚାଇ ହଳଦୀ ମଖା ।

୮୧୩୨. ଗାଧୁଆ ସୁଖ ସକାଳ, ଦେହରେ ଯେବେ ଯାଏ ;
ଖାଇବା ସୁକ ପଖାଳ, ଭଜାଭଜି ଯେବେ ଥାଏ ;
ଟାପରା ସୁଖ ଶାଳୀ, କହିଲେ ଯେବେ ସହେ ;
ସଉଦା ସୁଖ କାଳୀ, ନ ମାଗୁଣୁ ଯେବେ ଦିଏ ।

୮୧୩୩. ଗାଁ ଧଉରା ପାଣି ଯୋଉଠି ପଶେ
ପ୍ରଧାନ ହଳ ସେଇଠି ଚଷେ ।

୮୧୩୪. ଗୁରୁବାରୀ ମାରେ ଡ଼ିଆଁ, ଶୁଖୁଆ ପୋଡ଼ାକୁ ବାଉଁଶ ନିଆଁ ।

## ଝିଅ ବାହୁନା ଢ଼ମାଳି

୮୧୩୫. ଗାଈ ମୂଲେଇଲ ଗୁହାଳେ ବସି,
ଝିଅ ମୂଲେଇଲ ସଭାରେ ବସି ।
ଗାଈ ମୂଲକଲ ଟଙ୍କା ପାଇଲ,
ଝିଅ ମୂଲକଲ କିସ ପାଇଲ ।
କଇଁଆ ପତର ପାଟିକୁ କଷା,
କେମନ୍ତେ ସହିବି ଶଶୁର ଭାଷା ।
ନଈରେ ଯାଉଛି ବାଉଁଶ ଭେଳା,
ଝିଅ ଦେଇ କରି ନ ହେବ ହେଳା ।
ନଈ ଆରପାଖେ ଜଙ୍ଘାଙ୍ଗି ନଟି,
ଭୁଜା ଚୁଡ଼ା ଖାଇ ମାଇଲ ତଣ୍ଟି ।
ତାଟିଆରେ ଦେଲ ଲେମ୍ବୁ ଆଚାର,
ଝିଅ ଦେବାପାଇଁ କଲ ବିଚାର ।
ଦୁଆର ବନ୍ଧରେ ଆମ୍ବ ତୋରଣ,
ନିଲଜ ବନ୍ଧୁକୁ କଲ ବରଣ ।
ତେଣୁ ଆସିଥିଲେ ସାଧବ ଘର,
ସାଧବ ଘରକୁ ନାହିଁ କରିଲ ।
ସେପରି ବନ୍ଧୁକୁ ଜବାବ କଲ,
ଗୋଡ଼ ତଳେ ତଣ୍ଟି ଚିପି ନ ଦେଲ ।
ଆଟିକା ଧରାର ମାଇପ ମରେ,
ଖଣ୍ଡି ଗଣିଆର ଦି'ଗୁଣ ସରେ ।





୮୧୩୬. ଘଇତା, କୁକୁରଚଟା, ନିଶାଖର (=ନିଶାଖୋର)
ଢେମଣା, ଚମଡ଼ାଚଟା ହରବର ।
ନିଶାଖାଇ ଅଜ୍ଞାନହୋଇ ପଡ଼ିଲେ କୁକୁର ଚାଟିଲେ ବି ଜାଣିପାରନ୍ତିନି । ଉପପତି, ସବୁବେଳେ ରମଣ (ମୌଥୁନ) ଚାହିଁ ସ୍ତ୍ରୀକୁ ହଇରାଣ କରେ ।

୮୧୩୭. ଘଟରେ ଘଟରେ ବସିବା ।-ଇଶ୍ୱର ସର୍ବଘଟ ବ୍ୟାପି ଅଟନ୍ତି ।

୮୧୩୮. ଘଟକାଳି (=ବିବାହ ମଧ୍ୟସ୍ଥି) କରିବାକୁ ଯାଇ
ବାହା ହୋଇ ଆସିବା (ପଡ଼ିବା) ।

୮୧୩୯. ଘଟ ଗଢ଼ି ପାରେନା, କଳସୀର ବଇନା (=ଅଗ୍ରୀମ) ଚାହେଁ ।
ଛୋଟ କର୍ମକୁ ଅସମର୍ଥ ଅଥଚ ବଡ଼ କର୍ମପାଇଁ ଇଚ୍ଛା ।

୮୧୪୦. ଘଟି କିଣା ଗଙ୍ଗା ସ୍ନାନ ।

୮୧୪୧. *ଏକାର୍ଥେ* - ରଥ ଦେଖା କଦଳୀ ବିକା ।

୮୧୪୨. *-ଏଇନ-* ବେଗାର୍‌ର ଦୌଲତରେ (ପୁଣ୍ୟରେ) ଗଙ୍ଗା ସ୍ନାନ ।
ବଡ଼ କର୍ମଟିଏ ସମ୍ପାଦନ କଲାବେଳେ ଛୋଟିଆ କାମଟିଏ ହାତକୁ ନେଇ କରିବା ।

୮୧୪୩. ଘଟ ଗଢୁ ଗଢୁ ହାଣ୍ଡି (ଭାଣ୍ଡ) ହେବା ।

୮୧୪୪. *ଏକାର୍ଥରେ* - ଶିବ (ଦିଅଁ) ଗଢୁ ଗଢୁ ବାନ୍ଦର (ମାଙ୍କଡ଼) ହେବା ।
ଏକି ବିଧିର ବିଚିତ୍ର ବିଡ଼ମ୍ବନା ।
ପ୍ରାଚୀନ ଓଡ଼ିଆ ବ୍ୟଙ୍ଗକବି ଗୋପାଳ ଉଡ଼େଙ୍କ ଦ୍ୱାରା ବଙ୍ଗଳାରେ ରଚିତ ପଦ ।

୮୧୪୫. ଘଟି ଭାଙ୍ଗିଲେ କଂସାରୀ ଘରକୁ ଯାଏ ।
ଝିଅ ରାଣ୍ଡ ହେଲେ ବାପ ଘରକୁ ଯାଏ ।

୮୧୪୬. ଘଟି ତଳେ ଦେଇ ଅଠା, ଯାଗ ଯୋଗରେ କାଳ କଟା ।

୮୧୪୭. ଘଟ ଘଟରେ ବିଦ୍ୟମାନ ।
ଇଶ୍ୱର ସର୍ବବ୍ୟାପି ସେ ସମସ୍ତଙ୍କ ଶରୀରରେ ବିଦ୍ୟମାନ ।

୮୧୪୮. ଘଡ଼ିଏ ଅଧ ଘଡ଼ିଏ ।- ଅତି ଅଳ୍ପ ସମୟ ।

୮୧୪୯. ଘଡ଼ିକୁ ଘଡ଼ି ।-ବାରମ୍ବାର ।

୮୧୫୦. ଘଡ଼ି ମୂହୁର୍ତ୍ତ ଦେଖିବା ।

କୌଣସି ଶୁଭ ମୁହୂର୍ତ୍ତ ବା ବିବାହାଦି କର୍ମ ଆରମ୍ଭ କରିବା ପୂର୍ବରୁ ଶୁଭ ମୁହୂର୍ତ୍ତ ନିର୍ଣ୍ଣୟ କରିବା ।

୮୧୫୧. ଘଡ଼ିକେ ଘୋଡ଼ା ଛୁଟେ ।- ଘନଘନ ମତ ପରିବର୍ତ୍ତନ କରିବା ।

୮୧୫୨. ଘଡ଼ିଏ ବେସରମ, ସାରାଦିନ ଆରାମ ।

ସଙ୍କୋଚ କରିବା ଅପେକ୍ଷା ରୋକ ଠୋକ କହିଦେବା ଶ୍ରେୟ ।

୮୧୫୩. ଘଡ଼ିକୁ ତୋଳା, ଘଡ଼ିକୁ ମଶା (=୧ ତୋଳାର ୧/୧୦ ଅଂଶ) ।

ଯିଏ ଟିକିଏ କଥାରେ ଖୁସି ପୁଣି ଟିକିଏ କଥାରେ ନାରାଜ ହୁଏ, ଏପରି ଅସ୍ଥିର ଚିତ୍ତ ବ୍ୟକ୍ତିକୁ କୁହାଯାଏ । ଅବ୍ୟବସ୍ଥିତ ଚିତ୍ତ ବ୍ୟକ୍ତି ।

୮୧୫୪. ଘଡ଼ଘଡ଼ି (=ମେଘଗର୍ଜ୍ଜନ) ଉପରେ ଚଡ଼ଚଡ଼ି (=ବଜ୍ରପାତ)

ଦୁଃଖ ଉପରେ ଦୁଃଖ ପଡ଼ିବା ।

୮୧୫୫. ଘଡ଼ିସନ୍ଧି ମୁହୁର୍ତ୍ତରେ ପହଞ୍ଚିବା ।-ନିର୍ଦ୍ଦିଷ୍ଟ ମୌକାବେଳେ ପହଞ୍ଚିଯିବା ।

୮୧୫୬. ଘଣ୍ଟା-ଗରୁଡ଼ - ଅକର୍ମଣ୍ୟ ଖୋସାମତିଆ ବ୍ୟକ୍ତି ।

୮୧୫୭. ଘଣ୍ଟି ହଲେଇ ଦୁର୍ଗୋତ୍ସବ, ଓଷା ବ୍ରତରେ ଢ଼ୋଲ ।

୮୧୫୮. *ଏକାର୍ଥରେ* - ଦୁର୍ଗାପୂଜାରେ ଶଙ୍ଖ ବାଜେନି,ଷଠିପୂଜାରେ ଢ଼ୋଲ ।

ଆଡ଼ମ୍ବର ଦେଖେଇ ହେବା ।

୮୧୫୯. ଘଣ୍ଟାଟା ବୁଝିବା ।

ତୁଚ୍ଛା ମନେ କରିବା । ଶ୍ରମତୀ ତାର ସ୍ୱାମୀକୁ ଘଣ୍ଟାଟା ବୋଲି ମନେ କରେ ।

୮୧୬୦. ଘଣ୍ଟା ହଲେଇବା ।

ବେକାର ବସିରହିବା, ନିଷ୍ଫଳ ହେବା, ମନା କରିଦେବା ।

୮୧୬୧. ଘଣା ପେଲା ବଳଦ ।-ମେହନତ କରୁଥିବା ଲୋକ ବା ନିଶ୍ଚିତ ସିଦ୍ଧାନ୍ତର ମଣିଷ ।

୮୧୬୨. ଘନ ଚକର ହେବା (ବନିବା) ।

ଅସ୍ଥିର ଚିତ୍ତ ହେବା । ବେକୁଫ୍ ହେବା । ଧୂର୍ତ୍ତ ହେବା । ବିବିଧ ଫେର ଫାରରେ ପଡ଼ିବା ବା ଜଞ୍ଜାଳ ଗ୍ରସ୍ତ ହେବା ।

୮୧୬୩. ଘନ ଜଙ୍ଗଲରେ ଏକାକୀ କାନ୍ଦିବା । (To cry in the wilderness.)

ଅରଣ୍ୟ ରୋଦନ, ନିଷ୍ଫଳ କ୍ରନ୍ଦନ, ବକ୍ତୃତା ଶୁଣିବାକୁ କେହି ଶ୍ରୋତା ନଥାନ୍ତି ।

୮୧୬୪. ଘନ ଘୋର ଘଟା, ବଡ଼ ମାଛର କଣ୍ଟା ।

୮୧୬୫. *ଏକପ୍ରକାର* - ବଡ଼ମାଛର କଣ୍ଟା ବି ଶଲ ।

ଭୟଙ୍କର ବିପତ୍ତି ଭଳି ବଡ଼ମାଛର କଣ୍ଟା ବିପଦ ଜନକ ।

୮୧୬୬. ଘପଲାରେ (=ଦୋଘାଇରେ) ପଡ଼ିବା ।-ଝଞ୍ଜଟରେ ଫସିବା ।

୮୧୬୭. ଘମଣ୍ଡ (=ଗର୍ବ) ଚୁରମାର ହେବା (ତୁଟିବା) ।-ଗର୍ବ ଭାଙ୍ଗିଯିବା ।

୮୧୬୮. ଘମଣ୍ଡରେ ଚୁର ହେବା ।-ଗର୍ବରେ ଫାଟି ପଡ଼ିବା ।

୮୧୬୯. ଘର ଭିତରୁ ବାହାରି ଯା, ଗୋଦର ଗୋଡ଼ର ନାତ ଖା ।

୮୧୭୦. ଘର (କୁଳ) ଉଜଳ କରିବା ।

୮୧୭୧. *ଏକାର୍ଥରେ:*- ଘର (କୁଳ) ପ୍ରଦୀପ ।

ପରିବାରର ଆନନ୍ଦ ଓ ବ୍ୟାପ୍ତି ଆଣିବା ସହ ପରିବାରର ମହତ୍ତ୍ୱ ବଢ଼ାଇବା ।

୮୧୭୨. ଘର ଆବାଦ କରିବା ।-ବିବାହ କରିବା । ଧନ ଧାନ୍ୟରେ ଭରପୁର କରିବା ।

୮୧୭୩. ଘର ଉଜାଡ଼ିବା ।

ଘର ବରବାଦ ହେବା । ଆର୍ଥିକ ଦୃଷ୍ଟିରୁ ଘୋର ବିପନ୍ନ ହେବା । ଘର ଲୋକେ ଇତସ୍ତତଃ ହୋଇଯିବା ।

୮୧୭୪. ଘର ଅଗଣା ହେବା ।-ଘର ଧ୍ୱଂସ ସ୍ତୁପରେ ପରିଣତ ହେବା ।

୮୧୭୫. ଘର କାମୁଡ଼ିବା ।-ଘର ଶୂନସାନ ହୋଇ ଉଦାସିଆ ଭାବରେ ବୁଢ଼ିଯିବା ।

୮୧୭୬. ଘରର ନା ଘାଟର (ଘରକୁ ନା ଘାଟକୁ) । (ଘରର ନୁହେଁ କି ଘାଟର ନୁହେଁ) ।-ସମସ୍ତଙ୍କ ଠାରୁ ଉପେକ୍ଷିତ ହେବା। ଅକର୍ମା ନିକମା ହେବା ।

୮୧୭୭. ଘରର ନାଁ ବୁଡ଼େଇବା ।-କୁଳକୁ କଳଙ୍କିତ କରିବା ।

୮୧୭୮. ଘରକୁ ରାସ୍ତା ମାପିବା ।

ଚୁପଚାପ ଚାଲିଯିବା । ଅନ୍ୟର କାମରେ ମୁଣ୍ଡ ନ ଖେଳେଇବା/ପୁରେଇବା ।

୮୧୭୯. ଘର ବାଘ ।

ଘରେ ରୁଆବ ଦେଖାଇ ବାହାରେ କୋକିଶିଆଳି ପରି ଡ଼ରୁଆ ହେବା । ଘର ପାଇଁ ଅନୁଉପଯୁକ୍ତ ବ୍ୟକ୍ତି ।

୮୧୮୦. ଘର ଲକ୍ଷ୍ମୀ । (ଗୃହ ଲକ୍ଷ୍ମୀ) । -ଭାଗ୍ୟବତୀ ସ୍ତ୍ରୀ ।

୮୧୮୧. ଘର ମୁଣ୍ଡେଇବା ।-ପରିବାରର ସମସ୍ତଙ୍କୁ ସନ୍ତୁଳେଇବା ଓ ସମ୍ଭାଳିବା ।

୮୧୮୨. ଘର ଠିଆ କରିବା ।

୮୧୮୩. *ଏକାର୍ଥରେ:*- ଘର ଦୁଆର କରିବା ।

ଗୃହ ନିର୍ମାଣ କରିବା । ବୈବାହିକ ଜୀବନ ଯାପନ କରିବା ।

୮୧୮୪. ଘରକୁ ଆସିଥିବା ଲକ୍ଷ୍ମୀଙ୍କୁ ନାତ ନ ମାରିବା ।
ମିଳିଥିବା ଧନ ଓ ବୃତ୍ତିକୁ ତ୍ୟାଗ କରିବା ଉଚିତ ନୁହେଁ ।

୮୧୮୫. ଘରକୁ ଆସିଥିବା କୁକୁରକୁ ତଡ଼ିବ ନାହିଁ ।
ଆପଣା ଘରକୁ ଆସିଥିବା ଶଠ ଓ ଲମ୍ପଟ ପ୍ରକୃତିର ଲୋକକୁ ମଧ ତିରସ୍କାର କରିବା ଉଚିତ ନୁହେଁ ।

୮୧୮୬. ଘରକୁ ଆସିଥିବା ନାଗ ନ ପୂଜି,
ବାମାଚାରୀ (=ତନ୍ତ୍ରସାଧକ) ପୂଜା କରିବା ।
କୌଣସି ସାଧୁସନ୍ଥଙ୍କୁ ପୂଜା ନକରି ସାଧାରଣ ସାଧୁ ବା ତାନ୍ତ୍ରୀକକୁ ପୂଜା କରିବା ।

୮୧୮୭. ଘର କର, ଘର କର, ଝଞ୍ଜଟରେ ଜର ଜର ।
ବିବାହକରି ସଂସାର କରିବାକୁହେଲେ ଦୁଃଖକଷ୍ଟର ମୁକାବିଲା କରିବାକୁ ପଡ଼ିଥାଏ ।

୮୧୮୮. ଘର ବ୍ରାହ୍ମଣ ବଳଦ ସରି (ଗୋରୁ ବରାବର) ।
ଘନିଷ୍ଠ ବା ପରିଚିତ ବ୍ୟକ୍ତିର ଆଦର ନ ହେଲେ ଏପରି କୁହାଯାଏ ।

୮୧୮୯. ଘର ଭେଦୁଆ, ଲଙ୍କା ଉଜାଡ଼େ ।
ପରିବାର ଭିତରେ ମନ ମାଳିନ୍ୟ, ସର୍ବନାଶର କାରଣ ।

୮୧୯୦. ଘର ଘର କୁ, ସାଥୀ ନରକୁ ।
ଆପଣା ଘର ଭଲ, ଭଡ଼ା ଘର ନୁହେଁ । ପୁରୁଷ ସଙ୍ଗତ, ସ୍ତ୍ରୀ ଠାରୁ ଭଲ ।

୮୧୯୧. ଘର କନ୍ଦ କୀଡ଼ା (=ପୋକ) (ନଷ୍ଟି), ବାହାର ଗୁଡ଼ ମିଠା (ମିଷ୍ଟି) ।
ଯିଏ ଘର ଚିଜକୁ ନାପସନ୍ଦ କରି ବାହାର ଚିଜକୁ ପସନ୍ଦ କରେ । ଯାହାର ବଜାର ଦୁନା ଚାଟିବାକୁ ଆଦତ, ଯିଏ ବେଶ୍ୟାଗାମୀ ହୁଏ, ତାହାପ୍ରତି ପ୍ରଯୁକ୍ତ ।

୮୧୯୨. ଘର ବିଲେଇର, ଘରେ ଶିକାର ।-ଯିଏ ନିଜ ଘର ଲୋକକୁ ଧୋକା ଦିଏ ।

୮୧୯୩. ଘରର ମୁରୁଗି ଡ଼ାଲ(ଶାଗ) ବରାବର ।

୮୧୯୪. *ସଂପୂର୍ଣ୍ଣପଦ:-* ଘରକା ମୁରୁଗୀ ଡ଼ାଲ ବରାବର,
ବାହରକା ଡ଼ାଲ ମୁରୁଗୀ ବରାବର ।
ଘର ଜିନିଷ ବା ଲୋକଙ୍କ ପ୍ରତି ଯଥାଯଥ ଆଦର ମିଳେ ନାହିଁ ।

୮୧୯୫. ଘର (ଗୃହ) ଦେବତୀକୁ ତେଲ ସଳିତା(ବଳିତା) ।
କୌଣସି ଲୋକକୁ ନିଜ ଘରେ, ଗାଁରେ ସହରରେ ଆଦର ମିଳେ ନାହିଁ ।

୮୧୯୬. ଘର ଲଗା ଘର, ଲଢ଼େଇକୁ ଡ଼ର ।
ଲଗାଲଗି ହୋଇ ବାସ କରୁଥିବା ଲୋକଙ୍କ ମଧରେ କଳି ଗୋଳର ଭୟଥାଏ ।

୮୧୯୭. ଘର ଭେଦ ଲଙ୍କା ଦହେ ।

ଲଙ୍କା ପତି ରାବଣର ଭାଇ ବିଭୀଷଣ ଶ୍ରୀରାମଙ୍କ ସହିତ ମିତ୍ରତା କରି ରାବଣର ସମସ୍ତ ଗୋପନୀୟ ବିଷୟ ଏପରିକି ରାବଣର ମୃତ୍ୟୁ ତାର ନାଭି ସ୍ଥଳରେ ଥିବାର ଭେଦ ପ୍ରକାଶ କରନ୍ତେ ରାବଣର ମୃତ୍ୟୁ ହେଲା । ରାମଚନ୍ଦ୍ର ବିଜୟୀ ହୋଇ ସୀତାଙ୍କୁ ଉଦ୍ଧାର କଲେ । ଆପଣା ମଧ୍ୟରେ ମନୋମାଳିନ୍ୟରୁ ଗୃହ ଭେଦ ପ୍ରକାଶ ପାଇ ସର୍ବନାଶର କାରଣ ହୋଇଥାଏ ।

୮୧୯୮. ଘର ଅଟେ ସର୍ବୋତ୍ତମ, ପୂର୍ବ ହେଉ ବା ପଶ୍ଚିମ ।

ଆପଣା ଘର ସମସ୍ତଙ୍କର ପ୍ରିୟ ଅଟେ । ତାହା ପୂର୍ବାଞ୍ଚଳରେ ଥାଉ ବା ପଶ୍ଚିମାଞ୍ଚଳରେ ଥାଉ ସେଥିରେ କିଛି ଯାଏ ଆସେ ନାହିଁ ।

୮୧୯୯. ଘର ଭିତରେ ମର୍ଦ୍ଦାନା ।-ଡ଼ରକୁଳା ଲୋକପ୍ରତି ପ୍ରଯୁକ୍ତ ।

୮୨୦୦. ଘର ଆଉ ବର, ମାଘ ଫଗୁଣରେ କର ।

ଗୃହକାର୍ଯ୍ୟ ଓ ବିବାହ ମାଘ ଫାଲ୍ଗୁନରେ କରିବା ବିଧେୟ ।

୮୨୦୧. ଘର କରଣା କଲେ, ଘଟିବାଟି ସଙ୍ଗେ ଗୋଳ ଲାଗେ ।

୮୨୦୨. ଘର କରିବ ଝୁମ୍ପୁଡ଼ି, ବୋହୂ କରିବ ଥୁବୁଡ଼ି ।

କୋଡ଼ିଆ ଘର କଲେ ବୋହୂମଧ ବୟସ୍କା ହେବା ଉଚିତ ।

୮୨୦୩. ଘର କରିଛି ଦୁଆର ନାହିଁ ।-ଧନାଢ଼୍ୟ ବ୍ୟକ୍ତିହୋଇ କାହାକୁ କିଛି ନଦେବା ।

୮୨୦୪. ଘରଦୁଆର ନାହିଁ ଯାହାର, ନିଆଁ ପାଣିକୁ କି ଭୟ ତାର ।

୮୨୦୫. ଘର ନାହିଁ ସେ ଉତ୍ତର ଦ୍ୱାରୀ, ଭୂମି ନାହିଁ ତାର ଜମିଦାରୀ ।

ବାହସ୍ଫୋଟ ମାରୁଥିବା ବ୍ୟକ୍ତି ।

୮୨୦୬. ଘର ନାହିଁ ସେ ଉତ୍ତର ଶିୟର (=ଉତ୍ତର ଦିଗକୁ ମୁଣ୍ଡରଖି ଶୟନ)

୮୨୦୭. *ଏକାର୍ଥରେ* - ମଶିଣା ଖଣ୍ଡେ ନାହିଁ, ସେ ଉତ୍ତର ଶିୟରା ।

୮୨୦୮. *-ଏଜନ* - ମୂଳରୁ ମାଇପ ନାହିଁ, ତାର ପୁଣି ଚଉଠି ରାତି ।

୮୨୦୯. - *ଏଜନ* - ମୂଳରୁ ମାଇପ ନାହିଁ ପୁଅନାଁ ଗୋପାଳିଆ ।

ଅବାସ୍ତବ କଥା କହି ବାହାଦୁରି ବା ସବଜାନତା ପଣିଆ ଦେଖାଇବା ।

୮୨୧୦. ଘର ନାହିଁ ଦୁଆର ବାନ୍ଧେ, ମାଇପ ନାହିଁ ପୁଅ ପାଇଁ କାନ୍ଦେ ।

୮୨୧୧. ଘର ପୋଡ଼ିଗଲେ, କାଠର ଅକାଳ କି ।

କରଜ କରି ଖାଇଲେ, ଟଙ୍କାର ଅକାଳ କି ।

୮୨୧୨. ଘର ପୋଡ଼ି ଆଳୁଅଦାନ ।- ଅଲାଜୁକ ପଣିଆ ।

୮୨୧୩. ଘରପୋଡ଼ା ଗୋରୁକୁ ସିନ୍ଦୁରା ମେଘ ଡ଼ରାଏ ।

୮୨୧୪. *ଏକାର୍ଥରେ* - ଘରପୋଡ଼ା ଗୋରୁ ସିନ୍ଦୁରରା ମେଘ ଦେଖିଲେ ଡ଼ରେ ।

୮୨୧୫. ଘର ପୋଡ଼ିରୁ କାଠ, ଯାହା ପାଇ ସେଇ ଲାଭ ।

୮୨୧୬. *ଏକାର୍ଥରେ* - ଘରପୋଡ଼ିରୁ କୁଟା ଖଣ୍ଡେ ମିଳିବା ।

୮୨୧୭. ଘର ପୋଡ଼ି, ପିଣ୍ଡରେ ଧୂଆଁଦେବା ।

୮୨୧୮. ଘରପୋଡ଼ି ପିକା (=ପତ୍ରବିଡ଼ି) ଟାଣିବା ।

୮୨୧୯. ଘର କରିବାକୁ ଚାହିଁବ ନାହିଁ, ଉଧାର ଦେବତ ମାଗିବ ନାହିଁ ।

ଭଲହେଉ ମନ୍ଦହେଉ, ଏହାକଲେ ମନସ୍ତାପର କାରଣ ନଥାଏ ।

୮୨୨୦. ଘର କହେ - ଭାଙ୍ଗିଦେ, ବାହା କହେ -ଯୋଡ଼ି ଦେ ।

୮୨୨୧. ଘର କର ଖାଟ (=ଛୋଟ), ଗୋରୁ କିଣ ଛୋଟ ।

୮୨୨୨. *ଏକାର୍ଥରେ*- ବୋହୂ କର କାଳି, ଗେରସ୍ତ ନାହିଁ ଭାଳି ।

୮୨୨୩. -*ଏଛନ* - ବୋହୂ କର କଳା, ନହେଲେ ଗେରସ୍ତ ପଳା ।

୮୨୨୪. -*ଏଛନ* - ବୋହୂ କର କାଲା, ସେଇ ଗେରସ୍ତର ଭାଲା ।

୮୨୨୫. ଘର ବାସି ଦୁଆର ବାସି, ଗିନ୍ନୀ କରନ୍ତି ପଞ୍ଚଗ୍ରାସୀ ।

୮୨୨୬. ଘରଭଲ ତେଣୁ କଥା ବୁହେ, କିଇତି ବୋହୂର ପିଲାହୁଏ ।

୮୨୨୭. ଘର (ଗୃହ) ଭେଦରେ ରାବଣ ନଷ୍ଟ । -କ୍ର.ନଂ. ୮୧୭୪ ଦ୍ରଷ୍ଟବ୍ୟ ।

୮୨୨୮. ଘର ମୁହାଁ କସେଇ, ରଣମୁହାଁ ସିପେଇ ।

୮୨୨୯. ଘର ଯେ ସେ ହୁଏ ପର, ପର ଯେ ସେ ହୁଏ ଘର।

୮୨୩୦. ଘର ସର୍ବସ୍ୱ ତୁମର, ଚାବିକାଠିଟି ମୋର ।

୮୨୩୧. ଘରସ୍ଥିର ଆଗେ କର, ଘରଣୀ ସ୍ଥିର ପରେ କର ।

ଅର୍ଥିଳାପରେ ବିଭାହ କରିବା ଉଚିତ ।

୮୨୩୨. ଘର ପାନ, କରଣ ତୁଲ୍ୟ, ବାହାରେ ତାର (ତାହା) ଜିରା ମୂଲ୍ୟ ।

୮୨୩୩. ଘରର ଆପଦ ବାହାଘରକୁ ଯା ।

ଆକସ୍ମିକ ଦୁର୍ଭାଗ୍ୟ, ବିପଦରୁ ପ୍ରତିରକ୍ଷା ପାଇଁ ବାହାଘରରେ ବରଯାତ୍ରୀ ହୋଇ ଯିବାପାଇଁ ନିର୍ଦ୍ଦେଶିତ ହୋଇଛି ।

୮୨୩୪. ଘର କଥା ଯେ ପରକୁ କୁହେ,

ତାକୁ କହେ ପର ।

ଚୈତ୍ର ମାସରେ କନ୍ଥା ଘୋଡ଼ିଲେ,

ତାକୁ କହେ ଜର ।

୮୨୩୫. ଘରର କାଠ ଉଇ ଖାଏ, କାଠ କୁଢ଼େଇ ବଣ ଯାଏ ।

ଅଳସୁଆ ପ୍ରକୃତିର ଲୋକପ୍ରତି କଟାକ୍ଷ ।

୮୨୩୬. ଘରେ ଖାଇ ବାହାରେ ଝଡ଼େଇ ହବା ।

୮୨୩୭. *ଏକାର୍ଥରେ* - ଘରେ ଖାଇ, ଘୋଡ଼ା ଆଗରେ (ଢ଼େଇଁବା) ଦୌଡ଼ିବା ।

୮୨୩୮. - *ଏକନ* - ଘରେ ଖାଇ, ବଣ ମଇଁଷି ଅଢ଼େଇବା (ହୁରୁଢ଼େଇବା)।

୮୨୩୯. ଘର ଗୋରୁ ଘରର ଘାସ ଖାଏ ନି ।

୮୨୪୦. *ବିପରୀତାର୍ଥେ* - ଘର ଗୋରୁ ପଡ଼ିଆ ଘାସ ଖାଏନି ।

୮୨୪୧. ଘରର ଗଛା (=ଅକାରଣ ଦଉ), ପେଟର ବଚ୍ଛା (=ପିଲା) ।

୮୨୪୨. ଘର ଢ଼େଙ୍କି କୁମ୍ଭୀର । - ଘର ଲୋକ ଶତ୍ରୁ ହେବା ।

୮୨୪୩. ଘରର ପାପ (ଶତ୍ରୁ) ବୁଢ଼ୀ, ପେଟର ପାପ (ଶତ୍ରୁ) ମୁଢ଼ି ।

୮୨୪୪. ଘର ଭାତରେ ପରପିଲା ।- ପୋଷାପୁଅ ।

୮୨୪୫. ଘର ଭିତରେ ଅଧଘର (=ଢ଼ିଙ୍କିଶାଳ) ।

୮୨୪୬. ଘର ଭିତରେ ତିନିଜଣ, ହଗି ଦେଲା କେଉଁ ଜନ ।

୮୨୪୭. ଘର ମା ଭାତ ପାଏ ନା, ପରମା ପାଖେ କାନ୍ଦନା ।

୮୨୪୮. ଘରର ସୁନା (ଲୁହା) ବଣିଆ (କମାର) ଘରେ ।

୮୨୪୯. ଘର ଶତ୍ରୁ ବିଭୀଷଣ ।

୮୨୫୦. *ସମ୍ପୂର୍ଣ୍ଣ ପଦ* - ସହୋଦରର ଗୁଣ ଶୁଣ, ଘରର ଶତ୍ରୁ ବିଭୀଷଣ ।

୮୨୫୧. ଘରର ଷଣ୍ଢ ପେଟ ଫାଡ଼େ ।

୮୨୫୨. ଘର କରଣା ବୁଦ୍ଧି ଯାହାକୁ ଦିଶେ, ଗୁହଲୁଣ୍ଡା ନେଇ ଚାଳରେ ଖୋସେ ।

୮୨୫୩. ଘର ନିଆଁ ଅଣ୍ଡିରେ ପୂରାଇବା ।

୮୨୫୪. ଘର ଚଳିଯିବା । - ଯେନ ତେନ ଘର ଚଳିବା ସ୍ୱଚ୍ଛଳ ହେବା ।

୮୨୫୫. ଘର ବନେଇବା । - ସମ୍ବନ୍ଧ ଯୋଡ଼ିବା ।

୮୨୫୬ ଘର ବସେଇବା ।- ବିବାହ କରିବା ।

୮୨୫୭. ଘର ଦ୍ୱାର ଦେଖିବା ।- ପରିବାରର ଯତ୍ନ ନେବା ।

୮୨୫୮. ଘରକୁ ଫୁଙ୍କି ଦେବା ।

ଅପବ୍ୟୟ କରିବା, ଘରର ସମସ୍ତ ସମ୍ପତ୍ତି ବରବାଦ କରିଦେବା ।

୮୨୫୯. ଘର ଅଗଣା ଏକ ହେବା ।- ଭେଦ ଭାବ ନ ରହିବା ।

୮୨୬୦. ଘର ଉଜାଡ଼ ହୋଇଯିବା ।- ପରିବାର ନଷ୍ଟ ହୋଇଯିବା ।

୮୨୬୧. ଘରର ପେଚକ(ପେଚା) ।-କାହା ସହିତ ଯିଏ ଦେଖାସାକ୍ଷାତ କରେ ନାହିଁ ।

୮୨୬୨. ଘର ବୋଝ ସମ୍ଭାଳିବା ।- ଘର ଖର୍ଚ୍ଚ ତୁଲାଇବା ।

୮୨୬୩. ଘର ରାସ୍ତା ଭୁଲିଯିବା ।

ସେ ଆଡ଼କୁ ଆଉ ନ ଯିବା । ମାତାଲି ରୋଜ ମଦ ପିଇ ମୋ ଘରକୁ ଆସୁଥିଲା, ଦିନେ ଅଧରାତିରେ ମାତାଲ ଅବସ୍ଥାରେ ଆସୁଥିଲା ବେଳେ ଆମଘର କୁକୁର ତାକୁ ଚୋର ଭାବି କାମୁଡ଼ିଲା । ସେଇଦିନ ପାଖରୁ ସେ ଆମ ଘରକୁ ଆସେନି ।

୮୨୬୪. ଘରେ ଖିରୀ ତ ବାହାରେ ଖିରୀ ।

ବଡ଼ ଲୋକଙ୍କୁ ଘରେ ଓ ବାହାରେ ଆଦର ମିଳିଥାଏ । ମାତ୍ର ନିର୍ଦ୍ଧନକୁ ବାହାରେ କିଛି ମିଳେ ନାହିଁ ।

୮୨୬୫. ଘରେ ଅଧା ଭଲ, ବାହାରେ ସବୁ ଭୋଲ ।

ଯେଉଁ ଅଳସୁଆ ପ୍ରକୃତିର ଲୋକ ବାହାରକୁ ଯାଇ ରୋଜଗାର କରେ ନାହିଁ, ସେ ଏହିପରି କହିଥାଏ ।

୮୨୬୬. ଘରେ ବି ସୁଆଦିଆ, ବାହାରେ ବି ସୁଆଦିଆ ।

ବଡ଼ ଲୋକଙ୍କୁ ସବୁ ସ୍ଥାନରେ ଆଦର ସମ୍ମାନ ମିଳିଥାଏ ।

୮୨୬୭. ଘରେ ବସି ଗଙ୍ଗା ପ୍ରାପ୍ତି ।

ବିନା ପରିଶ୍ରମରେ ମନସ୍କାମନା ପୂର୍ଣ୍ଣ ହେଲେ ଏଭଳି କୁହାଯାଏ ।

୮୨୬୮. ଘରେ ଦୀପ ନାହିଁ, ବାହାରେ ମଶାଲ ।

ମିଥ୍ୟା ଜାକ ଜମକ ଦେଖାଉଥିବା ବ୍ୟକ୍ତି ପ୍ରତି କଟାକ୍ଷ ।

୮୨୬୯. ଘରେ ମୂଷା ଏକାଦଶୀ କରିବା ।

ଖାଦ୍ୟର ଏକାନ୍ତ ଅଭାବ ହେଲେ ଏପରି କୁହାଯାଏ ।

୮୨୭୦. ଘରେ ନାହିଁ ଚାଲୁଣୀ ସାଜ,
ବାହାରେ ମିଆଁ ତୀରନ୍ଦାଜ (=ତୀର ନିକ୍ଷେପ କରୁଥିବା ସୈନିକ) ।

ମିଥ୍ୟା ଆଡ଼ମ୍ବର ଅହଂକାର ଦେଖାଉଥିବା ଲୋକ ପ୍ରତି ବ୍ୟଙ୍ଗ ।

୮୨୭୧. ଘରେ ମହୁଲ ରୁଟି, ବାହାରେ ଲମ୍ବା ଧୋତି ।

ଘରେ ଖାଇବାକୁ ନ ଥାଇ ବାହାରକୁ ଥାଟବାଟ ଦେଖାଉଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।

୮୨୭୨. ଘରେ ନାହିଁ ଦାନା କନା, କହେ ବଢ଼ିଆ ଖାନା ।

ମିଥ୍ୟା ଭଡ଼କ ଦେଖାଉଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।

୮୨୭୩. ଘରେ ଘରେ ଚୋରୀ, ତେବେ ବି ପ୍ରାଣ ଧରି ।

ସଂସାରରେ ଦୁଷ୍କର୍ମ ପୂର୍ଣ୍ଣ ହୋଇଥିଲେ ମଧ ମଣିଷ ବଞ୍ଚି ରହେ ।

୮୨୭୪. ଘରେ ଧନ ଯାର, ଶେଉଳ ମାଛ ତାର ।

୮୨୭୫. *ସମାର୍ଥରେ* - ଯାର ଘରେ ଭାତ, ତା' ଘରେ ଭାକୁର ମାଛ ।

୮୨୭୬. ଘରେ ନାହିଁ ଅନ୍ନ, ବୋଲେ ଦାତାକର୍ଣ୍ଣ ।- ଆତ୍ମବଡ଼ିମା କରିବା ।

୮୨୭୭. ଘରେ ରହିଲେ ନାନା ନିଧି, ଖାଇଲା ବେଳେ ଯେତେ ବିଧି ।

୮୨୭୮. ଘରେ ନିଧି ବାହାରେ ନିଧି ।- ଭାଗ୍ୟବାନ ଲୋକଙ୍କୁ କୁହାଯାଏ ।

୮୨୭୯. ଘରେ ନାହିଁ, ତହୁଁ ଖାଇ ଖାଇ ।

୮୨୮୦. *ଏକାର୍ଥରେ* - ନାହିଁ ଘରେ, ଖାଇ ଖାଇ ।

୮୨୮୧. *-ଏଜନ* - ନାହିଁ ଘରେ ଖାଇ (=ଲୋଭ) ବଡ଼ା ।

୮୨୮୨. *-ଏଜନ* - ଯେତେ ପାଇ, ସେତେ ଖାଇଁ (=ଲୋଭ) ।

୮୨୮୩. ଘରେ ନାହିଁ ସମ୍ଭାବନା, ବାହାରେ ଦେଖ ବାବୁଆନା ।

୮୨୮୪. ଘରେ ଯାର ଅଷ୍ଟରମ୍ଭା (=ଅଭାବ), ବାହାରକୁ କୁଞ୍ଚ ଲମ୍ବା ।

୮୨୮୫. *ଏକାର୍ଥରେ* - ବାହାରେ କୁଞ୍ଚ ଲମ୍ବା, ଭିତରେ ଅଷ୍ଟରମ୍ଭା (=ଅଭାବ) ।

୮୨୮୬. ଘରେ ନାହିଁ ଅଖ (ଭାତ), ଦୁଆରେ ବାଜେ ଢ଼ାକ (=ବଡ଼ଢ଼ୋଲ) ।

୮୨୮୭. ଘରେ ଦାନା ନାହିଁ, ଦୁଆରେ ଚାନ୍ଦୁଆ ।

୮୨୮୮. ଘରେ ନାହିଁ ଚାଳ, ଢ଼ିଙ୍କିଶାଳେ ପରଚାଳ ।

୮୨୮୯. ଘରେ ନାହିଁ ଖଇଁଚି (=ମାଛ ଧରା ଯନ୍ତ୍ର)

ଜୁଲାପ (=ଝାଡ଼ା ଔଷଧ) ଖାଇ ମରୁଛି ।

୮୨୯୦. ଘରେ ନାହିଁ (ଲେଦୁ) ଘଟିବାଟି, ଅଣ୍ଟାରେ ଖୋସିଛି ଚାବିକାଠି ।

୮୨୯୧. ଘରେ ନାହିଁ ଚାଉଳ ପାତ (=ପତ୍ର), ଚୁଲିରେ ବସା ଘିଅଭାତ ।

୮୨୯୨. ଘରେ ନାହିଁ ଦି କଡ଼ା, ମଝିଦୁଆରେ କୁକୁଡ଼ା (=ଢାକିଢୁକି ହେବା) ।

୮୨୯୩. ଘରେ ନାହିଁ ଭାଣ୍ଡେ ଭୁଜା (=ମୁଢ଼ି), ନିତ୍ୟ କରନ୍ତି ଶିବ ପୂଜା ।

୮୨୯୪. ଘରେ ନାହିଁ ଭାତ, କୁଞ୍ଚ ଲମ୍ବିଛି ତିନି ହାତ ।

୮୨୯୫. *ସମାର୍ଥରେ* - ନ ଥାଉ ପଛେ ପେଟରେ ଭାତ

କୁଞ୍ଚ ପଡ଼ିଥିବ ତିନି ହାତ ।

୮୨୯୬. ଘରେ ନାହିଁ ଭାତ, ଧର୍ମର ଉପାସ ।- ଛଳ କରୁଥିବା ଲୋକପ୍ରତି ।

୮୨୯୭. ଘରେ ନାହିଁ ଯାହା, ଛୁଆ ମାଗେ ତାହା ।

୮୨୯୮. *ସମାର୍ଥରେ* - ଦେଶେ ଦେଶେ ନାହିଁ ଯାହା, ଭୁଆଶୁଣୀ ଚାହେଁ ତାହା ।

୮୨୯୯. -*ଏଢନ*- ଯାହା ନାହିଁ ଦେଶେ ଦେଶେ

ତାହା ଚାହେଁ (ଖୋଜେ) ରାଜା ରୋଷେ ।

୮୩୦୦. ଘରେବସେଇ ଦରମାଦିଏ,ଏମନ୍ତସାଆନ୍ତ କିଏପାଏ ।-ଅସମ୍ଭବ କଥା ।

୮୩୦୧. ଘରେ ବାହାରେ ଏକମନ, ତେବେ ହୁଏ କୃଷ୍ଣଭଜନ ।

୮୩୦୨. ଘରେ ଭାତ ନାହିଁ, ଯତ୍ନରେ ଘାଟା (=କ୍ଷତି) ନାହିଁ ।

୮୩୦୩. ଘରେ ଖାଲି ଶାଗ-ସଜନା, ବାହାରେ ଦେଖ ବାବୁଆନା ।

୮୩୦୪. ଘରେ ଗୋଡ଼ ନ ଦେଉଣୁ ମୁଣ୍ଡରେ ଚାଳ ବାଜିବା ।

୮୩୦୫. ଘଷିରେ ଘିଅ ଶୁଖେଇବା ।-ବୃଥା ପରିଶ୍ରମ କରିବା ।

୮୩୦୬. ଘଷିଘାଷି ଲୁହ ପୋଛିବା ।-ଲୋକ ଦେଖାଣିଆ ସହାନୁଭୂତି ପ୍ରଦର୍ଶନ ।

୮୩୦୭. ଘଷିଲେ ପଥର ଘଷରା (=ଘର୍ଷଣଦ୍ୱାରା କ୍ଷୟ ପ୍ରାପ୍ତ) ହୁଏ ।

୮୩୦୮. *ଏକାର୍ଥରେ* - ଘଷୁ ଘଷୁ ପଥର ବି ଘଷରା ହୁଏ ।

୮୩୦୯. ଘାଉଲା କଥା ଘାଉଲା ଜାଣେ ।-ଦୁଃଖୀର ଦୁଃଖ ଦୁଃଖୀ ହିଁ ଜାଣେ ।

୮୩୧୦. *ସମାର୍ଥରେ:*- ଘାଉଲା ଜାଣେ କି ବିନ୍ଧିଲା ଜାଣେ ।

ଦୁଃଖୀ ଦୁଃଖକୁ ଜାଣେ, ପୁଣି ଯିଏ ଦୁଃଖ ଦିଏ ସେ ବି ଦୁଃଖକୁ ଜାଣେ ।

୮୩୧୧. ଘା ଗଲା, ଘାର ପୋକମଲା ।

୮୩୧୨. ଘାଟରେ ପହଞ୍ଚି ଡ଼ଙ୍ଗା ବୁଡ଼ିବା ।

୮୩୧୩. ଘାଟକୁ (ହାଟକୁ) ଯାଇଥିଲା ସଉତୁଣୀ ମା

ଦେଖି ଅଇଲା ବାଘର ପା (=ପାଦ)

ସେ ଦେଖିଲା, ଆମ୍ଭେ ଶୁଣିଲୁ,

ମରି ପଡ଼ି ବାଘ ଦେଖିଲୁ ।

୮୩୧୪. ଘାଟର ନାଆ ଘାଟରେ, ନାଉରୀ ଟୋକା ହାଟରେ ।

୮୩୧୫. ଘାଟରେ ନାତ, ହାଟରେ କିଲା, ଯା କପାଳକୁ ଯେମିତି ଥିଲା ।

୮୩୧୬. ଘାଟ ବାନ୍ଧିବା ।

ବାରମ୍ବାର ଆଶ୍ରୟ ନେବା । ଯେଉଁ ବନ୍ଧୁଙ୍କୁ ଦେଖ, ସେ ବାରମ୍ବାର ଆମରି ଘରେ ଆସି ଆଶ୍ରୟ ପ୍ରାର୍ଥ ହେଉଛନ୍ତି ।

୮୩୧୭. ଘାରେ ଲୁଣଛିଟା (ଲଙ୍କା ଗୁଣ୍ଡ) ।

୮୩୧୮. ଘା ଶୁଖେ, କଥା ଶୁଖେନି ।

୮୩୧୯. ଘା ଶୁଖିଲେ ବି ଚିହ୍ନ ରହେ ।

୮୩୨୦. ଘାତ ଲଗେଇ ବୁଲିବା । -ଅବସରର ଅଭିପ୍ରାୟ ରଖି ବୁଲିବା ।

୮୩୨୧. ଘାଲି କରିବା ।- କାନପାରି ଶୁଣିବା । ଲୁଚିରହି ଅନ୍ୟର କଥା ଶୁଣିବା ।

୮୩୨୨. ଘାସ ପାଇଲ ପାଣି (ଜଳ) ପାଇଲ
ଗୋ-ଜନ୍ମ ଛାଡ଼ି ଗନ୍ଧର୍ବଜନ୍ମ ପାଇଲ ।

୮୩୨୩. ଘାସ ଖାଅ ପାଣି ପିଅ, ଗୋ-ଜନ୍ମ ଛାଡ଼ି ଗନ୍ଧର୍ବ-ଜନ୍ମ ପାଅ (ନିଅ) ।

ଗୋରୁ ମଲେ ତା ମୁହଁରେ ଧାନ-ଦୁର୍ବା ବା ଘାସ-ଜଳ ଦେଇ ଏହି କଥା କହିଥାଆନ୍ତି ।

୮୩୨୪. ଘିଅ କାହିଁ ଗଲା, ଖେଚୁଡ଼ିରେ ।

ନିଜ ଜିନିଷ ନିଜ କାମରେ ଲାଗୁଥିଲେ ବା ନିଜ ଜିନିଷରୁ ନିଜେ ଲାଭ ଉଠାଉଥିଲେ ଏପରି କୁହାଯାଇଥାଏ ।

୮୩୨୫. ଘିଅ ଲଡୁ ଅଙ୍କା ବଙ୍କା ହେଲେବି ଚଡୁ (=ଉତ୍କୃଷ୍ଟ) ।

ଲାଭକର ବସ୍ତୁ କୁରୂପ ହେଲେ ବି ଆଦୃତ ହୁଏ ।

୮୩୨୬. ଘିଅ ଖାଏ ଦୀପାଳି, ମାଡ଼ ଖାଏ ଥାଳି ।

ଜଣେ ଅପରାଧ କଲେ ଅନ୍ୟ ଜଣେ ଦଣ୍ଡ ପାଏ ।

୮୩୨୭. ଘିଅ ଖାଇଲା ବାପ, ଶୁଙ୍ଘ ମୋର ହାତ ।

ଜଣକର କୀର୍ତ୍ତିରେ ଅନ୍ୟ ଜଣେ ଡ଼ିଣ୍ଡିମ ପିଟୁଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।

୮୩୨୮. ଘିଅ ନିଆଁ ପାଖେ ରଖିଲେ ତରଳି ଯାଏ ।-ସ୍ୱାଭାବିକ ପ୍ରବୃତ୍ତି

୮୩୨୯. ଘିଅ ଆଉ ନିଆଁ, ବର ଆଉ କନିଆଁ ।

୮୩୩୦. *ଏକାର୍ଥରେ* - ପୁଅ ଆଉ ଝିଅ, ନିଆଁ ଆଉ ଘିଅ ।

୮୩୩୧. -ଏକନ- ପୁରୁଷ ଆଉ ସ୍ତ୍ରୀ, ନିଆଁ ଆଉ ଘି (=ଘିଅ)

୮୩୩୨. ଘିଅ ଖାଆନ୍ତି, ଦୁଧରେ ଆଞ୍ଚାନ୍ତି (=ଆଞ୍ଚେଇବା) ।

ରଜା ରାଜୁଡ଼ା ତଥା ଧନାଢ଼୍ୟ ବ୍ୟକ୍ତି ବିଶେଷଙ୍କ ଆଡ଼ମ୍ବର ।

୮୩୩୩. ଘିଅ ଦେଇ ଭାଜିଲେ ନିମ୍ବ-ପତି (=କଅଁଳ ନିମ୍ବପତ୍ର)

ନିମ୍ବ ଛାଡ଼େ ନି ତା ଆପଣା ଜାତି ।

୮୩୩୪. ଘିଅ ଦୀପ ଜାଳିବା ।- ଆନନ୍ଦ ଉଲ୍ଲାସରେ ମାତିବା ।

୮୩୩୫. ଘୁ ଘୁ (=କପୋତ) ଦେଖୁଛି, ଫାନ୍ଦ (=ଋଠତା) ଦେଖି ନାହିଁ ।

ଗୋଟିଏ ଗାଁରେ ଘୁଘୁ ଓ ଫାନ୍ଦ ନାମକ ଦୁଇଟି ଭାଇଥିଲେ । ଦିହେଁ ଅତ୍ୟନ୍ତ ଗରିବ । ଏପରିକି ଖାଇବାକୁ ଗଣ୍ଡେବି ମିଳୁନଥିଲା । ଘୁ ଘୁ ଦିନେ ଫାନ୍ଦକୁ କହିଲା, ମୁଁ ସହରକୁ ଯାଉଛି, ମୂଲଲାଗି ରୋଜଗାର କରିବି । ନିଜେ ଖାଇ ତୋ ପାଖକୁ ବି କିଛି ପଠାଇବି । ଘୁଘୁ କାମ ଖୋଜିବା ପାଇଁ ସହରକୁ ଆସି ଜଣେ ଧୂର୍ତ୍ତଲୋକ ହାବୁଡ଼ରେ ପଡ଼ିଲା । ସେ ତାକୁ କାମଦେଲା, ମାତ୍ର ସର୍ତ୍ତ ରଖିଲାଯେ ଯେତେ କଠିନ କାର୍ଯ୍ୟ ହେଲେ ମଧ କରିବାକୁ ପଡ଼ିବ ନଚେତ୍ ତାର ପିଚାର ମାଂସ କଟାଚିବ । ମୁନିବ ଯଦି ପାରିଶ୍ରମିକ ଓ ଖାଦ୍ୟ ଯୋଗାଇ ନପାରେ ବା ଚାକିରୀରୁ ବହିଷ୍କାର କରିବାକୁ ଚାହେଁ, ତାହାହେଲେ ମୁନିବ ପିଚାର ମାଂସ ମଧ କଟାହେବ । ସେଥିପାଇଁ ପାରିଶ୍ରମିକ ଓ ଇଚ୍ଛା ଅନୁସାରେ ତାକୁ ଖାଇବାକୁ ମିଳିବ । ଘୁଘୁ ଦିନସାରା ହାଡ଼ଭଙ୍ଗା ପରିଶ୍ରମ କରି କରି ଏମିତି ହାଲିଆ ହୋଇଯାଏ ଯେ ଭାତ ତୃଣ ଖାଇବା ପାଇଁ ବଡ଼ପତ୍ର ଖଣ୍ଡେ ଯୋଗାଡ଼ କରି ପାରେନାହିଁ, ଫଳରେ ଛୋଟିଆ ମୋଟିଆ ଯେଉଁପତ୍ର ମିଳିଲା ସେଥିରେ ଖାଏ । ଅକ୍ଲାନ୍ତ ପରିଶ୍ରମକୁ ସ୍ୱଳ୍ପାହାର ହେତୁ ତାର ଶରୀର କ୍ଷୀଣ ହୋଇଗଲା । ସେ ଆଉ କାମକୁ ଉଦ୍ଧେଇ ପାରିଲା ନାହିଁ । ତାର ସାନଭାଇ ଫାନ୍ଦ ଏ ଖବର ପାଇ ସେ ଆସି ସେହି ମୁନିବ ନିକଟରେ ବଡ଼ଭାଇ ବଦଳରେ ପୂର୍ବ ସ୍ୱର୍ତ୍ତ ଅନୁସାରେ ଚାକିରୀ କଲା । ଖାଇବା ବେଳ ହେଲେ ଫାନ୍ଦ ବଡ଼ ମାଣପତ୍ରଟିଏ ଭାତ ତୁଣପାଇଁ ବିଛାଇ ଦିଏ । ମାଣପତ୍ର ବିଶାଳତା ମାପର ଖାଦ୍ୟ କିଛିଦିନ ଦେଲା ଉତ୍ତାରୁ ମୁନିବ ପ୍ରମାଦ ଗଣିଲା । ତାକୁ କାର୍ଯ୍ୟରୁ ଅନ୍ତର କରିବ ବୋଲି କହିଲା । ସର୍ତ୍ତାନୁଯାୟୀ ଫାନ୍ଦ ମୁନିବର ପିଚାର ମାଂସ କାଟିବାକୁ ଚାହିଁଲା । ଏଥିରେ ଆଶ୍ଚର୍ଯ୍ୟ ହୁଅନ୍ତେ ଫାନ୍ଦ କହିଲା- 'ଘୁ ଘୁ ଦେଖିଛ, ଫାନ୍ଦ ଦେଖିନଥିଲ । ଏଥର ଦେଖ' ।

୮୩୩୬. *ସମାର୍ଥରେ* -ଘୁଘୁ ଦେଖିଛ, ଫାନ୍ଦ ଦେଖି ନା ।

ଘୁଘୁ ଦେଖିଛ କିନ୍ତୁ, ଫାନ୍ଦ ଦେଖିନା । ପ୍ରାଚୀନ ଓଡ଼ିଆ ବ୍ୟଙ୍ଗ କବି ଗୋପାଳ ଉଡ଼େଙ୍କ ଦ୍ୱାରା ବଙ୍ଗଳାରେ ରଚିତ ଢ଼ଗ ।

୮୩୩୭. ଘୁରିଲେ ଦିନେ ଥରେ, ବାର ବର୍ଷରେ ଫେରେ ।

ନିକୃଷ୍ଟରୁ ନିକୃଷ୍ଟ ବ୍ୟକ୍ତି ମଧ୍ୟ କେବେ ନା କେବେ ସୁଖୀ ଓ ସମ୍ପଦଶାଳୀ ହୋଇପାରେ ।

୮୩୩୮. ଘୁଷିର (=ବିଧାର) ଉଧାର କଣ?

ମାଡ଼ ପ୍ରତିଶୋଧ ତୁରନ୍ତ ମାଡ଼ର ଦେଇ ନିଆ ଯାଇଥାଏ ।

୮୩୩୯. ଘୁଣାକ୍ଷର ନ୍ୟାୟ ।

ବହି ବା କାଠରେ ପୋକଲାଗି ଯେଉଁ କଣା କରିଥାନ୍ତି ତାହା ଅକ୍ଷର ସଦୃଶ ଦେଖାଯିବା ପରି କୌଣସି ଘଟଣା ହଠାତ୍ ଘଟିବା ।

୮୩୪୦. ଘୁମ (ନିଦ) ନାହିଁ ଚୋରର,
ଘୁମ (ନିଦ) ନାହିଁ ଚେମିଣି (=ଚଢ଼େଇ) ର
ଘୁମ (ନିଦ) ନାହିଁ ଧନୀର,
ଘୁମ (ନିଦ) ନାହିଁ ନିର୍ଦ୍ଧନର ।
ଘୁମ (ନିଦ) ନାହିଁ ଯୋଗୀର,
ଘୁମ (ନିଦ) ନାହିଁ ଭୋଗୀର
ଘୁମ (ନିଦ) ନାହିଁ ରୋଗୀର,
ଘୁମ (ନିଦ) ନାହିଁ ଶୋକୀର (=ଶୋକ କ୍ଳିଷ୍ଟ) ।

୮୩୪୧. ଘୁମନ୍ତ ବାଘକୁ ଚିଆଁଅ ନା ।-ଶୋଇଥିଲାବେଳେ ସାଧାରଣତଃ କାହାକୁ ଉଠାଇବା ଠିକ୍ନୁହେଁ ।

୮୩୪୨. ଘୁମନ୍ତ (=ଶୋଇଲା) ବାଘ ଶିକାର ଧରେ ନା ।

୮୩୪୩. ଘୁରେଇ ନେ ତୋ ପଣ ଟଙ୍କା, ଏମିତି ବାହା ଦେଖିନି ବାବା ।

୮୩୪୪. ଘୁରି ଫେରି ବାର, ଘରେ ବସି ତେର ।

୮୩୪୫. *ଏକାର୍ଥରେ* - ଘୁରି ଘୁରି (ବୁଲି ବୁଲି) ବାର, ଘରେ ବସି ବସି ତେର ।

୮୩୪୬. - *ଏଛନ* - ଘୁରି ବାର, ବସି ତେର ।

ଜଣେ ମେହୋନତ କରି ଯାହା ପାଉଛି ତ ଆଉ ଜଣେ ବସି ତାଠାରୁ ଅଧିକ ପାଉଛି । ଈଶ୍ୱରଙ୍କ ଏହି ଅଭିସନ୍ଧି ମଣିଷକୁ ଅଗଚୋର ।

୮୩୪୭. ଘୁଲି (=ଗେଣ୍ଡା) ଖାଏ ଗଧା, ନାମ ହାରାମଜାଦା ।

୮୩୪୮. ଘୁଷ (=ହାତଗୁଞ୍ଜା) ପାଇଲେ ଅମଲା ଖୁସ ।

୮୩୪୯. ଘୁଷୁକି (=କିଳାପୋତା) ବାତ (=କଥା), ହାରାମଜାଦାକା ସାଥ ।

୮୩୫୦. ଘୁଷର ଟଙ୍କା ଫୁସ ।-ଗାଣ୍ଠିମରା ଧନ ନିଆଁପୁହାଁ ଯିବା ଅର୍ଥରେ ।

୮୩୫୧. ଘୁଚୁର ପୁଚୁର କରିବା ।- ସିଦ୍ଧାନ୍ତ ଗ୍ରହଣ ନ କରି ପାରିବା ।

୮୩୫୨. ଘୁରା କରିବା । - ଅପରିଷ୍କାର ଚାରିଆଡ଼େ ବିଛେଇ ଦେବା ।

୮୩୫୩. ଘୁରା ହେବା ।- ଅପରିଷ୍କାର ହେବା ।

୮୩୫୪. ଘୁଲ-ଘୁଲ କରି ମରିବା ।- ଦୀର୍ଘ ଦିନ ଧରି କଷ୍ଟ ଭୋଗି ଭୋଗି ମରିବା ।

୮୩୫୫. ଘୃଣା ଭୟ ଲାଜ୍ୟା, ଏ ତିନିଙ୍କୁ ତେଜ୍ୟା ।

୮୩୫୬. ଘୃତ ତ୍ୟଜ୍ୟା କରେ ମାଛି, ଘା ଦେଖିଲେ ଘଟେ ରୁଚି ।

୮୩୫୭. ଘୋଡ଼ା ମାତାଲ ।-ଘୋର ନିଶାଗ୍ରସ୍ତ ହେବା । ଗଭିର ପ୍ରଭାବ ପଡ଼ିବା ।

୮୩୫୮. ଘୋଡ଼ (=ଘୋର) ନିଶା ଚଢ଼ିବା ।

ଘୋର ନିଶା ହେବା । ଗଭୀର ପ୍ରଭାବ ପଡ଼ିବା ।

୮୩୫୯. ଘୋଡ଼ା ଘାସ ହେଲେ ସଂଗାତ, ଖାଇବ କି, ଖାଇବ ନାତ ।

ମେହନତର ପାରିଶ୍ରମିକ ବା କୌଣସି ଜିନିଷ ବିକି ତାର ମୂଲ୍ୟ ମାଗିବାରେ ସଂକୋଚ କରିବା ଉଚିତ ନୁହେଁ ।

୮୩୬୦. ଘୋଡ଼ାରୁ ପଡ଼ିଲେ ନ ସମ୍ଭାଳ, ନଜରରୁ ପଡ଼ିଲେ ଅସମ୍ଭାଳ ।

ଲୋକ ଲୋଚନରୁ ଥରେ ପ୍ରତିଷ୍ଠା ଚାଲିଗଲେ ତାହା ସର୍ବଦା ହାନୀକାରକ ହୋଇଥାଏ ।

୮୩୬୧. ଘୋର ଏ ସଂସାର ସାଗର, ମଙ୍ଗଳ ହେଉ ପ୍ରାଣୀଙ୍କର ।

୮୩୬୨. ଘୋର ସଂସାର ଜଳମୟ,

କୁମ୍ଭୀର ସୁତ ଭାର୍ଯ୍ୟା ଗୃହ

ଯେତେ ବିଷୟ ଢ଼େଉ ବେଗ,

ଅଗାଧ ଜନ୍ମ ମୃତ୍ୟୁ ରୋଗ

ନାନା ବ୍ୟୋମୋହ କଦର୍ଥନ,

କାମନା ଯେତେ ମତ୍ସ୍ୟ କୁର୍ମ ।

୮୩୬୩. ଘୋଡ଼ା ଚିହ୍ନ କାନରୁ, ଦାତା ଚିହ୍ନ ଦାନରୁ

ମଣିଷ ଚିହ୍ନ ଭାବରୁ, ମଣି ଚିହ୍ନ ଜଳରୁ ।

ଝିଅ ଚିହ୍ନ ହସରୁ, ଭାଗ୍ୟ ଚିହ୍ନ ଲାଭରୁ ।

ହାତ ଚିହ୍ନ ଦାନ୍ତରୁ, ମରଦ ଚିହ୍ନ ବାତରୁ (=କଥାରୁ) ।
ପୁରୁଷ ଚିହ୍ନ କାଶରୁ, ସ୍ତ୍ରୀ ଚିହ୍ନ ଘଷାରୁ ।

୮୩୬୪. ଘୋଡ଼ାଟା ବି - ଟା, ଶରଟା ବି - ଟା
ଟାରେ ଟାରେ ମିଳେଇ ଦବା ।

ଯାହିତାହି କରି ପଦ ମିଳେଇବା ।

୮୩୬୫. ଘୋଡ଼ା ଡ଼େଇଁ ଘାସ ଖାଇବା ।

ଘୋଡ଼ା ଡ଼େଇଁ ଘାସ ଖାଇବା ବଡ଼ ଶକ୍ତ ଓ କଷ୍ଟ ସାଧ । ଅତି ସିଆଣିଆ ଲୋକ ମଧ୍ୟସ୍ଥିକୁ ଛାଡ଼ି କାର୍ଯ୍ୟସାଧନ କରିବାକୁ ସଚେଷ୍ଟ ହେଲେ ସେପରି କ୍ଷେତ୍ରରେ ଏହା ପ୍ରଯୁକ୍ତ ।

୮୩୬୬. ଘୋଡ଼ା ଦେଖିଲେ ହିଁ ଖୋଡ଼ା (=ନିଆଁଖୁଣ୍ଟା) ।

ଖଣ୍ଡି ଇଂରାଜୀ ଜାଣିଲାବାଲା ଅହରହ ଓଡ଼ିଆ କଥା ସହିତ ମଝିରେ ମଝିରେ ଇଂରାଜୀ ଶବ୍ଦ ବ୍ୟବହାର କରନ୍ତି । ଏହିପରି ବ୍ୟକ୍ତିକୁ ନିଆଁଖୁଣ୍ଟା ଚଣ୍ଟେଇଲା ଭଳି ବ୍ୟଙ୍ଗ କରାଯାଇଛି ।

୮୩୬୭. ଘୋଡ଼ା ନ ହଉଁଣୁ ଚାବୁକ ।

୮୩୬୮. *ଏକାର୍ଥରେ* - ଘୋଡ଼ା ନାହିଁ, ଚାବୁକ ଅଛି ।

୮୩୬୯. ଘୋଡ଼ା ପାଗଳ ହୁଏ, ଘୋଡ଼ସବାର ପାଗଳ ନ ହୁଏ ।

୮୩୭୦. ଘୋଡ଼ା-ମେଣ୍ଢା ଏକ ଦର, କଳିରେ (=କଳିକାଳରେ) ନାହିଁ ବିଚାର ।

୮୩୭୧. *ଏକାର୍ଥରେ* - ମୁଢ଼ି, ମୁକ୍ତାର ସମାନ ଦର ।

୮୩୭୨. ଘୋଡ଼ାର ଚାଲ ଚାଲିବା ।

ସତରଞ୍ଜଖେଳ ତଥା ଦାବା-ଖେଳରେ ଘୋଡ଼ା ଗୋଟିକୁ ଖେଳି ରାଜା ଓ ମନ୍ତ୍ରୀ ଉଭୟଙ୍କୁ ମାରିବାର ଚାଲ ବିଶେଷରେ ବ୍ୟବହୃତ ।

୮୩୭୩. ଘୋଡ଼ା ଡ଼ିମ୍ବ ବା ଘୋଡ଼ାର ଡ଼ିମ୍ବ ।

ଅଳିକବସ୍ତୁ । କଥାରେ କହନ୍ତି-ଆକାଶ କୁସୁମ, ଚିଲିକା ରୋହିମାଛ । କେବେବି ଘୋଡ଼ାର ଡ଼ିମ୍ବ ଆଉ କାଚର ଛାଡ଼ି ନଥାଏ । ଅସମ୍ଭବ କଥା ।

୮୩୭୪. ଘୋଡ଼ାର ପେଟ, ଗଧର ପିଠି, ଖାଲି ଥାଏନା କଦାଚିତ୍ ।

୮୩୭୫. *ସମାର୍ଥରେ* - ହାତୀର ପିଠି ଖାଲି ରହେନା ।

୮୩୭୬. ଘୋଡ଼ାଶାଳର ମାଙ୍କଡ଼ (ବାନ୍ଦର) ।

ଘୋଡ଼ା ଦେହର ପୋକ ନଷ୍ଟକରିବା ପାଇଁ ପୂର୍ବକାଳରେ ଘୋଡ଼ାଶାଳରେ ମାଙ୍କଡ଼ ରଖିବାର ପ୍ରଥାଥିଲା ।

୮୩୭୭. ଘୋଷ, ବୋସ, ମିତ୍ର, କାୟସ୍ଥ କୁଳର ଅଧିକାରୀ
ଅଭିମାନୀ ଦତ୍ତ, ବାଲିରେ ପଡ଼ି ଗଡ଼ାଗଡ଼ି ।

କାୟସ୍ଥ-କୌସ୍ତୁଭର ବଚନା ବଲୀରୁ ସଂଗୃହୀତ । ବଙ୍ଗଳାର ଏହି ପ୍ରବାଦଟି ବହୁକାଳରୁ ଓଡ଼ିଶାରେ ପ୍ରଚଳିତ ।

୮୩୭୮. ଘୋଷ ପାଖରୁ ନେଡ଼େ (=ନିମ୍ନଶ୍ରେଣୀର ମୁସଲମାନ) ଭଲ ।

୮୩୭୯. ଘୋଷାଲ ବଡ଼ ରସାଳ ।

୮୩୮୦. ଘୋଡ଼ାର (ଗୋରୁର) ଘାସ କାଟିବା ।

ମନ୍ଦଭାଗ୍ୟ ପଡ଼ିବା । ଯେପରି କହନ୍ତି - ନଳରାଜା କାଟେ ଘୋଡ଼ାର ଘାସ ।

୮୩୮୧. ଘୋଡ଼ା କାମୁଡ଼ିଲେ ଛାଡ଼େନି ।

୮୩୮୨. ଘୋଡ଼ା ଟାପୁରେ ଶ୍ରୀମନ୍ଦିର ଆବିଷ୍କାର ।

ମହାରାଜା ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥ ମନ୍ଦିର ନିର୍ମାଣ ଶେଷକରି ମନ୍ଦିର ପ୍ରତିଷ୍ଠା ନିମିତ୍ତ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବାକୁ ଗଲେ । ଇତିମଧ୍ୟରେ ବହୁ କାଳ ବିତିଗଲା । ଫଳରେ ମନ୍ଦିର ସମୁଦ୍ର ବାଲିରେ ପୋତି ହୋଇ ପଡ଼ିଲା । ଉତ୍କଳର ରାଜା ଦିନେ ସେଇ ବାଟରେ ନିଜର କେତେକ ସୈନ୍ୟସାମନ୍ତଙ୍କୁ ନେଇ ବାଲୁକାରାଶି ଉପରେ ଯାଉଥିଲାବେଳେ ହଠାତ୍ ତାଙ୍କର ଘୋଡ଼ାଟାପୁ ବାଲୁକାସ୍ତୁପ ମଧ୍ୟରେ ଥିବା ମନ୍ଦିର ଚୂଳରେ ଲାଗିଲା । ଘୋଡ଼ା ଦୋହଲିଗଲା । ରାଜା ଘୋଡ଼ାରୁ ଓହ୍ଲାଇ ପଡ଼ିଦେଖିଲେ ତାହା ଗୋଟିଏ ମନ୍ଦିରର ଦଧିନଉତିର ଚୂଳ । ସେହିଦିନଠାରୁ ମନ୍ଦିର ଖୋଳା ଆରମ୍ଭହେଲା । ତତ୍‌ପରେ ସମ୍ପୂର୍ଣ୍ଣ ମନ୍ଦିର ଲୋକ ଲୋଚନକୁ ଆସିଲା । ଉତ୍କଳର ଏହି ରାଜା 'ଗାଲ ମାଧବ' ନାମରେ ପରିଚିତ । 'ଗାଲମାଧବ' ପ୍ରବାଦର ଅର୍ଥ ଏହି ଖଣ୍ଡ ଗ୍ରନ୍ଥର କ୍ରମିକ ନଂ-୬୬୫୦ ଦ୍ରଷ୍ଟବ୍ୟ ।

୮୩୮୩. ଘୋମଟା (=ଓଢ଼ଣା) ଭିତରେ ଖେମଟା (=ସଙ୍ଗୀତର ତାଳ) ନାଚ ।

ମଣିଷର କୃତିତ୍ୱ ପରିପ୍ରକାଶ ହେଲେ ସମାଜରେ ସେ ମର୍ଯ୍ୟାଦା ଅର୍ଜନ କରି ପୂଜାପାଏ । ମାତ୍ର ପରଦାର ଅନ୍ତରାଳରେ ଅପରିପକ୍ୱ ବ୍ୟକ୍ତିତ୍ୱ ସମ୍ପନ୍ନ ବ୍ୟକ୍ତି, ଲୋକ ଲୋଚନକୁ ନ ଆସିଲେ ତାକୁ କେହି ପଚାରନ୍ତି ନାହିଁ । ବଣ ମଲ୍ଲି, ବଣରେ ଫୁଟି, ବଣରେ ଝଡ଼ିପଡ଼ିଲା ଭଳି ।

୮୩୮୪. ଘୋରିବାଟି ଖାଇବା ।-କାଙ୍ଗାଳ କରିଦେବା, ଅତ୍ୟଧିକ ବିଳମ୍ବ କରିବା ।

୮୩୮୫. ଘୋଳା ଅଣ୍ଡା ହେବା ।-ମୁର୍ଖ ହେବା, ତୁମେ ଜଣେ ଘୋଳା ଅଣ୍ଡା ।

୮୩୮୬. ଘ୍ରାଣେନ ଅର୍ଦ୍ଧ ଭୋଜନମ୍ ।

ଘରେ ପଶିଲେ ଛାଡି ଯାଏ କି ? ଘ୍ରାଣରେ ଅର୍ଦ୍ଧ ଭୋଜନ - ଶାସ୍ତ୍ରରେ ଲେଖାଅଛି ।

## -ଛଟା- 'ଘ'

୮୩୮୭. ଘଇତା ଅଟଇଚିର ବିଦେଶୀ
ଶଶୁରଟି କଣା, ଶାଶୁ ଅନ୍ଧୁଣୀ ;
ନୂଆ ବୋହୂଟିର କି ଦୋଷ ବାରିବା
ରାତି ଅଧେ ଯାଏ ପୋଖରୀ ପାଣି ।

୮୩୮୮. *ଏକପ୍ରକାର* - ଆଜି ଗୁରୁବାର ଶୁଭଦିନ ମୋର
ଶମ୍ଭୁଦରଶନ ହେଲାରେ,
ମୋ ସ୍ୱାମୀ ଯେସନ ଚନ୍ଦ୍ରଟି ତେସନ
ଶାଶୁ ମୋର ସୁଲୋଚନାରେ
ବୁଝିତେ ପାରିଲେ ନାଗର ହୋଇବୁ
ନ ବୁଝି ପାରିଲେ ପଶୁରେ ।

ନାରୀର ଗୁପ୍ତ ପ୍ରେମିକ ପ୍ରତି ଇସାରା ।

୮୩୮୯. ଘଇତା ସୁଆଗ ଭଲାରେ
ଦିଅର ସୁଆଗ ଅଢ଼େଇ ଦିନତ ।
ମାଇପ ଅଇଲେ ଗଲାରେ ।

* * * *

ଏହି ପରା ତୁମ ଢ଼େଙ୍ଗା ଉଆସ ଚିଲି ପଶି ଯାଉଛି
ଏହିପରା ତୁମ ସୁଆଗି ମାଇପ ନୁଣ ନାହିଁ ପେଜ ପିଉଛି ।

୮୩୯୦. ଘୁମୁର ଘୁମା
ତଳେ ପାହୁରାଣି ଉପରେ ସମା ।
କୁସୁମ ଫୁଲର ଜ୍ୟୋତି
ଖଣ୍ଡେ-ଦୂର ଯାଇ ଓଢ଼ଣା ପକାଉ
କହୁ, ମୋର ଠାରୁ ନାହିଁ ସତୀ ?

୮୩୯୧. ଘରେ ନାହିଁ ଭାତ, କୁଟୁମ୍ବ ବହୁତ ।

୮୩୯୨. ଘରଣୀ ରୁଷା ଘୋର ବରଷା
ଚାକର ଅନ୍ଧାର କଣା
ସଞ୍ଜବୁଡ଼ ବେଳେ କୁଣିଆ ଆସିଲେ
ବୁଦ୍ଧି ବାଟ ହେଲା ବଣା ।

୮୩୯୩. ଘାତକର କି ଦୟା ଅଛି ନା
ବେଶ୍ୟାଙ୍କର କି ମାୟା ଅଛି ?
ଭୂତଙ୍କର କି କାୟା ଅଛି ନା
ଦେବତାଙ୍କର କି ଛାୟା ଅଛି ?
ଭଡୁଆଙ୍କର କି ଭାୟା ଅଛି ନା
ବାବାଜୀଙ୍କର କି ଜାୟା ଅଛି ?

୮୩୯୪. ଘଇତା ମାରେ ଖୁଣ୍ଟା ଦିମୁଣ୍ଡି ବୋଲି
ଦିଅର ମାରେ କୁଣ୍ଡା ଭୁଷୁଣ୍ଡି ବୋଲି ।
ସ୍ୱାମୀ ଓ ଦିଅରର ଅତ୍ୟାଚାର ନମୁନା ।

୮୩୯୫. ଘଇତା ହେବାର ଠିକ୍ ନାହିଁଟି
ଅରଟ କପାଖାଇ ବିକ ନାହିଁଟି ।
ପୂର୍ବେ ବିଧବା ମାନେ କପାଖାଇରେ କପାମଞ୍ଜି କାଢ଼ିବା, ଅରଟରେ ସୂତା କାଟିବା ପ୍ରଭୃତି ବେଉସା କରୁଥିଲେ । ବିଧବା ପନର୍ବିବାହ କଲେ ତାର ବେଉଶା ବଦଳେ । ଏଥିରେ ବିଧବାକୁ ବ୍ୟଙ୍ଗ କରାଯାଇଛି ।

୮୩୯୬. ଘଇତା ଧକ୍ ଦକ୍ ବେଳେ
ମାଇପ ସୁନ୍ଦର କଜ୍ଜଳ ଘିନୁଛି ।- ସ୍ତ୍ରୀ ପ୍ରତି କଟାକ୍ଷ ।

୮୩୯୭. ଘଇତା ମାଇଲା କେବେ, ସକେଇ ହେଉଛୁ ଏବେ ।
ସ୍ତ୍ରୀ ତାର ପୂର୍ବ ଦୁଃଖ ସ୍ମରଣ କରୁଛି ।

୮୩୯୮. ଘଇତା ହେବାର ଥୟ ନାହିଁଟି, ଶଙ୍ଖା ଫୁଲଗୁଣା କିଣୁ କାହିଁକି ।
ପୁନର୍ବିବାହ ଲାଗି ଚେଷ୍ଟା କରୁଥିବା ବିଧବା ପ୍ରତି ବ୍ୟଙ୍ଗ ।

୮୩୯୯. ଘଇତାର ନାଁ ନ ଜାଣେ
ଗାଆଁ ଲୋକଙ୍କର ନାଁ ବଖାଣେ ।
ପୂର୍ବେ ସ୍ତ୍ରୀମାନେ ସ୍ୱାମୀମାନଙ୍କର ନାମ ଧରୁ ନଥିଲେ । ସେଥିପ୍ରତି ବ୍ୟଙ୍ଗ ।

୮୪୦୦. ଘଇତା କନକ ପାତର,
ତାକୁ ପାଟଶାଢ଼ୀ କେତେ ମାତର ।
ସ୍ୱାମୀର ଯୋଗ୍ୟତାକୁ ବ୍ୟଙ୍ଗ କରାଯାଇଛି ।

୮୪୦୧. ଘଇତାର ନାଁ ମାଇପ ଜାଣେ, ମାଇପର ନାଁ ଘଇତା ଜାଣେ
କିଏ କାହାର ନାଁ ନ ଧରେ ।
ସବୁ ଘଟଣା ଜାଣି ଗୋପନୀୟ ରଖୁଥିବା ବ୍ୟକ୍ତି ମାନଙ୍କ ପ୍ରତି ବ୍ୟଙ୍ଗ ।

୮୪୦୨. ଘଇତାଙ୍କର ବାହାନ କାହାଣ ଚରଣ
ମାଇପ କହୁଛନ୍ତି ଚନ୍ଦ୍ରଉଦିଆ କିଣ ।
ସ୍ୱାମୀ ଋଣରେ ବୁଡ଼ିଥିଲା ବେଳେ ସ୍ତ୍ରୀର ବାଣ କିଣା ସଉକ ଓ ଅପବ୍ୟୟକୁ ବ୍ୟଙ୍ଗ କରାଯାଇଛି ।

୮୪୦୩. ଘଇତା ଦେଖେଇ ଦେଖେଇ, ମାଇପ କାନ୍ଦେ ସକେଇ ସକେଇ ।
ସ୍ତ୍ରୀର ଛଳନା ପ୍ରତି ବ୍ୟଙ୍ଗ ।

୮୪୦୪. ଘଣାପେଲା, କତା ବାଡ଼ିଆରେ ଦିନଗଲା ।
ଜେଲ ଖଟିଥିବା ଅପରାଧୀ ପ୍ରତି ବ୍ୟଙ୍ଗ ।

୮୪୦୫. ଘଣ୍ଟି ଘାଗୁଡ଼ି ଝୁଣ ଝୁଣ, ବାଟ ଚାଲୁଥାଏ ରୁଣଝୁଣ ।
ନୂପୁର ପିନ୍ଧି ଚାଲୁଥିବା ସ୍ତ୍ରୀର ବର୍ଣ୍ଣନା ।

୮୪୦୬. ଘନ ଗରଜଇ ମେଘ ବରଷଇ
ଟୋପି ଟୋପି ପଡ଼େ ତଳେ
ଘରର ଘରଣୀ ରଷି ବସିଅଛି
ଯାରେ କାଳିଆ
ପଡ଼ ତାର ଗୋଡ଼ ତଳେ ।
ଘରଣୀର ମାନଭଞ୍ଜନ କରିବା ପାଇଁ କର୍ତ୍ତାକୁ ଗୋଡ଼ଧରିବାକୁ ପଡ଼େ ।

୮୪୦୭. ଘର ଓଳାଇଲି ଝଙ୍କେ, ପିଢ଼ା ପକାଇଲି ବାଙ୍କେ
କାଞ୍ଚନ ଥାଳିରେ ଭାତ ବାଢ଼ିଦେଲି, ଖାଇ ଦେ କୌତୁକେ ।

୮୪୦୮. ଘର ଘଇତା ତୁଚ୍ଛା ଖାଏ, ଫାଉଲା ଦହି ଲୋଡୁଥାଏ ।
ଘରର ମାଲିକ ତରକାରି ଧାପେ ଖାଇବାକୁ ପାଉନାହିଁ ଅଥଚ ଫାଉଲା ଲୋକ, ଲୋକ ଦହି ଲୋଡ଼ିବା ହାସ୍ୟକର ।

୮୪୦୯. ଘର ଚାରି ବଖରା ବୁଲି ଆଇଲି
ମଝି ଅଗଣାରେ କୂଅ
କୂଅକୁ ଚାହିଁଣ ବାଳ ଚିରନ୍ତି (=ସୁନ୍ଧା ପକେଇବା)
ଶାଶୂଙ୍କ ମଝିଆ ପୁଅ ।

ଦିଅର କୂଅର ପାଣିକୁ ଦର୍ପଣ କରି ସୁନ୍ଧାପକାଇବା ସମ୍ପର୍କରେ ବ୍ୟଙ୍ଗ ।

୮୪୧୦. ଘର କରିଥିଲେ କଳି ହେଉଥାଏ
ପଡୁଥାଏ ପଦେ ପଦେ
ଯାହାତ କହିବ ସଂସାରେ ରହିବ
କୋରଧ କିପାଇଁ ହୁଦେ ?

ଘର ସଂସାର କଲେ କଳିଲାଗେ ଏବଂ ସ୍ନେହ ଶ୍ରଦ୍ଧା ବି ପ୍ରକାଶ ପାଏ । ଘର ସଂସାର ସବୁବେଳେ ଶାନ୍ତିରେ ଚାଲିବ ଏ କଥାର ସ୍ୱୀକୃତି କିଏ ଦେବ ? ତେଣୁ ମନରେ କ୍ରୋଧ ପ୍ରକାଶ କରିବା ଅବାଞ୍ଛନୀୟ ।

୮୪୧୧. ଘରେ ଭଣ ଭଣ ଦୁଆରେ ଝୋଟି, ସାହୁ ପଡିଆରା ବୋହୂ ଦିଓଟି ।

ଘରର ଆର୍ଥିକ ଅବସ୍ଥା ଭଲ ନ ହେଲେ ବି ଦୁଇଟି ଯାକ ବୋହୂ ବିଶ୍ୱାସର ପାତ୍ରୀ ।

୮୪୧୨. ଘରର ଉପରେ ଘର
ସୁନା ଖମ୍ବ ପରି ତିନି ଦିଅର
ଚନ୍ଦର ଉଦିଆ (=ଚନ୍ଦ୍ରଉଦିଆ) ବର ।

ଯେଉଁଠାରେ ବର ଏବଂ ଦିଅରମାନେ ସୁନ୍ଦର ସେଠାରେ ସଂସାର ସୁଖମୟ ।

୮୪୧୩. ଘର ଉପରେ ଘର
ଚୂଆ ମେଥି ଗୁଣ୍ଡା ହଳଦୀ ବାସନା
ମହକୁଛି ତିନିପୁର ।

ଘରର ଭଲ ଚଳାଚଳ ଅବସ୍ଥାରେ ସୂଚନା ।

୮୪୧୪. ଘର ହୋଇଛି ଛାଟପାଟ
ବିଲ ହୋଇଛି ପାଣି ପାଟ
ବିଆଳି ହୋଇଛି ଘାସ କାଟ
ମଣିଷ ହୋଇଛି ହାଟ ପାଟ ।

ଘର ଓ ଜମିବାଡ଼ିର ଅବ୍ୟବସ୍ଥାର ସୂଚନା ।

୮୪୧୫. ଘର ଆଗରେ ନ ରୋପିବ, ବେତ, ତେନ୍ତୁଳି, ତାଳ
ଦକ୍ଷିଣେ ରୋପିବ ନିମ
ଉତ୍ତରେ ରୋପିଲେ କଦଳୀ ସଜନା, ସମୟକୁ ଦେବ କାମ ।
ଘର ଓ ବାରି ସମ୍ପର୍କରେ ସୂଚନା ।

୮୪୧୬. ଘର କରିଥିଲି ପାଞ୍ଚଶେଣିଆ
ବାଆ ବତାସରେ ଗଲା,
ବୋହୂ କରିଥିଲି ଅତି ସୁକୁମାରୀ
ଏକା ବରଷକେ ମଲା ।- ଦୁର୍ଭାଗ୍ୟର ଦାଉ ।

୮୪୧୭. ଘର ଚାରିପାଖେ ଲଗାଇଲି ଲେମ୍ବୁ
ଧଇଲା ଡ଼ାଳିମ୍ବ କଷି
ଘରର ଦିଅଁକୁ ପର ନେଇଗଲା
ବ୍ରାହ୍ମଣୀ କାନ୍ଦଇ ବସି ।
ଜଣକର ସ୍ୱାମୀକୁ ଅନ୍ୟ ସ୍ତ୍ରୀ ଫୁସଲେଇ ନେଇଗଲେ ତାର କାରୁଣ୍ୟ ।

୮୪୧୮. ଘର ଆଗରେ ଦିଅଁଙ୍କର ବାସ
ଅବାଡୁଆ ବ୍ରାହ୍ମଣର ମୁଣ୍ଡେ ଗୋଟେ କେଶ ।
ଘର ଆଗରେ ଦିଅଁଦେଉଳ ଥିଲେ ତାହା ଅପବିତ୍ର ହେବାର ଆଶଙ୍କା ଥାଏ ।

୮୪୧୯. ଘରଣୀଙ୍କ ସଜ (=ବେଶ) ରାତିଖିଆ ପରେ
ଦାରୀଙ୍କର ସଜ ସଞ୍ଜକୁ
ଦୋକାନୀର ସଜ ସକାଳ ପହରୁ
ବୁଢ଼ାଙ୍କର ସଜ ପୂଜାକୁ ।

୮୪୨୦. ଘରେ ଥିବ ଉଳୁଣୀ ମୁଣ୍ଡୀ
ବାଡ଼ିରେ ଥିବ ପୋଇ, ଯିବି ମୁଁ କାହିଁ ପାଇଁ ।
ଘରର ଘରଣୀ ଅନାଦୃତ ଓ ଅଭାବ ଗ୍ରସ୍ତ ଅବସ୍ଥାରେ ଶାଗମୁଗ ଯୋଗାଡ଼ କରି ସଂସାର ଚଳାଏ ।

୮୪୨୧. ଘାସ ବନ୍ଧା ବିଡ଼ି ବିଡ଼ି
ଘାଟର କଉଡ଼ି ନ ଦେଲେ ତୁହି
ବନ୍ଧା ଦିଅ ଫୁଲ ଯୋଡ଼ି । - ପ୍ରେମର ନିବେଦନ ।

୮୪୨୨. ଘୁଷୁରୁ ଘୁଷୁରୁଖୁରାରେ, କାଳିଆ ମାରିବୁ ପରାରେ ।
ଅସମର୍ଥ ହୋଇ ବାହାଦୁରି କରୁଥିବା ଲୋକପ୍ରତି ବ୍ୟଙ୍ଗ ।

୮୪୨୩. ଘେର ପଡ଼ିଛି, ଘେର ଭିତରେ ନାଟ ଲାଗିଛି ।
ଲୋକଚକ୍ଷୁର ଅନ୍ତରାଳରେ  ଅସଂଯତ କାର୍ଯ୍ୟ ହେଉଛି ।

୮୪୨୪. ଘୋଡ଼ାଟାଏ ଫେର୍ ସରାଟାଏ ।
ବିଷୟ ସହିତ ଅସଂପୃକ୍ତ ଶବ୍ଦ ପ୍ରତି ବ୍ୟଙ୍ଗ ।

୮୪୨୫. ଘୋଡ଼ା ମୁଣ୍ଡ ଟାକୁ ଟାକୁ,
କାହୁଁ ଆଣିଥିଲି ଥାକୁଲୀଟାକୁ(=ମୋଟୀସ୍ତ୍ରୀ), ଚୁଡ଼ା କୁଟି ଖାଇବାକୁ ।

୮୪୨୬. ଘୋରଣା କାଠି,ମନେଇ ନାନୀଟି ସାଇରେ ସଖୀ ।
ମନେଇ ନାମକ ଯୁବତୀ ପ୍ରତି ପରିହାସ ।

୮୪୨୭. ଘଷି ହେଉଥିବୁ, ମାଜି ହେଉଥିବୁ
ଛିଡ଼ି ଯାଉଥିବ ଚମ
କଳା ଦିହ କି ଗୋରା ହୋଇବ
ଯାହା ତ ଗଢ଼ିଛି ଯମ ।

୮୪୨୮. ଘରେ ଚାଷ, ପୁରା ଆଶ
ପରଚାଷ, ଅଧା ନାଶ ।

୮୪୨୯. ଘରୁ ଯେତେବେଳେ ଯାଉଁ ପାଠ ପଢ଼ି,
ଘଡ଼ିଏ ଉଛୁର ହେଲେ ଖାଉଁ ବେତ ବାଡ଼ି ।
ନାୟକଙ୍କ ଆଗରେ ଯେ ଉଭା କରାବନ୍ତି,
ନାକ ବାଳ କାଟିକରି କୁଆକୁ ଦିଅନ୍ତି ।
ଚରଣେ ଦିଅନ୍ତି ମାଗୋ ମରୁଆ ସାଙ୍କୋଳି,
ଚୋର ପ୍ରାୟ କରି ମାଗୋ କେତେ ମାଡ଼ ମାରି ।
କୃଷ୍ଣଚନ୍ଦ୍ର କହୁଛନ୍ତି ମାତାଙ୍କ ଆଗର,
ଯମର ଦୁଆର ପ୍ରାୟେ  ଚାଟଶାଳୀ ଘର ।
ପୂର୍ବକାଳରେ ପିଲେ ଚାଟଶାଳୀରେ ଅବଧାନମାନଙ୍କ ପାଖରେ ପାଠ ପଢୁଥିଲେ । ଅବଧାନଙ୍କ ଠାରୁ କଷଣ ପାଇ ମଧ୍ୟ ହର୍ଷୋତ୍ଫୁଲ୍ଲ ଥିଲେ । ଗ୍ରାମାଞ୍ଚଳର ଏହି ଦୃଶ୍ୟପଟ ଏକାଳେ ଅଲବ୍ଧ ।

୮୪୩୦. ଘଷି ଦେବାକୁ ଗଲେ ସେ, ଲଗାନ୍ତି ଗୋଳ
ଅରକ୍ଷିତ ଟୋକୀ ମୋର ।

୮୪୩୧. ଘରର ଉପରେ ଘର
ଘରେ ଥିଲା ଯାକ ଘରର ଝିଅ,ବୋଉ-ଏରୁଣ୍ଡି ଡ଼େଇଁଲେ ପର ।

୮୪୩୨. ଘରର ଉପରେ ଘର ଜାଇଫୁଲ,ଘରର ଉପରେ ଘର
ତିନି ଖୁମ୍ବ ପରି ତିନି ଦିଅର, ମୋ ଚନ୍ଦ୍ର ଉଦିଆ ବର ।
ଲୋ ଲଙ୍କା ମରିଚ ଫୁଲ,
ତୋତେ କିଏ ଲୋ, ତୋତେ କିଏ କେତେ କଲା ମୂଲ
ଲଙ୍କା ମରିଚ ଫୁଲ ।

୮୪୩୩. ଘୃତହୀନ କୁଭୋଜନଂ-ଘିଅବିନା ନିରାମିଷ ଭୋଜନ ଅକାରଣ ।

୮୪୩୪. ଘୃତକୁମ୍ଭା ସମା ନାରୀ ତପ୍ତାଙ୍ଗାର ସମଃ ପୁମାନ୍ ।

## କୃଷକ ଢ଼ମାଳି

୮୪୩୫. ଘୁମାଇଁ ଘୁମାଇଁ ତ କେତେ ଯାଉ ନିଦ
ଶୋଇଲା ଶେଯରେ ତ ହଜିଲା ବାହାବିଦ
ମୋର ବିହାବିଦ ତ ପାଇଥିଲେ ଦେବ
ଯେଉଁଥି ପାଇଁ ଅଳି ହେ କରୁଛ
ତହିଁରେ ଜଉମୁଦ ।
ଜଉମୁଦ ସୁଖେ ତ ଜଉମୁଦ ଥିବ
ଖୋସା କଣା କରି ଭ୍ରମର
ବାସନା ହରିନେବ ।

୮୪୩୬. ଘଣ୍ଟି ଗଢ଼େଇଲି ପିତଳ ମିଶେଇ
ସେ ଘଣ୍ଟି ବାନ୍ଧିଲି ବଉଳା ବେକେ ନେଇ
କାହିଁ ତ ହଜାଇଲୁ ରେ ବଉଳା
ଖାଲ ଖଣା ନେଇ ।

## ଦାଣ୍ଡଧୁଆ-ଶଗଡ଼ିଆ ଢ଼ମାଳି

୮୪୩୭. ଘଟେ ଘଟେ ଦେଖ ପୂରି ରହିଛନ୍ତି
ଘୋର ବିପତ୍ତିରୁ ତାରିବେ ଶ୍ରୀପତି

ଘେନ ତୁ ମନରେ ସବୁ କର୍ମ ଏଡ଼ି
ଘୋଷ ରହି ପାଦରେ ମନୁଆ
ମାୟାତ ଯିବ ଛାଡ଼ି ।

୮୪୩୮. ଘନ ଘନ ବଂଶୀ ବଜାନ୍ତି ନରହରି
ଅଶେଷ ବ୍ରହ୍ମାଣ୍ଡ ସର୍ବ ଘଟେ ପୂରି
ସେ ବଂଶୀ ଧ୍ୱନି ଶୁଣି ଆଲୋ ଲୋ ରାଧିକା
ଇନ୍ଦ୍ରଶାଳା ପୂରେ ରତ୍ନବେଦୀ ତହିଁ
ଚଉପାଶେ ହୀରା ଅଡ଼ଙ୍ଗ ଅଟଇ
ମଦନ ଆରତେ ହେଉଥାଉ ବାଇ
ବୁହ ବଂଶୀଧ୍ୱନି ଯେ ଯୋଗୀନ୍ଦ୍ର
ଘେନ ତୁ କହ୍ନାଇ ।

୮୪୩୯. ଘିଅ ଆଣିଥିଲି ଅଢ଼େଇଏ
ଗୁଡ଼ ଆଣିଥିଲି ଷଢ଼େଇଏ
ଚାଉଳ କୁଟିଲି ମାଣେ
ଛ କୋଡ଼ି କଲି, ନ କୋଡ଼ି କଲି
କୁଲା ପୋଛି କରି ଦିକୋଡ଼ି କଲି
ଭାଇ ଭଗାରିଙ୍କୁ ଯୋଡ଼ି ପିଠା ଦେଲି ।
ମୁଁ ସବା ଖାଇ ରଙ୍କୁଣୀ ନୁହେଁ,
ଯେ ମାଗେ ତାକୁ ହତାଏ ଦିଏଁ ।

୮୪୪୦. ଘୋଡ଼ାଇ ରଖ ତୋ ବାସ ଅଞ୍ଚଳ
ଚମ୍ପକ ଅଙ୍ଗି ତୁ ମୋ ହୃଦମାଳ
ବେଳୁ ବେଳ ପିକ ଶବ୍ଦ କଟାଳ
ବାଳି ଆସିବାରେ ବସାଅ କୋଳ
ଝିଙ୍କାରି ନାଦ ପ୍ରବଳ
କପୋତ ମଣ୍ଡୁକ ତିତିରି ଡାହୁକ
ପିକ ନାଦ କୋଳାହଳ ।

# ଚଇତ ପର୍ବ ଢ଼ମାଳି

୮୪୪୧. ଘଡ଼ିକି ମାଇଲି ଟିପା
ସିଦ୍ଧ ଠାକୁରାଣୀ ଘୋଡ଼ା ଆସିଅଛି,
ଦେହଯାକ ସୁନାଟିପା ।

୮୪୪୨. ଘର ବାନ୍ଧିଦେଲି ପାଞ୍ଚ ବଖରା
ଦାଣ୍ଡକୁ ମାନିଛି ପିଣ୍ଡା
ତୁମେ ଗୁଣମଣି ସାଙ୍ଗହୋଇବ
ଘର ଦୁଆରୀକି ଦିଣ୍ଡା ?
ଟିପିରି ପାଣିକି ଟେକିଲି ଛତା
ପଛକୁ ଆସିବ କଥା ।

୮୪୪୩. ଘରତ ଆମର ଆମେତ ତମର
ଆମକୁ ନ ଯିବ ଛାଡ଼ି
ତମର ଆମର ମାୟା ପୀରତି
ବାରମାସୀ ଫୁଲ କଢ଼ି
ଲଗାଇ ଦେଉଛ ତୁମେ ମୁହାଁସ
ଛାଡ଼ିନାହିଁ ରସବିଷ ।

୮୪୪୪. ଘଞ୍ଚାଳ (=ପ୍ରତିରୋଧ) ନ କର ମୋରେ,
ଅଛି କେ ତୁମ୍ଭ ବାହାରେ
ରବିଉଦୟ ପଶ୍ଚିମେ ହେଲେ
ମୋତେ କେ ରଖିବ ପୁରେ ?

୮୪୪୫. ଘରକଲୁ ଘୋରବନ
ଘନଶ୍ୟାମବିନା ନ ଦିଶେ ଆନ
ଘରେ ରହୁନାହିଁ ମନ ।

୮୪୪୬. ଘଇତା ମାଇପ ଖେଳ ସଙ୍ଗାତ ଲୋ
ଶାଳୀ ଭିଣେଇଙ୍କ ଖେଳ
ପଟା ଦୋଳି ମଜା ହୋଇବା ତୁଲ ଲୋ
ପୋଇଲିଏ, ଥିରି ଥିରି କରି ପେଲ ।

୮୪୪୭. ଘୋଡ଼ା ମୁଣ୍ଡେ ପାଟଫୁଲି
ଘୋଡ଼ା ଯାଇଥିଲା ବଜାର ବୁଲି
ଆସୁଥିଲା ଝୁଲି ଝୁଲି ।

୮୪୪୮. ଘର ବଖୁରିଏ ଲିପି ଆଣିଲି
ବାହାରେ ଡ଼େରିଲି ଖଟ
ଶିବ ଦେଉଳକୁ ଅନାଇ କହୁଛି
ବାଜୁଛି ସାରଳା ଘଣ୍ଟ ।

୮୪୪୯. ଘୋଡ଼ାକୁ ପିଟିଲି ଛାଟେ
ଘୋଡ଼ା ପଳାଇଲା ଡ଼ଗର ବାଟେ (=ଚଲାବାଟ)
ବୋଉ ଯିବ କେଉଁବାଟେ ।
ଡ଼ଗର ପଡ଼ିଛି ଗୁଡ଼ି (=ଗୋଡ଼ି)
ଦାଦାଙ୍କୁ ମାଗିଲି ହିଙ୍ଗୁଳା ପେଡ଼ି
ଖୁଡ଼ୀ ଦେଲେ କାନ ମୋଡ଼ି ।

୮୪୫୦. ଘର ଛେଇ (=ଛାଉଣି) ଦେଲି ପଟେ
ଘର ଛିଆ (=ଛାଉଣି) ମୂଲ ନ ଦେଲୁ ମୋତେ
କାଲି ବାହା ହେବି ତତେ ।

୮୪୫୧. ଘୁତୁ ଘୁତୁ ଘୁତୁ ଛୁଆଁ (=ଛୁଆ)
ଘେସର (=ଢାଗାର ନାମ) ବରିହା (=ବଢ଼େଇ)
ଗୁମୁନ ମୁହାଁ (=ଗୁମ ମାରିବା ଲୋକ)
ତୋର ଦଶୀ (=ନଖ ପାଖର ନରମ ଅଂଶ) ଖାଏ ନୂଆଁ ।

୮୪୫୨. ଘିଅ କୁଣ୍ଡି ପାଚିଲା କିରେ ତେଲ କୁଣ୍ଡି ପାଚିଲା
ଜଗତୀ ଉପରେ ଥାଇ ଦିଅର ଫୁଲଗୁଣା ଯାଚିଲା
ତୋର ଫୁଲଗୁଣା ମୋର ଫୁଲଗୁଣା
ପିଠି ଆଡ଼େ ପକା
ଦର୍ପଣ ଖର୍ପଣ, ସେହି ଦର୍ପଣ ଦେଖା,
ଧନ ମାନିଗଲେ ମଖା ।

୮୪୫୩. ଘରେ ଛନ ଛନ ବାହାରେ ମନ
ଭାଇଙ୍କି ବୋଇଲି କଉଡ଼ି ଗଣ ।
ସବୁ କଉଡ଼ି ଗୋ ନେପୁର ମୁଦି
ଅଣ୍ଟାକୁ ସୁନ୍ଦର ମାଣିଆ ଖଦି ।
କଣ୍ଠିଆଳି କାକୁଡ଼ି କଣ୍ଠି ବହନ
ଏ ସଙ୍ଗ ଛାଡ଼ଗୋ ନୀଳ ବଦନ ।
ଆସଗୋ ସଙ୍ଗାତ ଗାଧୋଇଯିବା
ମାଣିକର ଦୀପ ଜାଳି ଆଣିବା
ସୁବର୍ଣ୍ଣ କଳସ ଥାପି ଆସିବା
ବାପା ଯିବେ ମହିମକୁ, ଦାଦା ଯିବେ ମହମକୁ ।

୮୪୫୪. ଘରକୁ ସୁନ୍ଦର ଦିଶେ ଘରଣୀ ଥିଲେ
ଘରଣୀ ଥିଲେ କି ହେବ ପର ଆତ୍ମା ନ ଚିହ୍ନିଲେ ।
ଘରକୁ ସୁନ୍ଦର ଦିଶେ ପିଣ୍ଡା ପାରିଲେ
ପିଣ୍ଡା ପାରିଲେ କି ହେବ ପର ଆତ୍ମା ନ ବସିଲେ ।
କୁଳକୁ ସୁନ୍ଦର ଦିଶେ ବାଳକ ଥିଲେ
ବାଳକ ଥିଲେ କି ହେବ ପାଠ ବିଦ୍ୟା ନ ଶିଖିଲେ ।
ଗଛକୁ ସୁନ୍ଦର ଦିଶେ ଫଳ ଫଳିଲେ
ଫଳ ଫଳିଲେ କି ହେବ ପର ଆତ୍ମା ନ ଖାଇଲେ ।
ହରି ନାମ ନ ଧଇଲେ କୃଷ୍ଣନାମ ନ ଧଇଲେ
କିହେବ ଶୁଆ ପୋଷିଲେ ?
ଦେଉଳକୁ ଶୋଭା ଦିଶେ ଧ୍ୱଜା ବାନ୍ଧିଲେ
ଧ୍ୱାଜା ବାନ୍ଧିଲେ କି ହେବ ଦେଉଳେ ଦିଅଁ ନଥିଲେ ।
ମାଳା ଜପିଲେ କି ହେବ ପର ଆତ୍ମା ନ ଚିହ୍ନିଲେ
ଭକତ ହେଲେ କି ହେବ ପର ଦୁଃଖ ନ ଦେଖିଲେ ।

୮୪୫୫. ଘୋରଣାରେ ଘୋରି ଦେଲି ମାଣ୍ଡିଆ ରଚନା
ଗୋବିନ୍ଦ ବେକରେନା ଚାରିକଟା ସୁନା ।

ଗୋବିନ୍ଦ  ଚାଷକଲେ ବାରିମୂଳେ ଯାଇ
ଖରା ଚାରି ମାସ ଘଟଣା କହିବୁ ତୁହି ।
ଘୋଟଣା କହିଲେ ନନା କିସ ଦେବୁ ଲାଞ୍ଚ
ହସ୍ତକୁ ଦେବି ମାଲୋ ନୀଳାବତୀ କାଚ ।
ନୀଳବତୀ କାଚ  ମାଲୋ ଭାଙ୍ଗିଗଲେ ଯିବ
ସୁବର୍ଣ୍ଣର ଚୂଡ଼ି ଦେଲେ କାଳ ଯାକ ଥିବ ।

## ହଳିଆ ଢ଼ମାଳି

୮୪୫୬. ଘଟେ ଘଟେ ବ୍ରହ୍ମପୂରି ରହିଛି ଆତ୍ମାରୂପେ
ଘୋଟିଛି ତିନିପୁର ବିରାଟ ସ୍ୱରୂପେ
ଘଟଇ ଆକାଶେ ମହା ଆକାଶ ବିଶ୍ରାମ
ଘର କରି ଅଛି  ଚାରିଖାନିରେ
ସୁଷୁପ୍ତି ଗତେ ବ୍ରହ୍ମ ।

୮୪୫୭. ଘନଶ୍ୟାମ ପ୍ରଭୁ ମଦନମୋହନ
ଘୋଟି ରହିଛନ୍ତି  ଚତୁର୍ଦ୍ଦିଗେ ଜାଣ
ଘଟସୂତ୍ରେ ବାନ୍ଧ ବାନ୍ଧ ଆଣ୍ଟ କରି
ଘଟର ଶବଦକୁ ବସୁ ତୁ ଆବୋରି
ଘଟ ଛାଡ଼ି ଘଟ ଅନ୍ୟଦ୍ୱାରେ ରହ ଯାଇ
ଘୋଟିବ ଅତଳେ ହେ ମଛିନ୍ଦ୍ର
ଘାଣ୍ଟିଆ ଯିବେ ନାହିଁ ।

୮୪୫୮. ଘୋର ବନେ ରାମ ହରାଇ ଜାନକୀ
ଗଛ ବୃଛମାନେ ତୁମ୍ଭେ ଥାଅ ସାକ୍ଷୀ
ହର ବ୍ରହ୍ମା ହେଲେ ନିଶ୍ଚୟ ମାରିବି
ନ ଦେଲେ ଜାନକୀ ।

୮୪୫୯. ଘନା (=ଘଣା) କଟମଡ଼ ମୂଷଳ ଦିଏ ରଡି
ଘନା (=ଘଣା) ଖାଏ ଗୁଡ଼କି କୁଶାରି (=ଆଖୁ)
ହଳିଆ ଦଇତାରି ।

କୁଶାରି (=ଆଖୁ) ବାଡ଼ିର ବଡ଼ ବଡ଼ ଖଡ଼ା
ଖଡ଼ା ବିକି ପୋଢ଼ କି ଘେନିଛି
କୁଳିତା (=ପଧାନ) ଡ଼ଙ୍ଗା ବୁଢ଼ା ।

୮୪୬୦. ଘନଶ୍ୟାମ ବାବୁରେ ତୋହର ବୁଦ୍ଧି ନାହିଁ,
ଘରକରଣା କଥା ତୋତେ ଜଣା ନାହିଁ,
ଘରୁ ବାହାର କାଲି ହୋଇଛୁ ଘରକୁ ଯାଅ ତୁହି ।

## ପଲ୍ଲି ଢ଼ମାଳି

୮୪୬୧. ଘୋର ଗିରିଷମ ଦିନ
ଗୋଳି ଦିଅନ୍ତି ମୁଇଁ ଚୁଆ ଚନ୍ଦନ
ପରବାସେ ଗଲା ଧନ,
ମାଛ ମୁଁ ମାଇଲି ମୀନ
ଆଟିକାରେ ଦେଲି ଭାଲିଆ ଚିହ୍ନ
ବାପଘରେ ଗଲାଦିନ,
ନଡ଼ିଆ ଗୋଟାମା କଷି
ସରଗ ସୁନ୍ଦର ଭେଣ୍ଡିଆ ଆସି, କହିଗଲାପଦେ ହସି ।

୮୪୬୨. ଘରୁ ଯେତେବେଳେ ବାହାର ହୋଇଲି
ତୋ ନାମ ଧଇଲି ଚିତ୍ତେ
ମୋତେ ଯେତେବେଳେ ବିପତ୍ତି ପଡ଼ିବ
(ଭବାନୀ ଲୋ) ପଣତ ଦେବୁ ତୁରିତେ ।
ଘରୁ ଯେତେବେଳେ ବାହାର ହୋଇଲି
ଚାହିଁଲି ଚଉ ଦିଗକୁ
ଚଉଦିଗ ଯାକ ହେଲା ସୁଫଳ ଲୋ
(ଏବେ) ବର ମାଗୁଛି ଶିବଙ୍କୁ ।

୮୪୬୩. ଘର ବାଇଗଣ ପିତା ଲୋ ଗୋରୀ
ଲବଙ୍ଗ ଲତା
ତିନି ଦିନ କଣ୍ଟ ଦେବି ଲୋ ଗୋରୀ
ନ କରଚିନ୍ତା ।

୮୪୬୪. ଘରକୁ ଢ଼ୋଲା ବାଉଁଶ ଲୋ
ସାଙ୍ଗ ଘରକୁ ଢ଼ୋଲା ବାଉଁଶ
ସାହେବ ଚାକିରୀ ଛାଡ଼ି ନ ଆସିଲେ
ଖାଇବେ ମଶା ଡ଼ାଉଁଶ ।

୮୪୬୫. ଘରକୁ ଘର ଲାଗିଛି
ଖଣ୍ଡେଇତ ଘରେ ଝିଅ ବଢ଼ିଛି,
ରାଇଜ ମାଡ଼ି ପଡୁଛି ।

୮୪୬୬. ଘରକୁ କିମ୍ପାଇ ନିନ୍ଦୁ
ଘର ପୁଅ ପରଦେଶିଆ ବନ୍ଧୁ
କେତେ ବାହୁନାଇ କାନ୍ଦୁ ।

## ଓଷା ମନସା ଢ଼ମାଳି

୮୪୬୭. ଘିନେ ଗଉରା ! ଗଇଣ ମୁଣ୍ଡି, ମୋତେ କରିଥିବ ସିନ୍ଦୂରମୁଣ୍ଡି ।
୮୪୬୮. ଘିନେ ଗଉରା ଗଇଣ ମୁଣ୍ଡି, ମୋତେ କରିଥିବ ଆଁଶତୁଣ୍ଡି ।
୮୪୬୯. ଘିନେ ବେଲ ପତରି, ମୋତେ କରିଥିବ ତୁମ ଚତୁରୀ ।
୮୪୭୦. ଘିନେ କିଆ, ତୁମ ପାଦପଦ୍ମେ ହୋଇବି ଠିଆ ।
୮୪୭୧. ଘିନେ ଅଣସୋରିଷା, ମତେ କରିଥିବ ତୁମ ସରିସା ।
୮୪୭୨. ଘିନେ ବେଣା, ବାର ବରଷର ଖାଏ ପୁରୁଣା ।
୮୪୭୩. ଘିନେ ବରକୋଳି, ଜାଳେ ଛେଲା କାଠ, ମୋ ସ୍ୱାମୀ ନନ୍ଦ ଚାଟ ।
ସେ କୁଳେ ମୋ ସଉତୁଣୀ ଥାଉ, ଏ କୁଳେ ମୋ ଦିନ ଯାଉ ।
୮୪୭୪. ଘିନେ ଗିଲ, ପୁଅ ଝିଅ କରି କରେଁ ଗେଲ ।
୮୪୭୫. ଘିନେ ବାଉଁଶ, ଏକୁଳ ସେକୁଳ ବଢୁ ବଉଁଶ (=ବଂଶ) ।
୮୪୭୬. ଘିନେ କଣ୍ଟେଇ, ସୁନା ରୂପା କରି ଅଣ୍ଟେଇ ।
୮୪୭୭ ଘିନେ ବାଟ, ପିନ୍ଧେ ପାଟ ।
୮୪୭୮. ଘିନେ ଅପାମାରଙ୍ଗ ଦାନ୍ତ କାଠି
ବାଡ଼ ଦ୍ୱାରକୁ ବାଡ଼ି ଟାଟି, ଦାଣ୍ଡ ଦ୍ୱାରକୁ ସୁନା ଟାଟି ।
ଶ୍ରୀକୃଷ୍ଣ ଖାଉଥିଲେ ପାନ

ମୋ ତୁଣ୍ଡେ ଦେଇଗଲେ ଚୂନ
ଥୁ-ଉ କରି ପକେଇ ଦେଲି
ଗଙ୍ଗା ଜଳେ ସ୍ନାହାନ କଲି ।
ଅଚଳ ତୋଠରେ ନଚୋଳ ପାଣି
ଆଇ ଗୋ ମା, ଭାଇ ଗୋ ମା, ସୁଆଗି ଦିଆ ।

୮୪୭୯. ଘିନେ ଶାହାଡ଼ା, ଶହାଡ଼ା ବତୀ
ଶହାଡ଼ା ଘେନିଲେ ବିଷ୍ଣୁ ଭକତି,
ଶହାଡ଼ା ଘେନିଲେ କି ଫଳ ପାଇ
କୋଡ଼କୁ ନନ୍ଦନ ହାତକୁ ବାହି,
ଶାହାଡ଼ା ଚିତା, ପାଦେ ଅଳତା
କାଳେ କାଳେ ଥିବ ସିନ୍ଦୂର ଚିତା,
ଏକାଦଶୀରେ ମରିବି ନାହିଁ
ଦ୍ୱାଦଶୀରେ ମରିବି, ମଲେ ବିଷ୍ଣୁ ଭଗତି ପାଇବି ।

୮୪୮୦. ଘଇତା ମାଇପ ଗାଲି (=ଗାଳି), ବଇଠା ଲିଭା ତକ୍ ।
ଦାମ୍ପତ୍ୟ କଳହର କ୍ଷଣିକତା ।

୮୪୮୧. ଘଲି ଗାଲିଲ ଛାତା, କେନ୍ ବେଲେ କେନ୍ କଥା ।
ଜଗତ ପରିବର୍ତ୍ତନଶୀଳ, କେତେବେଳେ କେଉଁକଥା ଘଟିବ କହିହେବ ନାହିଁ ।

୮୪୮୨. ଘଇତା ପୋଟଳ ଚକୁଳି ଖାଇ ଅନ୍ଧ ବନିବା ।
ସ୍ତ୍ରୀର ଦୋଚାରୁଣୀ ପଣ ଦେଖି ମଧ ଜଳକା ପରି ରହିବା, ଯେପରି କିଛି ଦେଖିନାହିଁ । ସ୍ୱାମୀର ଚରିତ୍ର ହୀନତା ଓ ଅଯୋଗ୍ୟତା ଏଥିପାଇଁ ଦାୟୀ ।

୮୪୮୩. ଘଇତା କରିବା ।-ପର ପୁରୁଷକୁ ସ୍ୱାମୀ ରୂପେ ଗ୍ରହଣ କରି ରତି କରିବା ।

୮୪୮୪. ଘଇତା ପଛାକେ ମରୁ, ସଉତୁଣୀ ରାଣ୍ଡ ହେଉ ।
ନିଜର କ୍ଷତି କରି ପ୍ରତିବେଶୀ ଆତ୍ମୀୟ ଉପରେ ଦାଉ ସାଧିବା ।

୮୪୮୫. ଘଇତା ପଛକେ ହେଉ ସନ୍ତିଆ,
ଲୁଗା ହେଉ ତଉଁରିଆ (=ଧଡ଼ିଯୁକ୍ତ ମୋଟାଲୁଗା) ।

୮୪୮୬. ଘଇତା ମଲାକେବେ ନା ମନେ ପଡ଼ିଲା ଏବେ ।

୮୪୮୭. ଘଇତା ମାଇଲା କେବେ, ନା ମନେ ପଡ଼ିଗଲା ଏବେ ।

୮୪୮୮. ଘଡ଼ିକେ କି ସମୁଦ୍ର ଲଙ୍ଗିହୁଏ ।

୮୪୮୯. ଘଡ଼ିକେ ହାକିମି ପାହାଡ଼ ଗଢ଼େ ।- ହାକିମ ଅସମ୍ଭବ କାର୍ଯ୍ୟ ସାଧନ କରେ ।

୮୪୯୦. ଘଣା ବଳଦର ଗୋଠରେ କି ସମନ୍ଧ ?

ଯେ ନିଜର ପେଟଚିନ୍ତା ପାଇଁ ସର୍ବଦା କାର୍ଯ୍ୟବ୍ୟସ୍ତ , ସମାଜର ବିଭିନ୍ନ ଲୋକଙ୍କ ସହିତ ମିଶିବା ପାଇଁ ତାର ତର ନାହିଁ ।

୮୪୯୧. ଘରର ମହୁଲ ଶେଣୀ
କି ଘର ତୋଳିଛୁ ବଉଳ ବେଣୀ
ତୋର ମୁହଁରେ ନାହିଁକି ପାନି
କେଲି କରଞ୍ଜ ମାଳି ।

## ଘୁଘୁ ରାଣୀ ଢ଼ମାଳୀ

୮୪୯୨. ଘୁ, ଘୁ, ରାଣୀ, ପାଦେ ପାଦେ ପାଣି ।
ଘୁ, ଘୁ, ରାଣୀ ଆଣ୍ଠୁଏ ଆଣ୍ଠୁଏ ପାଣି ।
ଘୁ, ଘୁ, ରାଣୀ ଜଂଘେ ଜଂଘେ ପାଣି ।
ଘୁ, ଘୁ ରାଣୀ, ଅଣ୍ଟେ ଅଣ୍ଟେ ପାଣି ।
ଘୁ, ଘୁ, ରାଣୀ, ଛାତିଏ ଛାତିଏ ପାଣି ।
ଘୁ, ଘୁ, ରାଣୀ, ବେକେ ବେକେ ପାଣି ।
ଘୁ, ଘୁ, ରାଣୀ, ମୁଣ୍ଡେ ମୁଣ୍ଡେ ପାଣି ।
ଘୁ, ଘ, ରାଣୀ, ହାତ ଚାପୁଡ଼େ ପାଣି ।
ଏକବାଟ ଫିଟେଇଗା
ଟିକିଲି ମାଡ଼ ଖାଏଇଗା ।

୮୪୯୩. ଘଣ୍ଟା ନାହିଁକି ମାଦଳ ନାହିଁ, ଝିଙ୍କିରିଆ ଦେବତା ।

ଝିଙ୍କିରିଆ ଗ୍ରାମରେ ବ୍ରାହ୍ମଣ ମାନଙ୍କର ଉପାଧି ଦେବତା, ତେଣୁ ତାଙ୍କର ପୂଜାପାଇଁ ଘଣ୍ଟା ମାଦଳ ଦରକାର 'ପଡ଼େ ନାହିଁ ।

## ବାହୁନା ଢ଼ମାଳି

୮୪୯୪. ଘରୁ ବାହାରିଲି ମାଇଲି ମୀନ,
ଲଇଁ କରିଅଛ ରାଇଜ ହୀନ ।

ଘରୁ ବାହାରିଲି ମାଡ଼ିଲି ହାଡ଼,
ଭଉଣୀ କି ଧରି ମାରିବ ମାଡ଼ ।

ଘରୁ ବାହାରିଲି ମାଡ଼ିଲି ଖଡ଼ି,
ଭଉଣୀକି ଧରି ଲାଗିବ କଳି ।

ଘରୁ ବାହାରିଲି ମାଡ଼ିଲି କଣ୍ଟା,
ଜଇଁ କରିଅଛ ରାଇଜ ହଟା ।

୮୪୯୫. ଘରେ ନ ରହନ୍ତି ଗଉଡ଼େ ବଡ଼ ଅଧମ ଜାତି,
ବଛା ବୃନ୍ଦାଘେନି ବାଳକେ ବନେ ବୁଲନ୍ତି ନିତି ।
ଗୋପାଳ ମାନେ ବଣରେ ଦୁଃଖ ଭୋଗି ଏ ଜାତିକୁ କ୍ଷୀର, ଦଧି, ଘୃତ କାଳକାଳ ଧରି ଯୋଗାଇ ଆସୁଛନ୍ତି ।

୮୪୯୬. ଘଣ୍ଟଶିଳା ଭାଲୁ, କୁମାରଙ୍ଗିଆ ଗାଲୁ ।

୮୪୯୭. ଘର କଥା, ହରିକଥା, ଭାତଲୁଗା, ଚାରିକଥା ।

୮୪୯୮. ଘରକରଣା ଜାଣେ ଟୋକୀ, ଉପରକୁ ଲୁଗା ଦେଇଛି ଟେକି ।

୮୪୯୯. ଘରେ ନାହିଁ ବରହଁମ ଝାଣ୍ଡ, ପିଛାଲ ଆଡ଼େ ମେଛା ଆଣ୍ଡ ।

୮୫୦୦. ଘରେ ଅଛି ବାସିଯାଉ, ନିଆଁଲଗା ରାତିପାଉ ।

୮୫୦୧. ଘରେ ଫୂଟୂ ଫୂଟୂ କିଆ ବସା, ବାହାରେ ମଦନମୋହନ ଖୋସା ।

୮୫୦୨. ଘଡ଼ା ପଇସା, ନାଁ ଲୋଡ଼ା ପଇସା ।

୮୫୦୩. ଘଡ଼େକା ହରରଙ୍ଗ, ଗଧେକା ଏକ ରଙ୍ଗ ।

## ଚୈତିଘୋଡ଼ା ଢ଼ମାଳି

୮୫୦୪. ଘୋଡ଼ା ମୁଣ୍ଡେ ପାଟ ଫୁଲି ଘୋଡ଼ା ଯାଉଥିଲା ବଜାର ବୁଲି
ରାଉତରେ ରାତ୍ର ହେଲା ଦଶଘଡ଼ି ।
ଘୋଡ଼ା ମୁଣ୍ଡେ ଜବାଫୁଲ ମା ବାସେଳିଙ୍କ ପାଇଛି ବଳ
ସିପେଇରେ, ପଥର ଭାସୁଛି କୂଳ ।
ସିଂହଳ ଦୀପରେ ଘର କଇବର୍ତ୍ତ ନାମ ତାର
ରାଉତରେ, ବାସେଳି ସେବା ତାହାର ।
କନ୍ଧରେ ସିଧ ବାସେଳି ବଟ କୋରଡ଼ରେ ଜନମ ହେଲି

ରାଉତରେ ସମୁଦ୍ରକୂଳେ ଲାଗିଲି ।
ଘୋଡ଼ାର ସୁନା ଟାହିଆ ମିଥିଲା କଟକେ ଘୋଡ଼ାର ନାଆଁ
ସିପେଇରେ, ପୁରୁଣା ହୋଇଛି ନୂଆ ।
ଘୋଡ଼ାମୁଣ୍ଡେ ପାଟଫୁଲି
ସତେକି କାଳିଆ ମୋ ଦିନ ନବ ମନସିବା ବିତୁଥିଲି ।

୮୫୦୫. ଘରେ ଉପାସକୁ ବାହାରେ ଢ଼ମ, କେମନ୍ତ ସରିବ ଦିନ,
ମାଠିଆ ଉପରେ ଢ଼ମରେ, ମାଠିଆ ଉପରେ ଢ଼ମ ।

୮୫୦୬. ଘରେ ମୁଁ ରହିବି ଏକା
ବଳଦ ତୋରାଣୀ କିଏ ମୋହିଁବ
ନ ରହିବ ବାସି ଥକା ।
ବଅସ ଦିନେ ନଅସ ଘଇତା
ବୁଢ଼ିଦିନେ ହରି ମନ୍ଦିର ଚିତା ।

୮୫୦୭. ଘର ଆଗ ମାହାଜନ, ନଳି ଗୋଡ଼ ଘା
ବେକରେ ପଡ଼େ ପଘା ।

୮୫୦୮. ଘର ଗୁମର ଯେ ଗୋପେ ଦାଣ୍ଡରେ
ଯାତ୍ରା ଦେଖିଯାଏ ଘେନି ରାଣ୍ଡରେ ।
ମାଛକଣ୍ଟା ଫିଙ୍ଗେ ଗୋରୁ ହାଣ୍ଡିରେ
ଅଭବ୍ୟ କଥା ଧରଇ ତୁଣ୍ଡରେ ।
ମୁହଁ ଟାଣ କରେ ଦେଇ ଭଣ୍ଡରେ
ମିତ ବସାଇ ଯେ ଠକ ଧେଣ୍ଡରେ;
ଏମାନଙ୍କୁ ସବୁ ଗଣ ଭାଣ୍ଡରେ ।

୮୫୦୯. ଘିଅ ପିଠା ଯେବେ ହୁଏ ଚେମଡ଼ା
ପୋଷା କୁକୁର ହୋଇଲେ କୁମୁଡ଼ା
ଘୋଡ଼ା ଦେହରୁ ଛାଡ଼ିଲେ ଚମଡ଼ା
ଗ୍ରାମରେ ଯେବେ ପଡ଼ିରହେ ମଡ଼ା
ଯେତେ ଆଣିଲେ ନ ପୁରଇ ଘଡ଼ା
ଏହାକୁ କହି କରମ ପୋଡ଼ା ।

ଠଠଠ

# ନାଁଦିଆ (ପ୍ରହେଳିକା)

## -ଗ-

୮୫୧୦. ଗୋଟିଏ ମାଢ଼ି ଦାନ୍ତ ତାହାର
ଭାଙ୍ଗେ ସେ ଜଙ୍ଗଲ ବଣ
ଦାନ୍ତରେ ସେ ଧରେ ପୋକ
କୁହ ସେ କେଉଁ ଜଣ । (ପାନିଆ)

୮୫୧୧. ଗରମ ହେଲେ ତରଳି ଯାଏ
ଥଣ୍ଡା ହେଲେ ଟାଣ ।
ପୃଥିବୀର ଲୋକ
ଏହାର ଭକ୍ତ ଜାଣ । (ମହମ)

୮୫୧୨. ଗୋଟିଏ ବୁଢ଼ୀର ଗୋଟେ
ତୁଣ୍ଡ ତିନି ମୁଣ୍ଡ
ସକାଳ ହେଲେ ପୋଛି ହୁଏ
ନିତି ତୁଣ୍ଡ ମୁଣ୍ଡ । (ଚୁଲୀ)

୮୫୧୩. ଗୋଟେ ପେଟ ତିନି ମୁଣ୍ଡ
ମଝିରେ ନିଆଁ ଗୁଳା
ନ କହିପାରିଲେ ଭାଇ
ଦେବି କାନ ମୋଡ଼ା । ... (ଚୁଲା)

୮୫୧୪. ଗୋଟିଏ ଘରେ ଦୁଇ କବାଟ ପାଣି ଗଡ଼ି ପଡ଼େ
ପବନ ଆସି ପବନ ଯିବା ପରେ । (ଶର୍ଦ୍ଦି/ଶିଙ୍ଘାଣି)

୮୫୧୫. ଗଛ ନାହିଁ ପତ୍ର ଅଛି
ମୁହଁ ନାହିଁ କହେ କଥା
କହି ନ ପାରିଲେ ଖାଏ ମୋର ମଥା ।... (ବହି)

୮୫୧୬. ଗୋଟିଏ ଘର ଗିନା ସାତଟି
କହି ନ ପାରିଲେ କାଟିବି ତାର ନାକଟି । ... (ଓଉ)

୮୫୧୭. ଗୋଟିଏ ଗଛରେ ତିନୋଟି ତରକାରୀ
କହିପାରିବକି କେଉଁ ବେପାରୀ । (କଦଳି ଗଛ)

୮୫୧୮. ଗୋଟିଏ ଶିଙ୍ଘ ବାରଟି ଟାଙ୍ଗ (=ଗୋଡ଼)
କେଉଁ ପ୍ରାଣୀର ଅଛିରେ
ଜଳରେ ବାସକରି ଅଣ୍ଡା ପାରେ ଗଛରେ । (ଚିଙ୍ଗୁଡ଼ି ମାଛ)

୮୫୧୯. ଗୋଟିଏ ଗଛରେ ଗୋଟିଏ ବୁଢ଼ୀ
ଆଖି ତାର ବାର କୋଡ଼ି (=୧୨x୨୦)
ଆଖିତାର ନ କାଟି ଖାଇଲେ
ଗଳାରେ ଲାଗେ ସୁଡ଼ ସୁଡ଼ୀ । (ସପୁରୀ)

୮୫୨୦. ଗଛଟି ଝାମ୍ବୁରୁ ଝୁମ୍ବୁରୁ
ତା ତଳେ ଝୁଲେ ଠାକୁର । (ବାଇଗଣ)

୮୫୨୧. ଗଛଟିରେ ଧରେ ଶହ ଶହ ଫୁଲ
ଫୁଲ ଝଡ଼ି ଝଡ଼ି ଯାଏ, ଧରେ ନା ଫଳ । (ଗୋଲାପ ଫୁଲ)

୮୫୨୨. ଗୋଟିଏ ଗଛରେ ବହୁ ଫଳ
ଦେହ କଣ୍ଟା କଣ୍ଟା
ପାଚିଲେ ଯଦି ଛଡ଼ାଅ ତାକୁ
ହାତରେ ଲାଗିବ ଅଠା । (ପଣସ)

୮୫୨୩. ଗନ୍ଧ ଗୁହାରିଆ ମୂଳ
ରାମଚନ୍ଦ୍ର କହିଛନ୍ତି, ଚୋପା ନଥିବା ଫଳ । (କୁଆପଥର)

୮୫୨୪. ଗୋଟିଏ ବାଳିଆକୁ ସାତଟା ପନିକି
ମଝିରେ ଗୋଟାଏ ହଲୁଛି
ବାପ ବାହାଦିନ ପୁଅ ଜନମ
ନାଡି ଙ୍କାଁବାଳ ପଡୁଛି । (ଘର ଛପର/ବଳିତା)

୮୫୨୫. ଗଛ ଅଛି ଛାଇ ନାହିଁ
ତା ଫଳ କିଏ ଖାଏ ନାହିଁ । (ଝୋଟି)

୮୫୨୬. ଗଛ ନା ମଦନା, ଫୁଲ ଫୁଟେ ତିନି କେନା
ଫୁଲ ନା କଢ଼ି, ସେ ନ ପଡ଼େ ଝଡ଼ି । (କୁକୁଡ଼ାଚୂଳ)

୮୫୨୭. ଗଛଟି ମହାମେରୁ, ତା ପତର ସରୁ ସରୁ
ତା ଫଳଟି ବଙ୍କା, ଏହାକୁ ଯେ କହିବ
ପାଇବ ଷାଠିଏ ଟଙ୍କା । (ତେନ୍ତୁଳି ଗଛ)

୮୫୨୮. ଗିନାଟି ସରି ତୁଲ,
ଭାଙ୍ଗିଦେଲେ କଇଁ ଫୁଲ । (ନଡ଼ିଆ)

୮୫୨୯. ଗଛଟି ଲହ ଲହକା
ତାଫଳଟି ଷାଠିଏ ଟଙ୍କା । (ଧାନଗଛ)

୮୫୩୦. ଗଛ ଲଡ଼ବଡ଼ିଆ ପତ୍ର କଙ୍କଲପାତିଆ
ଛାଲି ବହୁତ କାମଦିଏ
ଗଛ ଦିହ ଦିହୁଡ଼ି ପରି ଜଳେ । (ବାଇଗବ)

୮୫୩୧. ଗଛ ମହାମେରୁ ପତର ସରୁ
ତାର ପୁଅ ନାଆଁ ଗଣ୍ଡିଆ ଗୁରୁ । (ତେନ୍ତୁଳି)

୮୫୩୨. ଗଛ ନାଁ ମଦନା, ବାର ବାହିକି ବାର ନାଁ
ପତ୍ର ଗୋଟିଏ କେ ଗୋଟିଏ ନାଁ । ... (ବର୍ଷ, ମାସ,ଦିନ)

୮୫୩୩. ଗଛଟି ଲଣ୍ଡା
ଉପରେ ବସିଛି ଫକୀର ପଣ୍ଡା । ...(ହାଣ୍ଡି, କୁମ୍ଭାରଚକ)

୮୫୩୪. ଗଛ ସେନଙ୍ଗା, ପତର ଲମ୍ବା
ତା ଫଳଟି ପୁଞ୍ଜା ପୁଞ୍ଜା
ଗୋଡ଼ ଉପରକୁ ମୁଣ୍ଡ ତଳକୁ । (ଅଦା)

୮୫୩୫. ଗଛ ଚାଖଣ୍ଡେ ପତର ଛତା
ତାର ଫଳ ଅଗଣତା । (ସାଗୁ)

୮୫୩୬. ଗଛଟି ଝାଇଁକି ଝିଙ୍କର
ଫୁଲଟି ମହାଦେବଙ୍କର
ଫଳଟି କଉଡ଼ି ବେପାର । (ରାଶି)

୮୫୩୭. ଗୋଡ଼ ଦିଟା ଲମ୍ବ ଲମ୍ବ, ବଗନୁହେଁ
ମଣିଷ ଖାଏ, ଗୋରୁ ଖାଏ, ବାଘ ନୁହେଁ ।
ରାତି ହେଲେ ଘରେ ପଶେ, ଚୋର ନୁହେଁ
ଗୋପପୁରେ ବଂଶୀ ବଜାଏ, କୃଷ୍ଣ ନୁହେଁ । ... (ମଶା)

୮୫୩୮. ଗୋଟାଏ କରାଣ୍ଡିକୁ (=କେରାଣ୍ଡି ମାଛ) ସାତଟା ପନିକି
ତେବେ ନ ଛାଡ଼ିଲା କାତି
ବାପ ବାହାଦିନ ପୁଅ ମଙ୍ଗନ
କୋଠାରେ ଖେଳୁଛି ନାତି । (ବାଇଗଣ)

୮୫୩୯. ଗାରୁ ଗାରୁ ହୋଇ ବୁଲି ଅଇଲି
ଧାପେ ନ ମିଳିଲା ମାନ
ଗୁରୁ ପଚାରନ୍ତି ଶିଷ୍ୟକୁ
କାହାର ଗୋଟିଏ କାନ । (ଲେଖନୀ)

୮୫୪୦. ଗୋଟିଏ ଅଁଳା ଡାଳି ପୋହଳା
ଛେଚିଲେ ବକଳ ନାହିଁ
ଖାଇ ଦେଇଥିଲେ ବୋହି ପଡୁଥାଏ
ସଂସାର ଭିତରେ ନାହିଁ । (କୁଆପଥର)

୮୫୪୧. ଗଙ୍ଗାକୂଳେ କାଳିମନ୍ଦିର ଟିଏ
ମାଆକୁ ଦର୍ଶନ କରନ୍ତି ସ୍ନେହେ
ଜୀବନ୍ତ ପ୍ରତିମା ନିଶ୍ୱାସ ବହେ
ତୁଳାରେ ପ୍ରମାଣ କରିଲେ କିଏ । (ସପୁରୀ, ପଣସ)

୮୫୪୨. ଗ୍ରୀଷ୍ମଋତୁହେଲେ ଝର ଯେ ପଡ଼େ
ଶୀତ ଋତୁ ହେଲେ କବାଟ ପଡ଼େ
ବରଷା ଋତୁରେ ଘର ଆଉଜା
କହିବି ସେ ଦ୍ୱାରେ ଉଡୁଛି ଧ୍ୱଜା । (ଲୋମକୂପ)

୮୫୪୩. ଗଣ୍ଠି ଗଣ୍ଠିଆରେ ପିଛ ଗଣ୍ଠିଆ
ଗଣ୍ଠି ଗୋଟି ଗୋଟି ସମତାଳୁଆ
ମାଡ଼ି ବସିଥାଏ ଜଙ୍ଘରେ ବସି
ଲିଙ୍ଗ ଯାଇଥିବ ଭିତରେ ପସି
ସେ ଲିଙ୍ଗରୁ ରସ ହେଲେ ବାହାର
ଦେବ ଲୋକ କଲେ ତାକୁ ଆହାର । (ଲହୁଣୀ,ଘିଅ)

୮୫୪୪. ଗଛ ଚାଖଣ୍ଡେ ପତର ଖଣ୍ଡେ,
ଦେ ମଉସା ମତେ ଖଣ୍ଡେ । (ଧୂଆଁପତ୍ର)

୮୫୪୫. ଗଛଟି ଚତରା,
ତା ଦେହକୁ ନ ପାଏ ଆହୁରା
ନାନା ରଙ୍ଗେ ଫଳ ଫଳଇ,
ବେଳବୁଡ଼କୁ ସରଇ । (ହାଟ)

୮୫୪୬. ଗଛର ନାଁ ଇରାବତୀ
ଖେନ୍ଦାଯାଏ ଚାରିକତି
ଫୁଲର ନାଁ ଭିନ୍ନେ ଭିନ୍ନେ ଜାତି । (ହାଟ)

୮୫୪୭. ଗଛ ପାଉଁଶିଆ, ଫଳ କାଙ୍କଡ଼
ଏ କଥାଟି ଯେ ନ କହି ପାରିବ
ତା ଶଶୁର ବୁଢ଼ା ମାଙ୍କଡ଼ । (ଏନ୍ଦୁଡ଼ି)

୮୫୪୮ ଗଛ ଲଗାଲଗି ଫଳିବା ପାଇଁ
ଫଳିଲା ପାଚିଲା, ଝଡ଼ିଲା ନାହିଁ (ଭେଣ୍ଡି)

୮୫୪୯. ଗଛ ସଲ ସଲ ପତର କେନା
ମୁଗନି କଦଳୀ ବଟରା ଚଣା । (ଶିମୁଳିଗଛ)

୮୫୫୦. ଗଛ ଢେଙ୍ଗା କୟାଁ,
ତା କୋଳେ ଶୋଇଛି କୋଦା ବିଲୁଆ । (ପଣସ)

୮୫୫୧. ଗଛଟି ନକ ନକ,
ତା ମଧ୍ୟେ ବସିଛି ବଢ଼ିଆ କାଙ୍କ
ବଢ଼ିଆ କାଙ୍କ ଉଡ଼ିଗଲା,
ଗାଁ ଯାକ ପୋଡ଼ିଗଲା । (ସୂର୍ଯ୍ୟ)

୮୫୫୨. ଗଛର ନାମ ମହାମେରୁ,ପତ୍ରତାର ଥାଳି
ଫୁଲତାର ସଦାଶିବ ମୁଣ୍ଡ ତାର କାଳି । (ପଦ୍ମଫୁଲ)

୮୫୫୩. ଗଛପତି ନୁହେଁ ଗଜଉପରେ
ଅମୃତ ନୁହେଁ ସେ ଅମୃତ ଝରେ
ଚୋରି ହାରି ନୁହେଁ ବନ୍ଧାହୁଅଇ
ହାତୀ ଘୋଡ଼ା ନୁହେଁ ଶାଳକୁ ଯାଇ । (ଆଖୁ)

୮୫୫୪. ଗଣେଶ ନୁହେଁ ସେ ମୁଣ୍ଡଟି ରଙ୍ଗା
ମହାଦେବ ନୁହେଁ ମୁଣ୍ଡରେ ଗଙ୍ଗା
ଇନ୍ଦ୍ରନୁହେଁ ନିତି କରେ ବୃଷ୍ଟି
ବ୍ରହ୍ମାନୁହେଁ ସେ ନିତି କରେ ସୃଷ୍ଟି । (ଉଇ)

୮୫୫୫. ଗମ୍ଭିରୀ ଭିତରେ ଦେଖି ଲମ୍ବ କରି
ଶୋଇଅଛି ମୁହଁ ତଳକୁ କରି । (ଢ଼ିଙ୍କି)

୮୫୫୬. ଗୁଣ କିଣିଥିଲା ମାଠିଆଟାଏ
ପୁଅ ବାହାକରି, ଝିଅ ବାହାକରି
ଆ ରହିଗଲା ତାଟିଆଏ । (କୃପଣତା)

୮୫୫୭. ଗୁଣି ଶିଖାଇ ବେକା,
ଯାଏ ତିନିଜଣ ଆସେ ଏକା । (ମଣିଷ)
(ଏକା ଆସେ, ଗଲାବେଳେ, ନିଜ ସାଙ୍ଗରେ ନିଏ ତା ଛାଇ ଓ ହାତଧରା ବାଡ଼ି ।)

୮୫୫୮. ଗୁଲୁଗୁଲିଆ ମଙ୍ଗଳେଇ ଭାଇ
ଟିକେ ଛୁଇଁଦେଲେ ବିଗିଡ଼ିଯାଇ (ବିରୁଡ଼ି)

୮୫୫୯. ଗେଡ଼ିହୋଇ ଗାଈଟିଏ
କୁଟା ଖାଏ ଗୋଛାଟାଏ । (ଚୁଲ୍ଲୀ)

୮୫୬୦. ଗୋଟିଏ ଶୋଇଛି, ଗୋଟିଏ ବସିଛି
ଗୋଟିଏ ମାଳି ଜପି ଜପି ଆସୁଛି ।
ତିନିଜଣ ଯାକ ହୋଇଲେ ରୁଣ୍ଡ
ଏ ତିନିଙ୍କର ପନ୍ଦର ମୁଣ୍ଡ
କିଏ କହିଦେବ ଦେଖିବା ଦେଖି ।... (ବ୍ରହ୍ମା,ମହାଦେବ,କାର୍ତ୍ତିକ,
କୁମ୍ଭକର୍ଣ୍ଣ, ରାବଣ)
(୧) ମହାଦେବ ଶୋଇଛନ୍ତି, କାର୍ତ୍ତିକ ବସିଛନ୍ତି । ଏ ସମୟରେ ବ୍ରହ୍ମା ପହଞ୍ଚିଛନ୍ତି ।
(୨) କୁମ୍ଭକର୍ଣ୍ଣ ଶୋଇଛି, ରାବଣ ବସିଛି, ବ୍ରହ୍ମ ପହଞ୍ଚିଛନ୍ତି ।

୮୫୬୧. ଗୋଟିକ ଉପରେ ଗୋଟିଏ ବସେ
ଗୋଟିଏ ମାଳି ଜପି ଜପି ଆସେ
ତିନି ଜଣ ଯାକ ହୋଇଲେ ରୁଣ୍ଡ
ତିନି ଜଣଙ୍କର ଦଶଟି ମୁଣ୍ଡ
ତିନି ଜଣଙ୍କର କୋଡ଼ିଏ ଆଖି
କିଏ କହିଦେବ ଦେଖିବା ଦେଖି ।...(ମହାଦେବ, ବୃଷଭ,ବ୍ରହ୍ମା,ପାର୍ବତୀ)
ମହାଦେବ ବୃଷଭ ପିଠିରେ ବସିଥିବା ବେଳେ ବ୍ରହ୍ମା ମାଳି ଜପି ଜପି ଆସୁଥିଲେ । ତିନିଜଣ ଏକାଠି ହେଲେ । ପାର୍ବତୀ ମହାଦେବଙ୍କର କୋଳରେ ବସିଥିଲେ । ସେମାନଙ୍କର ମୋଟରେ ଦଶଗୋଟି ମୁଣ୍ଡ (ମହାଦେବ-୫+ବ୍ରହ୍ମା-୪ + ପାର୍ବତୀ-୧ ) । ମହାଦେବ ଅନନ୍ତଶାୟୀ ବିଷ୍ଣୁଙ୍କର ନାଭି କମଳରେ ବ୍ରହ୍ମାଙ୍କୁ ଦେଖିବାକୁ ଆସିଥିଲେ । ସେମାନଙ୍କର ୨୦ଟି ଆଖି, (ମହାଦେବ -୧୦ + ବ୍ରହ୍ମା-୮ + ବିଷ୍ଣୁ-୨ ) ।

୮୫୬୨. ଗୋଟିଏ ଶିଂଷାରେ ଘର ପୂରି । (ଦୀପ)

୮୫୬୩. ଗୋସେଇଁ ଗୋଇେସଁ, ମୁଣ୍ଡେ ମୂଳା ସାଇଁ
କହ ବନ୍ଧୁ ବୁଲୁଥାଏ ସେ ମଶାଣି ଭୂଇଁ । (ମହାଦେବ)

୮୫୬୪. ଗୋସାଇଁ ବୋଇଲେ ଶୁଣ ଭେଣ୍ଡିଆ
ଫୁଲ ପୁଟି ଅଛି ଗୋଟା ମୁଣ୍ଡିଆ
ଭେଣ୍ଡିଆ ବୋଇଲେ ଶୁଣ ଗୋସାଇଁ
ଫୁଲ ଫୁଟିଅଛି ପତର 'ନାହିଁ । ( ଶିଝୁ ଗଛ)

୮୫୬୫. ଗୋଟିଏ ବାଉଁଶ ପତା, ତହିଁରେ ଷାଠିଏ ଗଣ୍ଠି
ଯେ କହିଦେବ ସେ ନେବ ସୁନା କଣ୍ଠି । (ତାଳପତ୍ର ଛତା)

୮୫୬୬. ଗଛପଢ଼େ ଯୋବାନ ଛିନେ । (ଖଟ)

୮୫୬୭. ଗୁଛ ତଲେ ଲୋ ଛୁଆ । (ବାଇଗଣ)

୮୫୬୮. ଗୁଟେ କନା ବାରବାଟି । (ଛତା)

୮୫୬୯. ଗୋଟ୍ ମାରିଛନ୍ ଗୋବର ନାଇଁ । (ହାଟ)

୮୫୭୦. ଗାଈ ନୁହେଁ ତାର ଶିଂଗ ଦୁଓଟି,
ମଣିଷ ନୁହଁଇ ଚାଲଇ ବାଟ
ବଡ଼ ଦେଉଳରେ ପଡ଼େ କବାଟ । (ଗେଣ୍ଡା)

୮୫୭୧. ଗଛେ ଫଳିଅଛି ନୁହଁଇ ଫଳ
ଚକ୍ର ନୁହେଁ ସେହି ଚକ୍ର ଆକାର
ପୁଷ୍ପ ନୁହେଁ ସେହି ପୁଷ୍ପରେ ସାର
ଖାଇଲେ ଲାଗଇ ବଡ଼ ମଧୁର । (ମହୁ)

୮୫୭୨. ଗୋଟିକ ଉପରେ ଗୋଟିଏ ବସେ
ଆଉ ଗୋଟିଏ ଉପରେ ମାଳି ଜପି ଜପି ଆସେ
ତିନି ଜଣ ଯାକ ହୋଇଲେ ରୁଣ୍ଡ
ତିନି ଜଣଙ୍କ ସତର ମୁଣ୍ଡ । (କାର୍ତ୍ତିକ,ଶିବ,ରାବଣ)
(କାର୍ତ୍ତିକ ଓ ମୟୂର- ୨ + ଶିବ-୫+ରାବଣ-୧୦)

୮୫୭୩. ଗୋଟିଏ ମାଠିଆ ନଅଟି କଣା
ବଜାଏ ତାହାକୁ କଳା ଅଗଣା । (ବଂଶୀ)

୮୫୭୪. ଗ୍ରାମକୁ ଗିଳିଲା ନଦୀକୁ ଗିଳିଲା
ଗିଳିଗଲା ବନ ଭୂଇଁ
ଆହୁରି ଆକାଶ ସୂର୍ଯ୍ୟଚନ୍ଦ୍ର ଗିଳେ
କିଏ ସର୍ବଗିଳା ସେହି । (ମେଘ ଅନ୍ଧାର)

୮୫୭୫. ଗଙ୍ଗାଗଲି ଗୟା ଗଲି, ଡ଼େଇଁ ପଡ଼ିଲି ଉତ୍ତର
ପୂର୍ବ ଦିଗରେ ଦେଖି ଆସିଲି ଫଳ ଉପରେ ପତର... (ଗଇସ )

୮୫୭୬.ଗଛର ନାମ ତରକାରୀ/ଭିତରେ ଥିଲେ ଉପର ଖାଏ
ତାର ନାମ ତରକାରୀ । (ପାକସ୍ଥଳୀ)

୮୫୭୭.ଗୋଟିଏ ପିଲା ସାମ୍ନାରେ ଗୋଟିଏ ପିଲା
ଗୋଟିଏ ପିଲା ପଛରେ ଗୋଟିଏ ପିଲା
ଦୁଇଟି ପିଲା ମଝିରେ ଗୋଟିଏ ପିଲା ।
କେତୋଟି ପିଲା ? ... (ତିନୋଟି ପିଲା)

୮୫୭୮.ଗଛଟି ଚାଲିଗଲା, ପତ୍ର ପଡ଼ିରହିଲା । (ପାଦ)

୮୫୭୯.ଗୋଟିଏ ଲମ୍ବା ଧଳା ଅମାର
ଦୁଇଟି ଛାତ ଉପରେ ତାର
ନଥିଲା, ନାହିଁ ତା' ଦୁଆର । (ଅଣ୍ଡା)

୮୫୮୦.ଗୋଟିଏ କଳସୀରେ ଦୁଇପ୍ରକାର ପାଣି
ଗୋଳିଆ ଓ ପରିଷ୍କାର ସମ୍ପୂର୍ଣ୍ଣ ଭରଣୀ । (ଅଣ୍ଡା)

୮୫୮୧.ଗୋଟିଏ ଗିଲାସରେ ଦି'ରକମ ପାଣି । (ଅଣ୍ଡା)

୮୫୮୨.ଗରୁଙ୍କ ଆକାର ଧରି ଗୁରୁପତ୍ନୀ ହରେ,
ସେଇଜନ କେଉଁଜନ କ'ଣ ନାମ ତାର । ... (ଇନ୍ଦ୍ର)

୮୫୮୩.ଗୁରୁପତ୍ନୀ ହରଣାର୍ଥେ କାହାର ଯକ୍ଷ୍ମା ରୋଗ ହୁଏ । (ଚନ୍ଦ୍ର)

୮୫୮୪.ଗଛରେ ଜନମ ତାର ତିନି ବର୍ଣ୍ଣର ନାମ,
ଅଥବା ବସତି ତାଙ୍କ ନାରାୟଣ-ଧାମ ।
ଫଳ ଫୁଲେ ଦେବକୁଳେ ପାଉଁ ଦରଶନ,
ଧନ ପାଇଁ ତାଙ୍କ ପୂଜା କରେ ସର୍ବଜନ ।
ମଧ୍ୟାକ୍ଷର କାଟ ଯେବେ ଲାଗେ ସେ ପୂଜାରେ,
କହିଲ ଏପରି ବସ୍ତୁ ଅଛିକି ଧରାରେ । ...(ଦେବୀ କମଳା,
ଧନ ଓ ଐଶ୍ୱର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ) ।

-ଘ -

୮୫୮୫ ଘରେ ଘରେ ବୁଲେ ଧଳା କୁକୁର (ବାସନ)
୮୫୮୬. ଘରେ ଅଛି କନକ ଚମ୍ପା, ନିତି ବୁଡ଼ିମରେ (ବାସନ)
୮୫୮୭ .ଘବ୍‌ଡ଼ୋଲୁ ପକାଇ ଦେଲି
ଉର୍କୋ ଉର୍କୋ ମାଡ଼ିଦେଲି । (ଯୋତା)
୮୫୮୮. ଘିଂଚି ଆସିଲି ଡୁଁଗି ଦେଖିଲି । (ମୁଗୁରା)
୮୫୮୯. ଘିଡ଼ ଘିଡ଼ କରେ ଚକ୍ ଚକ୍ କରେ
ପଁଅରା ପଖନ ବାସରି ପଡ଼େ । (ରୁଗୁଡ଼ା ଛତୁ)
୮୫୯୦. ଘର ନାହିଁକି ଦୁଆର ନାହିଁ, ଶବଦର ମୁଁ ଜାତ
ଏବେ ଦେଖିଲାଣି ଘରେ ଘରେ
ମୋତେ କଲେଣି ରାତିରେ ମିତ । (ବିଜୁଳୀବତୀ)
୮୫୯୧. ଘଣ୍ଟି ଘାଗୁଡ଼ି ବଜେଇ ବଜେଇ
କିଏ ପୁରସ୍ତମ ଯାଉଛି
ନଈରେ ଯାଉଛି କାଳିଆ ଘୋଡ଼ା
ପାଣି ଚକ ଚକ ହେଉଛି । (ମେଘ ଘଡ଼ଘଡ଼ି ଓ ବିଜୁଳି)
୮୫୯୨. ଘୋଡ଼ା ହୋଇକରି ନଖାଏ ଦାନା
ନାଚୁଥାଏ ଦୁଇ ଗୋଡ଼ରେ ଅନା (ଚଇତି ଘୋଡ଼ା)
୮୫୯୩. ଘୋଟି ରହିଅଛି ଏହି ସଂସାର
ଭଲମନ୍ଦ ତାର ନାହିଁ ବିଚାର
ତା ପାଲରେ ସର୍ବେ ଅଛନ୍ତି ପଡ଼ି
ନଚାଉଛି ସେହି ଘଡ଼ିକି ଘଡ଼ି । (ମାୟା)
୮୫୯୪. ଘରୁ ବାହାରିଲେ ପୂର୍ବ ଦିଗରେ
ଦିବା ପ୍ରହରକ କାଳ ବେଳାରେ
ପଛରେ ଗୋଡ଼ାଇ ଗଲା ଅସୁରେ
ହାଣିଲେ ମାରିଲେ ସେହୁ ନ ମରେ । (ନିଜର ଛାଇ)
୮୫୯୫. ଘର ତାର ନିଜ ସରଣୀ, ଆସେ ଯାଏ ସେ ନିରନ୍ତର
ଦିନେ ସେହୁ ପଳାଇଯିବ,
ଅଦେଖା ସାଙ୍ଗ ଅଟେ ତାର । (ପ୍ରାଣବାୟୁ)

୮୫୯୬. ଘନ କାଳ ହେଲେ ଆସଇ ସେହି
ଲୁଚକାଳି ଖେଳେ ଆକାଶେ ରହି । (ବିଜୁଳି)

୮୫୯୭. ଘଟକ ମାନେ ଯେ ବଡ଼ ଚତୁର
ନାନା ଦେଶ ନିଜ ଦେଶ ଆଚାର
ସନ୍ଧି ବିଗ୍ରହରେ ସେ ଆଗୁସାର
ରାଜ୍ୟ ହାନୀଲାଭ କରନ୍ତି ସ୍ଥିର । (ଦୂତ)

୮୫୯୮. ଘସି ଦେଉଥାଏ ଦାନ୍ତ ତାହାର
ଲୁହା କାଠ ଭାଗ କରେ ବାହାର । ... (କରତ ବା ଆରି)

୮୫୯୯. ଘର ଚାରିପାଖ ଅସଂଖ୍ୟ କଣା
ମୁହଁ ମାରିଦେଇ ଏଠାରୁ ପଳା । ... (ମଶାରୀ ଓ ମଶା)

୮୬୦୦. ଘର କରିଲେ କରିତେ ହୁଏ
ଶୋଇତେ ଗଲେ ଦେଇତେ ହୁଏ । ...(କବାଟ ଓ ରତିଦାନ)

୮୬୦୧. ଘନକାଳ ହେଲେ ଆସଇ ସେହି
ଲୁଚକାଳୀ ଖେଳେ ଆକାଶେ ରହି । (ବିଜୁଳୀ)

୮୬୦୨. ଘଡ଼ିକେ ମରେ, ଘଡ଼ିକେ ଘରଦ୍ୱାର କରେ । (ନିଦ୍ରା ଓ ଜାଗ୍ରତ)

୮୬୦୩. ଘର ଅଛି ବାଟ କାହିଁରେ
ଦୁଆର କରିଛି ଘାଟ କାହିଁରେ । (ମଶାରୀ)

୮୬୦୪. ଘଟଣ ପୁରୁଷ ବିଧାତା କରି
ଅସ୍ଥି ଚର୍ମ ମାଂସ ନାହିଁ ତାହାରି
ମୁଖ ନାହିଁ ତାର କାଖ ବିସ୍ତାରୀ
ମଣିଷ ଗିଳଇ ହସ୍ତକୁ ଧରି
ରଖଇ ଗର୍ଭରେ ବାନ୍ତି କରଇ ଧରଣୀ ଉପରେ । ... (ଆଖୁଘଣା)

୮୬୦୫. ଘରର ଉପରେ ଘର
ଘରର ଉପରେ ବସିଛି ସୁନାର ଚକ୍ରଧର ... (ବୁଢ଼ୀଆଣୀ ଜାଲ)

୮୬୦୬. ଘିରି ଘିରାଇ, ଚାରିପାଖ ଧରି ଯାଉଛି
ମଝିରେ କଣା, ଦେଶ ଲୋକ ଦେଖି
ହୋଇଥିଲେ ବଣା । (ଚକି)

୮୬୦୭. ଘର ଭିତରେ ଘର,ତାର ନାହିଁ ଦ୍ୱାର (ମଶାରି)

୮୬୦୮. ଘୁମେଇ ଥିଲା ଚାରିପାଦିଆ । (ବେଙ୍ଗ)

୮୬୦୯. ଉପରେ ପଡ଼ିଲା ନି ପାଦିଆ । (ସାପ)

୮୬୧୦. ଟେକି ନେଇଗଲା ଦି ପାଦିଆ । (କୁଆ)

୮୬୧୧. ଘର ବୋଲି କଣେ,ଢ଼ିଙ୍କି ପଡ଼ିଛି ପଣେ
ଶୁଖାଇ ଦେବାକୁ ଜଣେ । (ଜିଭ)

୮୬୧୨.ଘର ଅଛି ଦୁଆର ନାହିଁ,
ମଣିଷ ଅଛି ଶବ୍ଦ ନାହିଁ,
ଘରର ଛାତ ମାଟି ଦିଆ,
ଆଲୁଅ ପଶିବାର ଜାଗା ନାହିଁ । (କବର)

୮୬୧୩.ଘର ପାଖରେ କାଠର ଗାଈ
ବର୍ଷ ବର୍ଷ ଦୁଧ ପାଇ । (ତେଲଘଣା, ଖଜୁରୀ ଗଛ)

୮୬୧୪.ଘଡ଼ି ଚାଲେ ଅବିରାମ
ଟିକ୍ ଟିକ୍ ଟିକ୍
କେଉଁ କେଉଁ କଥାରେ କୁହେ ଠିକ୍ ଠିକ୍ । (ଝିଟିପିଟି)

୮୬୧୫.ଘର ଭିତରେ ଘର
ନାଚନ୍ତି କନ୍ୟା, ବର । (ମଶାରି)

୮୬୧୬.ଘର ପଛରେ ନଡ଼ା ବଳା
କି ହେବ ତୁମର ପିଇସା ଶଳା । (ବାପା)

୮୬୧୭.ଘଣା ଭିତରେ ଗୁଡ଼ ଦେଲି
ତେବେ ତ ମୋତେ ପାଇଲ
ମୁଣ୍ଡ ଉପରେ ଥାଏ ବସି,
ଭାଗ୍ୟର ଲିଖନ ନେଇ । (କପାଳ)



# ରଢ଼ି ପ୍ରୟୋଗ

## -ଗ-

୮୬୧୮. ଗଅଁଠ ଗଣ୍ଠିଆ । - ବହୁ ଗ୍ରନ୍ଥିଯୁକ୍ତ (ଲୁଗା)।

୮୬୧୯. ଗଅଁଠଗଣ୍ଠିଆ ପାଟ ।-ଛିଣ୍ଡା କନା ।

୮୬୨୦. ଗଇଁଠାଳ ଫିଟା ।

ବର-କନ୍ୟାଙ୍କ ଚନ୍ଦ୍ର ବନ୍ଦାପନା ପରେ ବିବାହ ବେଦୀରେ ପାଞ୍ଚ ଓ ବଉଳପାଟରେ ପକାଯାଇଥିବା ଗଇଁଠାଳ ଫିଟାଯିବା ବିଧି ।

୮୬୨୧. ଗଉଁ ଭାଙ୍ଗିବା ।

ଅନ୍ୟର ଅଭିମାନ ବା ଗର୍ବ ଭାଙ୍ଗିବା ।

୮୬୨୨. ଗଉଣିଏ ଗେଲ- ଅତ୍ୟଧିକ ଆନନ୍ଦ ।

୮୬୨୩. ଗଙ୍ଗାବାଡ଼ି ।

କେଶରୀବଂଶର ରାଜା ଅନନ୍ତବର୍ମା ଦାକ୍ଷିଣାତ୍ୟର କର୍ଣ୍ଣାଟ ପ୍ରଦେଶରୁ ଆସି ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଦକ୍ଷିଣ-କଳିଙ୍ଗର ଯେଉଁ ସ୍ଥାନ ଅଧିକାର କରିଥିଲେ ତାହା ଗଙ୍ଗାବାଡ଼ି ନାମରେ ଖ୍ୟାତ ଥିଲା । ସେହି ରାଜ୍ୟର ରାଜଧାନୀର (ପାରଳାଖେମୁଣ୍ଡିର ମୁଖଲିଙ୍ଗ ନଗରୀ) ନାମ ଗଙ୍ଗାବାଡ଼ି ଥିଲା । ଗଙ୍ଗାବାଡ଼ିରେ ରାଜତ୍ୱ କରିବାରୁ ଅନନ୍ତବର୍ମାଙ୍କ ବଂଶ ଗଙ୍ଗବଂଶ ନାମରେ ପରିଚିତ । ଅନନ୍ତବର୍ମା ପ୍ରଥମେ ଗଙ୍ଗାବାଡ଼ି ଅଧିକାର କଲେ ଓ ଅଳ୍ପ କାଳ ମଧ୍ୟରେ ଗଙ୍ଗବଂଶର (ଖ୍ରୀଷ୍ଟୀୟ ୧୦୨୪-୧୪୩୫) ପ୍ରଭାବ ସମସ୍ତ ଦକ୍ଷିଣ-କଳିଙ୍ଗ ଅର୍ଥାତ୍ ସୀମାଚଳଠାରୁ ଋଷିକୁଲ୍ୟା ଓ ଜୟପୁର ଅଞ୍ଚଳରେ ବିସ୍ତୃତ ହେଲା ।

୮୬୨୪. ଗଛ ଉତାରିବା ।

ମଞ୍ଜିରୁ ଉଠିବା ଗଛ କିମ୍ବା ଚାରା ଗଛ ସତେଜ ଓ ବଡ଼ ହେବା ପର୍ଯ୍ୟନ୍ତ ତାହାର ଯତ୍ନ ନେବା ।

୮୬୨୫. ଗଜଭୁକ୍ତ କପିତ୍ଥବତ୍ ।

ହାତୀ ଖାଇଥିବା କଇଥ ଫଳ ପରି ବାହାରେ ଅକ୍ଷୁଣ୍ଣ କିନ୍ତୁ ଭିତର ଫମ୍ପା- (ପ୍ରବାହ ଅଛି ଯେ, ହାତୀକୁ କଇଥ ଫଳ ଖାଇବାକୁ ଦେଲେ ହାତୀ ଲଣ୍ଡିରେ କଇଥଟି ଗୋଟାସୁଦ୍ଧା ବାହାରେ; କିନ୍ତୁ ସେ କଇଥ ମଧ୍ୟରେ ଶସ ନ ଥାଏ) । ଗଜ ଏକ କୀଟ ବିଶେଷ; ଏହି କୀଟ ବାହାରପଟ କଣା ନକରି କଇଥର ଭିତର ଅଂଶତକ ଖାଇଯାଏ ।

୮୬୨୬. ଗଡ଼୍‌ଦମ୍‌ଗୋଲ୍ ।-ହଟ୍ଟଗୋଳ, ଦଙ୍ଗାହାଙ୍ଗାମା; କଳିଗୋଳ ।

୮୬୨୭. ଗଡ଼ତ ପଡ଼ତ ।

ଗୋପନ କରିବା । ଭୂମିରେ ଲୟହୋଇ ଶୋଇବା ବା ଗଡ଼ିବା । କୌଣସି କାର୍ଯ୍ୟ ଶୀଘ୍ର କରା ନ ଯାଇ ପଡ଼ି ରହିବା ଅବସ୍ଥା ।

୮୬୨୮. ଗଡ଼ ପଡ଼ିବା ।

ଶରୀର ଅବସନ୍ନ ହେବା, ଭୂମିରୁ ଉଠିବାକୁ ଶକ୍ତି ନ ରହିବା, ଅଳସୁଆ ହୋଇ ଶୋଇ ରହିବା ।

୮୬୨୯. ଗଡ଼ଫସଲ ।-ଭଣ୍ଡାଭଣ୍ଡି କରିବା, ଦଗାବାଜି, ପ୍ରତାରଣା ।

୮୬୩୦. ଗଡ଼ମ୍ ପକାବା ।

ଅତିଚଢ଼ା ଦାମରେ କୌଣସି ଦ୍ରବ୍ୟକୁ ନେବାପାଇଁ ଅନ୍ୟକୁ ବାଧ କରିବା ।

୮୬୩୧. ଗଡ଼ମଠୁଆ ।-ମଠୁଆ; ଗଣ୍ଡି ଅଳସୁଆ; ଦୀର୍ଘସୂତ୍ରୀ ।

୮୬୩୨. ଗଡ଼ମାରୁ ।-ଡ଼କାୟତି, ଗଡ଼ ଜୟ କରିବା ପରେ ଲୁଣ୍ଠନ ଓ ଅତ୍ୟଚାର ।

୮୬୩୩. ଗଡ଼ମାଳିଆ ।

ଗଡ଼ଜାତର ଧନୀ ଓ ରାଜଦ୍ୱାରରେ ସମ୍ମାନିତ ପରିବାର ବା ବଂଶ । ଓଡ଼ିଆ ଭଣ୍ଡାରି ଜାତିର ଶାଖା-ଭେଦ ।

୮୬୩୪. ଗଡ଼ାଖୁରୁଡ଼ ।-ଷଢେଇରୁ ସମ୍ପୂର୍ଣ୍ଣରୂପେ ଛାଡ଼ିଯାଇ ଥିବା ଖୁରୁଡ଼ ନଡ଼ିଆ ।

୮୬୩୫. ଗଡ଼େଇତଡ଼େଇ ମାରିବା ।-ଦୟାହୀନ ଭାବରେ ନିର୍ଦ୍ଧମ ମାଡ଼ ଦେବା।

୮୬୩୬. ଗଣନ ମହାପାତ୍ର ।- ରାଜାଙ୍କ ଅର୍ଥ ବିଭାଗର ମନ୍ତ୍ରୀ ।

୮୬୩୭. ଗଣଶ ବେମାରୀ ।- ଗର୍ଭ ଧାରଣ ।

୮୬୩୮. ଗଣ୍ଠି ଫେରାଇବା ।

ମେଳି ବାନ୍ଧିବା ଉଦ୍ଦେଶ୍ୟରେ ଗ୍ରାମେ ଗ୍ରାମେ ପ୍ରଜାଙ୍କୁ ମତାଇବା ପାଇଁ ମେଳି ବାନ୍ଧିବା ସୁଚକ ଘାସର ଗଣ୍ଠିକୁ ଏକ ଗ୍ରାମରୁ ଅନ୍ୟ ଗ୍ରାମକୁ ପଠାଇବା ।

୮୬୩୯. ଗଣ୍ଡବୁଦ୍ଧିଆ ।-ମୋଟା ବୁଦ୍ଧିଆ, ନିର୍ବୋଧ ।

୮୬୪୦. ଗଣ୍ଡଭେର(ରୁ)ଣ୍ଡ ।-ଗଣ୍ଡଭୈରବ ।

୮୬୪୧. ଗଣ୍ଡଭୈରବ ।-କାହାଣୀ ବର୍ଣ୍ଣିତ ବିରାଟ କାଳ୍ପନିକ ପକ୍ଷୀ ।

୮୬୪୨. ଗତର ପୋଷା ।-ଦେହ ଧାରଣ ।

୮୬୪୩. ଗତର ଖଟେଇବା । - ଗତରଖଟିବା । ଅନ୍ୟକୁ କଠିନ କାମରେ ଲଗାଇବା ।

୮୬୪୪. ଗତର ଖଟିବା ।-ଶାରୀରିକ ପରିଶ୍ରମ କରିବା, ସର୍ବଦା ପାଇଟି କରିବା ।

୮୬୪୫. ଗତାଗଡ୍ ।-ଗୁପ୍ତ ପ୍ରଣୟ, ଗୁପ୍ତ ମିଳନ, ଗୁପ୍ତ ସହବାସ ।

୮୬୪୬. ଗତାନି ପତାନି ।- ପରମ୍ପରାକ୍ରମେ; ପୁରୁଷାନୁକ୍ରମେ, ଆବହମାନ କାଳରୁ ।

୮୬୪୭. ଗଦ୍‌ଗଦ୍ । -ଆନନ୍ଦର ଆତିଶଯ୍ୟ ଯୋଗୁଁ ଶରୀରର କମ୍ପନ ଓ ବାକ୍‌ରୁଦ୍ଧ ଅବସ୍ଥା ।

୮୬୪୮. ଗଦ୍‌ଗଦାବା ।- ପ୍ରଚୁର ପରିମାଣରେ ବାହାରିଯିବା ବା ବହିଯିବା । ମାତିବା ।

୮୬୪୯. ଗଦ୍‌ଗଦି ।-ଅଳ୍ପ ଉଚ୍ଚ ପୋଲ ବା ସେତୁ । ଛୋଟ ଜଳପ୍ରପାତ ।

୮୬୫୦. ଗଦଗଦ ।-ଅସ୍ପଷ୍ଟ ଉଚ୍ଚାରଣ ।

୮୬୫୧. ଗଦଗଦନାଦୀ ।-ଅବ୍ୟକ୍ତ ଗମ୍ଭୀର ଶବ୍ଦକାରୀ ।

୮୬୫୨. ଗଧବୋବାଳି ।-ଗଧ ରଡ଼ି; ଗଧଚିତ୍କାର, କର୍ଣ୍ଣକଟୁଚିତ୍କାର, ଗଧଭଳି ରଡ଼ି ।

୮୬୫୩. ଗଧଭୋଜନ ।-ଗଧର ଖାଦ୍ୟ ପରି ନିକୃଷ୍ଟ ଖାଦ୍ୟ ।

୮୬୫୪. ଗଧରଡ଼ି ।-ଗଧର ବୋବାଳି, କର୍ଣ୍ଣକଟୁ ରାବ ।

୮୬୫୫. ଗଢୁରି ପକାଇବା ।-ଗର୍ଭପାତ କରାଇବା, ଗର୍ଭନଷ୍ଟ କରାଇବା ।

୮୬୫୬. ଗମ୍‌ଗମିଆଁ ।-ଗ୍ରୀଷ୍ମ ହେତୁ ବହୁ ପରିମାଣରେ ବୋହୁଥିବା ଝାଳ ।

୮୬୫୭. ଗମ୍‌ଗମୁଆଁ ।-ଗମ୍‌ଗମିଆ ।

୮୬୫୮. ଗମ୍‌ଗମେଇଯିବା ।-ମହକିବା ।

୮୬୫୯. ଗମ୍ଭିରି ସାଆନ୍ତ ।-ଯୁବରାଜ ।

୮୬୬୦. ଗମ୍ଭିର ବେଦୀ ।-ମତହସ୍ତୀ, ମତୁଆଲ, ଅବାଧ ହାତୀ, ଅସ୍ଥିର ହସ୍ତୀ ।

୮୬୬୧. ଗର୍‌ଉଆଜୀବ୍ ।-ଅନ୍ୟାୟ,ଅନୁଚିତ ।

୮୬୬୨. ଗର୍‌କବୁଲ୍ ।-ଅସ୍ୱୀକାର, ଅସମ୍ମତି, ଦୋଷ ନ ମାନିବା ।

୮୬୬୩. ଗର୍‌କବୁଲିୟତ୍ ।-ପଟ୍ଟା ଦିଆଯାଇ ନଥିବା । କବୁଲିୟତ୍‌ର ବହିର୍ଭୂତ ।

୮୬୬୪. ଗରଖର୍ଚ୍ଚା ।-କୌଣସି ପଦାର୍ଥ ପାଇଁ ପଡୁଥିବା ବିଳମ୍ବ ଜନିତ ଶୁଳ୍କ ।

୮୬୬୫. ଗର୍‌ଖାତର ।-ଭ୍ରୂକ୍ଷେପ ନ କରିବା; ବେଖାତିର ।

୮୬୬୬. ଗର୍‌ନିଶାପ (ଫି) ।- ଅବିଚାର, ଅନ୍ୟାୟୀ ।

୮୬୬୭. ଗର୍‌ହାଜର୍(ଜିର୍) ।-ଅନୁପସ୍ଥିତ ।

୮୬୬୮. ଗରହୁସିଆର(ରୀ)।-ଅସତର୍କ; ଅସାବଧାନତା ।

୮୬୬୯. ଗରଜ ଚଳାଇବା ।-ପ୍ରୟୋଜନ ବା ଅଭାବରେ ଅନ୍ୟର ସହାୟ ହେବା ।

୮୬୭୦. ଗରିକଣ୍ଡା-ବନଶୀ କଣ୍ଡା ।

୮୬୭୧. ଗରଜା ହେବା ।-ଦୁଧକୁ ସାମାନ୍ୟ ଉଷୁମ କରାଯିବା ।

୮୬୭୨. ଗରବଖାଇ ।-ଯାହାର ଶିଶୁ ଗର୍ଭରୁ ମରେ ।

୮୬୭୩. ଗରବଖିଆ ।-ଯେଉଁ ପୁରୁଷ ନିଜ ଅହଙ୍କାର ହେତୁ ନାଶ ହୁଏ ।

୮୬୭୪. ଗରବଗଞ୍ଜନ ।-ଗର୍ବହାରକ, ଯେ ଅନ୍ୟର ଗର୍ବକୁ ନାଶ କରେ ।

୮୬୭୫. ଗରଭ୍ ଖସିବ ।-ଗର୍ଭପାତ ହେବା ।

୮୬୭୬. ଗରମ ପାଣିରେ ଘର ନ ପୋଡ଼ିବା ।

ପାଣିର ଧର୍ମ ଶୀତଳ କରିବା, ଉତପ୍ତ ପାଣି ହେଲେ ବି ଘର ପୋଡ଼େ ନାହିଁ ।

୮୬୭୭. ଗରୁଗାଏ ଢୁକା ।-ଗୋଧୂଳି ସମୟ ।

୮୬୭୮. ଗରୁଘର ।- ଗର୍ଭିଣୀ, ଗର୍ଭବତୀ ।

୮୬୭୯. ଗର୍ଦନ ତୋଡ଼ ।-ବେକ ଫଟା; ବେକଭଙ୍ଗା ।

୮୬୮୦. ଗର୍ଦନିଆଁ ।-ଗଳା ଧକ୍କା; ହାବୁକା; ତଣ୍ଟିଆ ।

୮୬୮୧. ଗର୍ଭସନ୍ଧି ।-ନାଟ୍ୟଶାସ୍ତ୍ର ବର୍ଣ୍ଣିତ ପଞ୍ଚସନ୍ଧି ମଧ୍ୟରୁ ଏକତମ; ଚରମ ମୁହୂର୍ତ୍ତ ।

୮୬୮୨. ଗର୍ଭସାତ୍ ।-ଆତ୍ମସାତ୍,ଖାଇଯିବା ।

୮୬୮୩. ଗଳଗାଜିବା ।- ଗଳାଦ୍ୱାରା ଗର୍ଜନ କରିବା, ପ୍ରବଳ ଭାବେ ବର୍ଷିବା ।

୮୬୮୪. ଗଳବ୍ରତ ।-ମୟୁର ।

୮୬୮୫. ଗଳାଭାରୀହେବା ।-ଗଳାର ସ୍ୱର ଗମ୍ଭୀର ହେବା ।

୮୬୮୬. ଗଳାରେ ଦଉଡ଼ିଦେବା ।-ବେକରେ ଦଉଡ଼ି ଦେଇ ଆତ୍ମହତ୍ୟା କରିବା ।

୮୬୮୭. ଗଳିଜ୍‌ଖୋର୍ ।- (ଗାଳି) ଗୁହଖିଆ ।

୮୬୮୮. ଗଳି କୁଞ୍ଚ୍ ରହିଯିବା ।-ଗହଳି ମଧ୍ୟରେ ଲୁଚିଯିବା ।

୮୬୮୯. ଗଳିପୁଚି ରହିଯିବା -ଅଦୃଶ୍ୟ ହେବା; ଦେଖା ନ ଦେବା ।

୮୬୯୦. ଗହଣ ଲଗାଇବା ।

ସଦଳବଳ ବାହାରିବା,ବହୁ ଲୋକଙ୍କ ସହିତ ଯିବା; ଶୋଭାଯାତ୍ରା କରିବା ।

୮୬୯୧. ଗହରା ଗାଣ୍ଠି ।-ଗହଣା ଗାଣ୍ଠି ।

୮୬୯୨. ଗହଳିବହଳି ।- ଗହଚହଳ; ଧୂମଧାମ; ଭିଡ଼ ।

୮୬୯୩. ଗାଈ ଅଇଲାବେଳ ।-ଗୋଧୂଳି ସମୟ,ସନ୍ଧ୍ୟାବେଳ ।

୮୬୯୪. ଗାଈ ଫିଟାବେଳ ।-ସକାଳ ପହର ।

୮୬୯୫. ଗାଈ କଅଁଳେଇବା । -ଗାଈ ପ୍ରସବ କରିବା ।

୮୬୯୬. ଗାଈଗାଧୁଆ ।-ଦୋଳପୂର୍ଣ୍ଣିମା ଦିନ ଗାଈମାନଙ୍କୁ ଗାଧୋଇବାର ଉତ୍ସବ ।

୮୬୯୭. ଗାଈବତର ପଡ଼ିବା ।-ଗାଈ ଋତୁମତୀ ହେବା; ଗାଈ ଗରମ ହେବା ।

୮୬୯୮. ଗାଈ ଲେଉଟାଇବା ।-ଗାଈ ଗର୍ଭବତୀ ନ ହୋଇ ପୁଣି ଋତୁମତୀ ହେବା ।

୮୬୯୯. ଗାଡ଼ରଗଣ୍ଡା ।-ପୁରୁଷଙ୍କୁ ପ୍ରଯୁଜ୍ୟ ଏକପ୍ରକାର ଗାଳି ।

୮୭୦୦. ଗାଣ୍ଠି ଉଶ୍ୱାସ ।-ବୋଝ ବା ଦାୟିତ୍ୱରୁ ହାଲୁକା ହେବା ।

୮୭୦୧. ଗାଣ୍ଠିଆଉଁସା ।-ଖୋସାମଦ୍ ।

୮୭୦୨. ଗାଣ୍ଠିଆଡୁ ବୁଝାମଣା ।-ଓଲଟା ବୁଝାମଣା; ଅବିଚାର ।

୮୭୦୩. ଗାଣ୍ଠିଆ ବୁଝାମଣା ।-ଅବିଚାର; ଅଖାଡୁଆ ବିଚାର; ଅବୁଝାମଣା ।

୮୭୦୪. ଗାଣ୍ଠିଏ ଗାଣ୍ଠିଏ ରହିବା ।- କୁକୁର ପରି ଅନ୍ୟ ବ୍ୟକ୍ତିର ପଛରେ ଗୋଡ଼ାଇବା ।

୮୭୦୫. ଗାଣ୍ଠିଗଳି ପଡ଼ିବା ।

ରୋଗୀ ନ ଜାଣିପାରିବା ଅବସ୍ଥାରେ ତରଳ ଝାଡ଼ା ହେବା । (ପ୍ୟାଣ୍ଟ ଆଦି) ହୁଗୁଳା ହେବା; ଢିଲା ହେବା ।

୮୭୦୬. ଗାଣ୍ଠି କୁଣ୍ଡେଇ ହେବା ।-ମାଡ ମୂଲେଇବା, କଳିକୁ ଡ଼ାକି ଆଣିବା ।

୮୭୦୭. ଗାଣ୍ଠି ଖସେଇବା ।-ଦାୟିତ୍ୱରୁ ଓହରିଯିବା, ସୁବିଧାବାଦୀ ହେବା ।

୮୭୦୮. ଗାଣ୍ଠିଚାଲାକୀ ।-ଜାଣି ସିଆଣିଆ, ଚଲାକିଆ; ଅତିଚତୁର ।

୮୭୦୯. ଗାଣ୍ଠିପାଡ଼ି (ମାଡ଼ି) ବସିବା ।-ଭୂଇଁରେ ପଚା ଲଗାଇ ବସିବା ।

୮୭୧୦. ଗାଣ୍ଠି ପୋଡ଼ିବା ।-ଅତ୍ୟନ୍ତ ଭୀତତ୍ରସ୍ତ ହେବା ।

୮୭୧୧. ଗାଣ୍ଠିଫାଟିବା ।-ଅତିଶୟ କ୍ଳାନ୍ତ ଓ ଅତ୍ୟନ୍ତ ଭୀତତ୍ରସ୍ତ ହେବା ।

୮୭୧୨. ଗାଣ୍ଠି ବୁଲାଇବା ।-ବୁଲିପଡ଼ିବା ।

୮୭୧୩. ଗାଣ୍ଠି ମରାଇବା ।-ଠକାମିରେ ପଡ଼ିବା; ଓଲୁ ବନିବା ।

୮୭୧୪. ଗାଣ୍ଠିମସ୍ତାନି ।-ଚତୁରତା ଦେଖାଇବା; ଉତପାତ ହେବା ।

୮୭୧୫. ଗାଣ୍ଠିମୁଣା ।-ପାଇଜାମା ; ପ୍ୟାଣ୍ଟଲୁନ୍ ।

୮୭୧୬. ଗାଣ୍ଠିରେ ପଶିବା ।-ବିପଦ ଆସିବା । ନ୍ୟୁନ ହୋଇ ଖୋସାମତ କରିବା ।

୮୭୧୭. ଗାଣ୍ଠି ଶୁଖିବା ।-ପଛ ଘୁଞ୍ଚା ଦେବା ।

୮୭୧୮. ଗାଣ୍ଠି ଶୂଳେଇ ହେବା ।- ମାଡ଼ ମୂଲେଇବା। କଳିକୁ ଡ଼ାକି ଆଣିବା ।

୮୭୧୯. ଗାଣ୍ଠି ହଡ଼କମ୍ପ ହେବା ।-ଡ଼ରିଯିବା ।

୮୭୨୦. ଗାତରେ ପଶିବା ।-(ଗାଳି) ମରି ପୋତାହେବା ; ମରିଯିବା ।

୮୭୨୧. ଗାତଶୁଆ ।- (ଗାଳି) ଯେ ଶୀଘ୍ର ମରି ଗାତରେ ଶୋଇବ ।

୮୭୨୨. ଗାଥା କବିତା ।-ପ୍ରାଚୀନତମ ସ୍ତବଧର୍ମୀ କ୍ଷୁଦ୍ର ରଚନା ।

୮୭୨୩. ଗାଦିଗୁଦି ।-ଖୁନ୍ଦାଖୁନ୍ଦି ହୋଇ; ଲଗାଲଗି ହୋଇ ।

୮୭୨୪. ଗାଧି ଛାଡ଼ିବା ।-ଗର୍ଭବତୀ ହେବା ।

୮୭୨୫. ଗାଦି ଗୋସାଇଁ ।

ଭାଗବତ ଆଦି ଧର୍ମଗ୍ରନ୍ଥ ରହି ପୂଜା ପାଉଥିବା ଗାଦି । ଦେବତାରୂପେ ପୂଜିତ ମହାପୁରୁଷଙ୍କ କବର ।

୮୭୨୬. ଗାଧୁଆବେଳ ।

ସାଧାରଣ ଲୋକଙ୍କର ଗାଧୋଇବା ସମୟ । ଯଥା - ଭୁଆସୁଣୀ ଗାଧୁଆବେଳ, ରାନ୍ଧୁଣୀ ଗାଧୁଆବେଳ-ସକାଳ ସାତଟା, କଅଁଳ ଗାଧୁଆବେଳ-ସକାଳ ନଅଟା, ଟାଣ ଗାଧୁଆବେଳ-ଦିନ ଏଗାରଟା, ମୁଲିଆ ଗାଧୁଆବେଳ-ଦିନ ବାରଟା ।

୮୭୨୭. ଗାନ୍ଧାରୀ ଏକାଦଶୀ ।-ଅନ୍ନଦାନ ଏକାଦଶୀ; ଶ୍ରାବଣ କୃଷପକ୍ଷ ଏକାଦଶୀ ।

୮୭୨୮. ଗାବରା ଗାବରି କରିବା ।-ଲେଖା ଓ କାର୍ଯ୍ୟ ଅସୁନ୍ଦର ଭାବରେ କରିବା ।

୮୭୨୯. ଗାରଡ଼ମୁହଁ ।-(ଗାଳି) ଯାହା ମୁହଁ ମେଣ୍ଢାମୁହଁ ପରି ଗୋଜିଆ ।

୮୭୩୦. ଗାର ମାରିବା ।-ଯାଞ୍ଚ କରିବା ।

୮୭୩୧. ଗାଲୁ କାଢ଼ିବା (ମାରିବା) ।-ଗାଲୁ କରିବା; ଭୁରୁଡ଼ି ମାରିବା ।

୮୭୩୨. ଗାଲୁ ଛଡ଼ାଇବା ।-ଦାମ୍ଭିକତା ବା ମିଥ୍ୟା ଆସ୍ଫାଳନକୁ ଦବାଇବା ।

୮୭୩୩. ଗାହିମତଲେଇ-ଉତ୍ତର-ପୂର୍ବଦିଗ ।

୮୭୩୪. ଗିଲାଗୁଜରିଆ ।-କାର୍ଯ୍ୟରେ ହେଳା କରିବା ବ୍ୟକ୍ତି ।

୮୭୩୫. ଗିଲାଜୋଡ଼ାଇ ।-ଇଟାକୁ ମାଟିରେ ଯୋଡ଼ି ଗାନ୍ଥିନି କରିବା ।

୮୭୩୬. ଗୁଜରାଣ ଚଳାଇବା (ମେଣ୍ଟାଇବା)-ଜୀବିକା ନିର୍ବାହ କରିବା ।

୮୭୩୭. ଗୁଜରୀ ହାଟ ।-ପ୍ରତିଦିନ ବସିବା ହାଟ ।

୮୭୩୮. ଗୁଞ୍ଜର ମୁଣ୍ଡାଳି ।-ମୁହଁ ଉପରକୁ ପଡ଼ିଥିବା ଚୂର୍ଣ୍ଣ କୁନ୍ତଳ ।

୮୭୩୯. ଗୁଡ଼େଇପୁଡ଼େଇ (ଗୁଡ଼େଇତୁଡ଼େଇ) ହେବା-ମନ ଉଦ୍‌ବେଳିତ ହେବା ।

୮୭୪୦. ଗୁଡିବର୍‌ଗାବେଳ ।-ହଳିଆ ବିଲକୁ ଯିବା ବେଳ; ସକାଳ ।

୮୭୪୧. ଗୁମର ଖୋଲିବା (ଫିଟିବା)(ଫିଟେଇବା)(ପଦାରେ ପଡ଼ିବା) ।

ଅନ୍ୟର ଗୃହଚ୍ଛିଦ୍ର, ଗୁପ୍ତକଥା ବା ଇଜ୍ଜତ ପଦାରେ ପ୍ରକାଶ କରିବା ।

୮୭୪୨. ଗୁମର ଭାଙ୍ଗିବା ।- ଅନ୍ୟର ଗର୍ବ ଖର୍ବ କରିବା ।

୮୭୪୩. ଗୁରୁଚାଣ୍ଡାଳ ଦଶା ।

ଗୁରୁ ଅର୍ଥାଦ୍ ବୃହସ୍ପତି ଏବଂ ଚାଣ୍ଡାଳ ଅର୍ଥାତ୍ ରାହୁ ଗ୍ରହଙ୍କର ଦଶା ।

୮୭୪୪. ଗୁରୁଚାନ୍ଦ୍ରୀ ଯୋଗ ।-ଫଳିତ ଜ୍ୟୋତିଷୋକ୍ତ ଶୁଭ ଯୋଗବିଶେଷ ।

୮୭୪୫. ଗୁହଗୋବର ।-ଅଖାଦ୍ୟ ବା ନିକୃଷ୍ଟ ଖାଦ୍ୟ ।

୮୭୪୬. ଗୁହ ଘାଣ୍ଟିବା ।-କଳଙ୍କଯୁକ୍ତ ବିଷୟକୁ ପ୍ରକାଶ୍ୟରେ ଆଲୋଚନା କରିବା ।

୮୭୪୭. ଗୁହ ମାଡ଼ିବା ।-ଅଦୃଶ୍ୟ ହେବା; ଋତୁମତୀ ହେବା ।

୮୭୪୮. ଗୁହା ଗୁଜାରିବା ।- ସାକ୍ଷୀକୁ ନିଜପକ୍ଷରୁ ସାକ୍ଷୀରୂପେ ଜବାନବନ୍ଦି ଦିଆଇବା ।

୮୭୪୯. ଗୁହା ଦେବା ।-ସାକ୍ଷ୍ୟ ଦେବା ।

୮୭୫୦. ଗୁହା ପଡ଼ିବା ।-ଦଲିଲରେ ସାକ୍ଷୀରୂପେ ଦସ୍ତଖତ କରିବା ।

୮୭୫୧. ଗୋଁଆଁର ଗୋବିନ୍ଦ ।-କାଣ୍ଡଜ୍ଞାନଶୂନ୍ୟ ଓ ବୁଦ୍ଧି ବିବେକ ହୀନ ଲୋକ ।

୮୭୫୨. ଗୋଇଆ ନିମନ୍ତ୍ରଣ ।

ବିବାହର ବାସିଦିନ କନ୍ୟାପକ୍ଷ ଓ ବରପକ୍ଷର ବ୍ୟକ୍ତିମାନେ ହଳଦୀ, ଅବିର, ଚନ୍ଦନ ଚୁଆ ବୋଳାବୋଳି ଓ ପିଚକାରୀ ମରାମରି ହୋଇ କରିବା ସ୍ନାନ ।

୮୭୫୩. ଗୋଇଠାଅଇଣ୍ଠାଖିଆ ।-ଅନ୍ୟର ଗୋଇଠା ସହି ଓ ଉଚ୍ଛିଷ୍ଟ ଖାଇ ବଞ୍ଚେ ।

୮୭୫୪. ଗୋଠ ଗୋପାଳିଆ (ନିଉଁଛୁଣା) ।- ଅଯୋଗ୍ୟ ଓ ଦୁଷ୍କର୍ମକାରୀ ବ୍ୟକ୍ତି ।

୮୭୫୫. ଗୋଠବାହୁଡ଼ା ।-ଘରବାହୁଡ଼ା । ଗୋଠକୁ ଫେରୁଥିବା ବା ଫେରନ୍ତା ।

୮୭୫୬. ଗୋଡ଼ ଉପରେ ଗୋଡ଼ ରଖିବା ।-ନିଧଡ଼କ ହେବା; ନିଶ୍ଚିନ୍ତ ହୋଇ ବସିବା ।

୮୭୫୭. ଗୋଡ଼କୁ ଶାଙ୍ଗୋଳି ହାତକୁ ବେଡ଼ି-କଠୋର ପ୍ରତିବନ୍ଧକ; ଅନ୍ତରାୟ; ବିଘ୍ନ ।

୮୭୫୮. ଗୋଡ଼ ଟେକି ବସିବା ।- ପ୍ରସ୍ତୁତ ହେବା ।

୮୭୫୯. ଗୋଡ଼ଧୁଆ ।-ପାଦୋଦକ; ପାଦ ଧୁଅ ହୋଇଥିବା ପାଣି ।

୮୭୬୦. ଗୋଡ଼ହାତକୁ ଚାହିଁ ରହିବା ।-କୌଣସି ବ୍ୟକ୍ତିର ଗତିବିଧିକୁ ଲକ୍ଷ୍ୟ କରିବା ।

୮୭୬୧. ଗୋଡ଼େ ଗୋଡ଼େ ଜଗିବା ।-ପ୍ରତିଟି କାର୍ଯ୍ୟକୁ ସତର୍କତା ସହ ନଜର ରଖିବା ।

୮୭୬୨. ଗୋଟି ଖଟିବା ।-ମହାଜନ ଠାରୁ ଖରଜ ଆଣି ମୁଫତରେ ଖଟି ସୁଝିବା ।

୮୭୬୩. ଗୋଳାଇ ପୋଳାଇ ହେବା ।-ମନ ଘାଣ୍ଟିହେବା; ଅନୁତାପ କରିବା ।

୮୭୬୪. ଗୋସାଣୀ ଲାଗିବା-ପିଶାଚୀ ଗ୍ରସ୍ତ ହେବା ।

## -ଘ-

୮୬୬୫. ଘଇତାମାରି (ଖାଇ)।

ଯେଉଁ ସ୍ତ୍ରୀ ନିଜ ସ୍ୱାମୀକୁ ପ୍ରହାର କରେ । ସ୍ତ୍ରୀ ନିଜସ୍ୱାମୀର ମୃତ୍ୟୁରକାରଣ ହୁଏ ।

୮୬୬୬. ଘଟକଯୁବତୀ ।-ଦୂତୀ; କୁଟ୍ଟିନୀ ସ୍ତ୍ରୀ ଯିଏ ସ୍ତ୍ରୀଲୋକ ଯୁଟାଏ ।

୮୬୬୭. ଘଟ ଛୁଟିବା-ପିଣ୍ଡରୁ ପ୍ରାଣ ଛାଡ଼ିଯିବା; ମରିଯିବା ।

୮୬୬୮. ଘଣା ଠେଲିବା (ପେଲିବା) ।-ଘଣାର ଦଣ୍ଡାକୁ ପେଲିବା ।

୮୬୬୯. ଘଣ୍ଟ ଘୋଡ଼ାଇ ରଖିବା ।-ସମ୍ପୂର୍ଣ୍ଣରୂପେ ବିପଦରୁ ରକ୍ଷା କରି ସୁରକ୍ଷା ଦେବା ।

୮୬୭୦. ଘଣ୍ଟାରବ ପଥ ।-ରାଜମାର୍ଗ; ସଦର ରାସ୍ତା ।

୮୬୭୧. ଘତଘାତିଆ ।-ଅବସର ଉଣ୍ଡି କାମ କଲାବାଲା । କୌଶଳୀ । ଚତୁର ।

୮୬୭୨. ଘନକୁଚ ।-କଠିନ ସ୍ତନ; ଯେଉଁ ସ୍ତ୍ରୀର ସ୍ତନ କଠିନ ।

୮୬୭୩. ଘନପୟୋଧର (ରା) - ପରିପୁଷ୍ଟ କୁଚ ; କଠିନ ସ୍ତନ ।

୮୬୭୪. ଘରଆଡ଼ ଭାଇ ।-ଶାଳକ ।

୮୬୭୫. ଘର କରିବାକୁ ଯିବା ।

ବିବାହିତା କନ୍ୟା ନିଜ ସ୍ୱାମୀ ସଙ୍ଗେ ଦାମ୍ପତ୍ୟ ଜୀବନ ଯାପନ କରିବା ନିମନ୍ତେ ପ୍ରଥମେ ଶାଶୁଘରକୁ ଯିବା; ପହିଲିପାଳି ଯିବା ।

୮୬୭୬. ଘରକୋଣିଆ ରାଜନୀତି ।-ନିଭୃତ ରାଜନୀତି; ରୁଦ୍ଧଦ୍ୱାର ରାଜନୀତି ।

୮୬୭୭. ଘେନାଘେନି କରିବା ।-ଟେକାଟେକି କରିବା; ଖୋସାମତ କରିବା ।

୮୬୭୮. ଘେନିଘେନାଇ କହିବା ।-ମନାଇବା; ବୁଝାଇ ସୁଝାଇ କହିବା ।

୮୬୭୯. ଘୋଷହୀନ ଧ୍ୱନି ।

ଯେଉଁ ଧ୍ୱନି ଉଚ୍ଚାରଣରେ ସ୍ୱରତନ୍ତ୍ରୀରେ କମ୍ପନ ନ ଥାଏ; ଅଘୋଷ ଧ୍ୱନି; ବର୍ଗର ପ୍ରଥମ ଓ ଦ୍ୱିତୀୟ ଧ୍ୱନି; ଓ୍ୱ, ୟ, ର, ଳ, ସ ଧ୍ୱନି ।



# ଚତୁର୍ଥ ଖଣ୍ଡର ପରିଶିଷ୍ଟାଂଶ

## * କାଞ୍ଜି ଢ଼ମାଳି

୮୭୮୦. କାଞ୍ଜିକରି ତୋଡ଼ ପାଏ
ମୁଁ ଗଲାଦିନ ବୋଉ କାନ୍ଦୁଥିଲା
ଶୁଭୁଥିଲା ବାଟପାଏ ।
କାଞ୍ଜିରେ ନଥାଏ ଲୁଣ
ଭାଇନା ମୋଠେଇ ଏଡ଼େ ଦାରୁଣ
କାନ୍ଦୁ ଥିଲେ ଦ୍ୟନ୍ତି ରାଣ ।
କାଞ୍ଜି ପରଝିଲି ଜୀରା
ଟାଙ୍ଗଣ ବୃଛକୁ ପାଙ୍ଗଣ ଫୁଲ
ଖାଉନ୍ଦ ଗୋଟିକ ହୀରା ।
କାଞ୍ଜିରେ ପାଞ୍ଚ ଫୁଟଣା
ଅଣ ଲେଉଟା ତ ରୁକୁଣା ରଥ
ସହୁଛି କେତେ ବୋଲଣା ।

*(*କାଞ୍ଜି ଢ଼ମାଳି (ସମ୍ପୂର୍ଣ୍ଣ) ପଦମାଳର ଆଦ୍ୟ ଭାଗ
୪ର୍ଥ ଖଣ୍ଡ, ପୃଷ୍ଠା-୩୧୦, କ୍ର: ନଂ: -୬୯୧୯ ଦ୍ରଷ୍ଟବ୍ୟ ।)*

୮୭୮୧. କଣ୍ଟାଫିରିକି କଣ୍ଟାଫିରିକି
ଏତେ ଗୁଣ ବୋଲି ଜାଣି ଥିଲି କି ?
ବେଳହୁଁ ନ କହିଲ
ଫୁଲ ପରା କରି ଟେକି ଧରିଥିଲ
କଚାଡ଼ି ପକାଇଲ ।

୮୭୮୨. କମାରକୁ ଆମଗରମି, ବଢ଼େଇ ହାତରେ ଘା,
ନାଟୁଆ ପିଲାର ଲୋଟଣୀ କାଶ, ବେଉସା ଛାଡ଼ି ଯା ।

୮୭୮୩. କଦଳୀ ମନ୍ତର ସଜ ଗୁଆଘିଅ
ପିଠାକୁ ମନ୍ତର ଜୁଆଣୀ
ପଣସ ମନ୍ତର ପାଚିଲା କଦଳୀ
ମୂରୁଖ ମନ୍ତର କହୁଣୀ ।

ପାଚିଲା କଦଳୀ, ପିଠା ଓ ପଣସ ଖାଇ ଅଜୀର୍ଣ୍ଣ ହେଲେ ଯଥାକ୍ରମେ ଗୁଆଘିଅ, ଜୁଆଣୀ ଓ ପାଚିଲା କଦଳୀ ଖାଇବ । ମାତ୍ର ମୂର୍ଖକୁ ସାଧ୍ୟ କରିବାକୁ ମାଡ଼ ।

୮୭୮୪. କରଣ ନଡ଼ିଆ (=ଲଢ଼େଇ ନଡ଼ିଆ) ରଜା ବ୍ରାହ୍ମଣ
ମୂରୁଖ ହେଲେ ଅକାରଣ ।

୮୭୮୫. କଷ୍ଟୀ ତ କଷ୍ଟୀ ପରାନ୍ନ ଭୋଗୀ
କଷ୍ଟୀ ତ କଷ୍ଟୀ ଯୁବା ଦରିଦ୍ରୀ (=ଦରିଦ୍ର)
କଷ୍ଟୀ ତ କଷ୍ଟୀ ଚିର ପ୍ରବାସୀ
କଷ୍ଟୀ ତ କଷ୍ଟୀ ବନିତା ବିୟୋଗୀ ।

୮୭୮୬. କଂସା ଧନ ଅଧାବିଧା
ସୁନା ଧନ ଭୋଗ୍ୟ,
ବଳଦ ଧନରେ କେଉଁ ଭରସା
ଲୁଗା ଧନ ନୁହେଁ ଯୋଗ୍ୟ ।

୮୭୮୭. କହିବୁ ଏ ମନକଥା
ପଛେ ନ ଭାଳିବୁ ଲୋକେ ଖୁସି ହେବେ
ଶତ୍ରୁଏ ପୋତିବେ ମଥା ।

୮୭୮୮. କାକ ରାବେ ଭୂଇଁ ନ ଦିଶେ
ତାକୁ ବୋଲନ୍ତି ଉଷା ।
ସବୁ ଗ୍ରହମାନେ ଥାଇ ବୋଇଲେ
ଆମେ ସେତେବେଳେ ମୂଷା ।

ଅନୁକୂଳ କରିବାର ପ୍ରକୃଷ୍ଟ ସମୟ ଉଷାକାଳ ।

୮୭୮୯. କାକୁଡ଼ି ଦହି ଜାମୁକୋଳି,
ଲୁଣ ପକାଇ ଖାଇଲେ ଅମାର୍ଗ ନାହିଁ
ସୁଆଦ ଲାଗଇ ଭଳିକି ଭଳି ।

୮୭୯୦. କାମ ପୀଡ଼ାକୁ ଦଣ୍ଡ (=ଦଣ୍ଡବୈଠକ) ।
ଦୋଷୀ ଲୋକକୁ ଦଣ୍ଡ (=ଶାସନ) ।
ବୃଦ୍ଧ ଲୋକକୁ ଦଣ୍ଡ (=ବାଡ଼ି) ।

୮୭୯୧. କଇଁଆ ନାଡ଼ରୁ ପାଣିହୁଏ ଜାଣି, ପଣ୍ଡିତ ଜାଣିବ କଥା ବଖାଣି,
କୁଳୀନ ଜାଣିବ ବ୍ୟବହାରରୁ, ଜମି ଜାଣିବ ଜିଆ ଗାଳିବାରୁ ।

୮୭୯୨. କିଆ ଫୁଲ ବରଷା ଦିନେ,
ବସନ୍ତରେ କେତକୀ
ବାସନର ଦିଗ ଚହଟେ,
ଭ୍ରମର ନ ଯାଏ କତିକି ।

୮୭୯୩. କି କର୍ମ କଲି, ବଡ଼ ଘରୁଯାହା ବୋହୂ ଆଣିଲି,
ଲକ୍ଷେ ବୋଲଣାରେ ପାଣି ନ ଆଣେ
ବେଶ ଭୂଷା ହୋଇ ଶୋଇବା ଜାଣେ ।

୮୭୯୪. ଖରା ଦିନରେ ଦିନ ବଡ଼, ଶୀତ ଦିନରେ ରାତି,
ପରକୁ ପୀଡ଼ାଦେବା ଲୋକ, ବହୁକାଳ ବଞ୍ଚନ୍ତି ।

## ରସର କେଳି ଢ଼ମାଳି

୮୭୯୫. କୁଳଶୀଳ ତେଜ୍ୟା କଲି ତୁମ୍ଭର ନିମନ୍ତେ
କଅଁଳ ବୟସେ କଳାକାହ୍ନୁ ବାଇ କଲ ମତେ ।
ଖୁସା ଗୁଟେ ଖୁସିଥିଲି ଦିନେ ମଲ୍ଲୀଫୁଲେ
ଖିଆଲ କରିଣ କାହ୍ନୁ ଧରିଥିଲ କୋଳେ ।
ଝାଳ ଘମ ଘମ ବୁହେ ନାଗର, ପଡ଼ିଗଲ ଭୂଲେ
ରସ ଯା ଚାହାଲି (=ଚାଲିଯା) ରେ ।

୮୭୯୬. କାନ ତଲିଆ ଖୁସା ଧାନ କାଟିଦେଲା ମୂଷା
କଲେ କଲେ ବାପଧନ କଲ ଲୋକହ'ସା ।
କଲାକଲା ବାଇଗଣ ରୁଇଦେଲି ଧାଡ଼େ
ଘୋରି ରଖିଥିଲି ଚଆ ଚନ୍ଦନ, ଲେପିଲି ଅଙ୍ଗରେ
ରସ ଯା ଚାହାଲି (=ଚାଲିଯା) ରେ ।

୮୭୯୭. କରୁଣା ସାଗର କମ୍ବୁ ଚକ୍ରପାଣି
କର ଧରି ଦୂତିକାକୁ କହେ ନୀଳମଣି ।
କଦମ୍ବ ମୂଳରେ ବସି ନାଗର, କଲ ବଂଶୀଧ୍ୱନି,
କରତି ହେଉଛି ଛାତି କା ମନ କାତିରେ
କେତେ କଲବଲେ ଦିନ ମୁଞ୍ଚଇ ରାତିରେ ।
କିମ୍ବା କରୁଣା ନୋହୁଛି ନାଗର, ତୁମ ହୃଦୟରେ
ରସ ଯା ଚାହାଲି (=ଚାଲିଯା) ରେ ।

## କୋବା ବାଡ଼ିଆ ଢ଼ମାଳି

୮୭୯୮. କୋବା ପଡ଼େ ରାଇଁ ଝାଇଁ
କୋବା ପଡ଼େ ରାଇଁ ଝାଇଁ,
ଗୋରିକା ମନରେ ହରଷ ନାହିଁ,
ମିଛେ ବୋଲେ ନାହିଁ ନାହିଁ ।

୮୭୯୯. କୋବା ପଡ଼େ ରାମରସ
କୋବା ପଡ଼େ ରାମରସ,
ନାଗର ମନରେ ନାହିଁ ହରଷ,
ରାମ ଲକ୍ଷ୍ମଣଙ୍କ ଗଙ୍କୁରି ଆସୁଛି ନିଶ ।

୮୮୦୦. କୋବା ପଡ଼େ ରସମସ
କୋବା ପଡ଼େ ରସମସ,
ଗୋରୀକା ମନରେ ନାହିଁ ହରଷ
ମିଛେ ବୋଲେ ବସ ବସ ।

୮୮୦୧. କୋବା ବାଡ଼େଇଲି ବସି,
କୋବା ବାଡ଼େଇଲି ବସି,
କୋବା ବାଡ଼ିଆରୁ ପଇଲି ଖସି,
ଚଉପାଶେ ଚପରାଶି (=ଢଗୁଆଳୀ) ।

୮୮୦୨. କଇଁଆଁ ଗଛର ଅଗି,
କଇଁଆଁ ଗଛର ଅଗି

ଦାରୋଗା ବାବୁର ଛଅଟା ବଗି (=ଘୋଡ଼ା ଟଣା ଗାଡ଼ି),
ସଡ଼କ ଯାଉଛି ଭାଙ୍ଗି ।

୮୮୦୩. କଟକ ରଙ୍ଗ ପିଆଜ,
କଟକ ରଙ୍ଗ ପିଆଜ
ଦବା ନବା କଥା ତେଣିକି ଥାଉ,
ବଚନ ବଡ଼ ସୁଆଦ ।

୮୮୦୪. କାଳିଆ କୁକୁର ହାଡ଼,
କାଳିଆ କୁକୁର ହାଡ଼
ହାବୁଡ଼େ ପଇଲେ ମାରିବି ମାଡ଼,
ସଞ୍ଜାବୁଲା ଖଣ୍ଡି ଛାଡ଼ ।

୮୮୦୫. କଟକ ପାଖେ ଝଟକ,
କଟକ ପାଖେ ଝଟକ
ଭିରୁଡ଼ି ବସାରେ ହାତ ମାଇଲୁ,
ସମ୍ଭାଳ ଏଇ ଚୋଟକ ।

୮୮୦୬. କଦଳୀ ପତର ହାତେ,
କଦଳୀ ପତର ହାତେ
ଗିରିଙ୍ଗା ପତର ଚଉଦ ହାତେ,
ବିଜେ କଲେ ସୋମନାଥେ ।

## ଶଗଡ଼ିଆ ଢ଼ମାଳି

୮୮୦୭. କହଇ ବାସୁଦେବ ରାଧିକା ମୁହଁ ଚାହିଁ
ହସି କଥା ପଦେ ନ କୁହ ପ୍ରାଣସହୀ
କୃପଣ ଧନ ପ୍ରାୟେ କରିଥିଲି ଗଣ୍ଠି
କେଉଁ ଅପଗୁଣେ ରାଧିକେ
ପଡ଼ିଲେ ତଳେ ଖସି ।

୮୮୦୮. କହଇ ହନୁମନ୍ତ ଶୁଣରେ ଦଶମଥା
କେବଣ କାରଣରୁ ଚୋରୀ କଲୁ ସୀତା

ଖଗପତିନାଥ ନୁହନ୍ତି ବଇରୀ
ଖଣ୍ଡପଣ କରି ଆଣିଲୁ ପରନାରୀ ।

୮୮୦୯. କାନ୍ଦି ତ  କାନ୍ଦି ଚୁଙ୍କି ମୁଖକୁ ରଞ୍ଜାଇଲା
ଏକା ଘରେ ଦୁଇପରା ଦୁଆର ଏ ଭିନ୍ନ କରାଇଲା ।
ବାସି ପଖାଳକୁ ଶୁଖା ଚିଙ୍ଗୁଡ଼ି କେ ଦେବ ହରଘଡ଼ି
ଖାଇଦେଲେ ନବୋହିଲେ ଯୌବନୀ ଯୌବନ ଯିବ ବଢ଼ି ।

୮୮୧୦. କାଳିଆ ଯେ କାଳିଆ ବୋଲନ୍ତି ଯାହାକୁ
କାଳିଆ ବୋଇଲେ ବୁକୁ ଜାଣିଥିଲେ
ଦେହ ନ ଦେବ କାଳିଆ ପୁରୁଷକୁ ।

## ଚାଚେରୀ ଘଣ୍ଟ ଢ଼ମାଳି

୮୮୧୧. କହଇ ନାଗରୀବର
କେଉଁ ସଜନୀ ଆଗର
କାଢ଼ିଲି ଓଢ଼ଣା,
ହେଲି ପଥବଣା
ଶ୍ୟାମବନ୍ଧୁ କଲେ ପର ।

## ଶରୀର ରକ୍ଷାକାରୀ ଢ଼ମାଳି

୮୮୧୨. କେଶ ରଖେ କାଳିକା, କପାଳ ରଖେ ବ୍ରହ୍ମା,
ଚକ୍ଷୁ  ରଖେ ଚନ୍ଦ୍ରମା, ନାସା ରଖେ ଗରୁଡ଼,
ଦନ୍ତ୍ୟରଖେ ଦନ୍ତମାଣିକ, ଜିଭ ରଖେ ଜିହ୍ୱାବଳୀ
କଣ୍ଠ ରଖେ ସରସ୍ୱତୀ, ବାହା ରଖେ ଦୁର୍ଯ୍ୟୋଧନ,
ଛାତି ରଖେ ବିଭୀଷଣ,ପେଟ ରଖେ ପରାଣ,
ନାଭି  ରଖେ ନାଭୀଶ୍ୱର, ଅଣ୍ଟା ରଖେ ଡ଼ମ୍ବରୁ,
ଜଙ୍ଘ ରଖେ ଜଙ୍ଘ ଲୋଚନ, ଆଣ୍ଠୁ ରଖେ ଚକ୍ରପାଣି
ପାଦ ରଖେ ବାସୁକୀ
ତିନି ମୁଣ୍ଡେ ଚଉଁରୀ
ମଣିଷ ମୁଣ୍ଡେ ଦେଲି ପାଦ

ଯେଣେ ଇଚ୍ଛା ତେଣେ ଯାଅ
ନରସିଂହ ଜଗିଥାଅ ।

## ପ୍ରଶ୍ନ ଉତ୍ତର ଢ଼ମାଳି

୮୮୧୩. **ରାଧାଙ୍କ ପ୍ରଶ -** କୃଷ୍ଣ ତ ନିତାନ୍ତ କଳା ପୁରୁଷ
ରାଧାଠିଁ କିଆଁ ଲଗାଇଛ ଆଶ ?

**କୃଷ୍ଣଙ୍କ ଉତ୍ତର -** କଳା ବୋଲି ରାଧା ଧଇଲ ତୁଣ୍ଡେ
ବଜ୍ର ଯେ ଛିଡ଼ି ପଡୁଅଛି ମୁଣ୍ଡେ ।

ଯମୁନା କଳା ମିଶିଥାଏ ଜଳେ
ମେଘ ଯେ କଳା ଚାଳ ତାର ତଳେ ।

ତାଳ ଯେ କଳା ଘରେ ହୁଏ ଶେଣୀ
କଳା ଯେ ମେଘ ବରଷୁଛି ପାଣି ।

ଆପୁ ଯେ କଳା ସେ ଗଛର ଅଠା
କାଳୀ ତିରୀଙ୍କର (=ସ୍ତ୍ରୀ ମାନଙ୍କ) ବଚନ ମିଠା ।

ଦୀପ ଯେ କଳା ଦେବତା ବନ୍ଦନ
ତୁଳସୀ ଯେ କଳା ଦେବତା ମଣ୍ଡନ ।

କାଳି ଯେ କଳା ଗୀତ ଲେଖାଯାଏ
ଭ୍ରୁଲତା କଳା ନୃତ୍ୟ କରୁଥାଏ ।

ମଧୁର ଲାଗଇ କୋଇଲି ଗଳା
କି ରଙ୍ଗେ ଖେଳଇ ଆଖିର ଡ଼ୋଳା ।

ମୁଗ ତ କଳା ପରଶଇ ଆଗ
ଶାଗ ତ କଳା ପିତୃଶ୍ରାଦ୍ଧେ ଭୋଗ ।

କଳା ପାଟ ଯେ ଦେବୀଙ୍କ ଘୋଡ଼ଣି
କଳା ଛତି ଯେ ଦେବୀଙ୍କ ଆଢ଼େଣି ।

କଳାମେଘୀ ଶାଢ଼ୀ ପିନ୍ଧନ୍ତି ନାରୀ
ମଧୁର କଣ୍ଠ କଳାବର୍ଣ୍ଣ ସାରୀ ।

**ଫଳାଫଳ -**

ଏତେ ଶୁଣି  ରାଧା ହୋଇଲେ ତୁନୀ
କଥାରେ କେ ଯିବ କୃଷ୍ଣଙ୍କୁ ଜିଣି ।

## ସୀତା କୋଇଲି ଢ଼ମାଳି

୮୮୧୪ କୋଇଲି ଲୋ।
କାନ୍ତ ମୋର ଗଲେ ମୃଗମାରି
କପଟେ ରାବଣ ମୋତେ ନେଉଅଛି ଧରି ।
କୋଇଲି ଲୋ।
ଖଳ ବୋଲି ଜାଣି ନ ପାରିଲି
ଖଳ ଯେ କନକ ମୃଗ ଦେଖି ଶ୍ରଦ୍ଧା କଲି ।
କୋଇଲି ଲୋ।
ଗୁରୁ ଶ୍ରଦ୍ଧା ବଳିଲା ମୋହର
ଗେଲରେ ବୋଇଲି ରାମ କୁରଙ୍ଗୀକି ମାର ।
କୋଇଲି ଲୋ।
ଘଟଣ ଯା କରିଛି ବିଧାତା
ଘୋର ବନେ ମୃଗମାରି ଗଲେ ମୋ ଭରତା ।
କୋଇଲି ଲୋ।
ଲକ୍ଷ୍ମଣକୁ ଜଗାଇ ଦୁଆର
ନାରାଚ (=ବାଣ)  ବିନ୍ଧି ଗଲେ ରଘୁବୀର ।
କୋଇଲି ଲୋ।
ଚାପ (=ଧନୁ) ଧରି ଗଲେ ରଘୁନାଥ
ଚାପରେ ନାରାଚ (=ଲୌହ ତୀର) ବିନ୍ଧିମୃଗ କଲେ ହତ ।
କୋଇଲି ଲୋ।
ଛାଡ଼ିବାର ବେଳେ ମୃଗ ପ୍ରାଣ
ଛଦ୍ମେ ଡାକିଲା ମତେ ରଖ ଲଇକ୍ଷଣ ।
କୋଇଲି ଲୋ।

ଜାଣି ନ ପାରିଲି ଛନ୍ଦ ବୋଲି
ଯାଅ ବୋଲି ଲକ୍ଷ୍ମଣଙ୍କୁ ପଠିଆଇ ଦେଲି ।
କୋଇଲି ଲୋ
ଝଟତିରେ ଗଲେ ଟି ଲକ୍ଷ୍ମଣ
ଝାଡ଼ର ଭିତରେ ଲୁଚିଥିଲାଟି ରାବଣ ।
କୋଇଲି ଲୋ
ନିର୍ମଳ ତପସ୍ୱୀ ରୂପ ଧରି
ନିର୍ଭୟେ ବସିଲା ମୋର ଦୁଆର ଆବୋରି ।
କୋଇଲି ଲୋ
ଟେକି ଯେ ଚାହିଁଲା ମାୟା ଯତି
ଟେକି ଫଳ ଭିକ୍ଷା ମୋରେ ଦିଅ ମହାସତୀ ।
କୋଇଲି ଲୋ
ଠକ ବୋଲି ଜାଣି ନ ପାରିଲି
ଠକ ଯତି ବୋଲି ଶୁଣି ଟେକି ଭିକ୍ଷା ଦେଲି ।
କୋଇଲି ଲୋ
ଡ଼ିଙ୍ଗର (=ଦୁଷ୍ଟ) ରାବଣ ମାୟା କଲା
ଡାହାଣ ଭୁଜକୁ ମୋର ଆକ୍ରୋଶି ଧଇଲା ।
କୋଇଲି ଲୋ
ଢ଼ଳି ଯେ ଚାହିଁଲା ଆକାଶକୁ
ଢ଼ାଳେ ରଥ ଶୂନ୍ୟୁ ଆସି ମିଳିଲା ତାହାକୁ ।
କୋଇଲି ଲୋ
ଆଣି ମତେ ରଥରେ ବସାଇ
ଆକାଶ ମାର୍ଗରେ ରଥ ନେଉଅଛି ବାହି ।
କୋଇଲି ଲୋ
ତୁରିତେ ଯେ ରାଜ୍ୟରେ ମିଳିଲା
ତରୁ ଯେ ଅଶୋକ ବନେ ନେଇ ଲୁଚାଇଲା ।
କୋଇଲି ଲୋ

ଥାନ୍ତି ଜଗି ସହସ୍ରେ ଅସୁରୀ
ଥାନ୍ତି ନିରନ୍ତରେ ମୋର ପାରୁଶରେ ବେଢ଼ି ।
କୋଇଲି ଲୋ
ଦିବାରାତ୍ର ଦୁଇ ମୋର ଏକ
ଦିନ ନ ସରଇ ମୋର ନିରନ୍ତରେ ଶୋକ ।
କୋଇଲି ଲୋ
ଧାତା ମୋରେ ଏଡ଼େ କଷ୍ଟ ଦେଲା
ଧରାଇ ଅସୁର ଘରେ ବନ୍ଦୀ କରାଇଲା ।
କୋଇଲି ଲୋ
ନାରାଚ (=ବାଣ) ଧରିଣ ରଘୁନାଥ
ନାରାଚରେ ମୃଗ ମାରି ଆସିବେ ତୁରିତ ।
କୋଇଲି ଲୋ
ପର୍ଣ୍ଣକୁଟୀ ଦ୍ୱାରେ ଡ଼ାକୁଥିବେ
ପୟର ପଖାଳୁଁ ସୀତା ପାଣିଦିଅ ବେଗେ ।
କୋଇଲି ଲୋ
ଫୁଟି ଡାକୁଥିବେ ବେନିଭାଇ
ଫାଟୁଛୁ ତୃଷାରେ ନୀରଦିଅ ବଇଦେହୀ ।
କୋଇଲି ଲୋ
ବାରେ ଯହୁଁ ନ ଶୁଣିବେ ବାଣୀ
ବୋଲିବେ ସୀତାକୁ କିଏ ଚୋରେଇ ନେଲାଣି ।
କୋଇଲି ଲୋ
ଭାଇ ବେନି ବନେ ବୁଲୁଥିବେ
ଭଲ ଲୋକ ଦେଖିଲେ ବାରତା ପଚାରିବେ ।
କୋଇଲି ଲୋ
ମହା ଘୋର ବନେ ବେନି ଭାଇ
ମତେ ଲୋଡୁଥିବେ ତହିଁ ଆହାର ନ ପାଇ ।
କୋଇଲି ଲୋ

ଜୀବ ଯିବା ପ୍ରାୟ ହେଉଥିବେ
ଯାମ ଯେ ଯୁଗ ଲକ୍ଷ ପରାୟେ ମଣିବେ ।
କୋଇଲି ଲୋ
ରାଉ (=କୁହାଟ) ଥିବେ ମୋର ନାମଧରି,
ରାତ୍ର ଦିବସ ନେତ୍ର ବହୁଥିବ ବାରି ।
କୋଇଲି ଲୋ
ଲଙ୍କାର ରାବଣ ଆଣିବାର
ଲକ୍ଷ୍ମଣ ସହିତେ କାନ୍ତେ ନୋହିଲା ଗୋଚର ।
କୋଇଲି ଲୋ
ବାରତା ପାଇଣ ରଘୁନାଥ
ବାରାନିଧି ଜିଣି ରାମ ଆସିବେ ତୁରିତ ।
କୋଇଲି ଲୋ
ଶୀଘ୍ରେ ବାର୍ତ୍ତା ପାଇବେ କି କହ
ବାରତା ପାଇ ଆସିବେ ଦଶରଥ ପୁଅ ।
କୋଇଲି ଲୋ
ଶୀଘ୍ରେ ରାମ ମାରିବେ କି ଦୁଷ୍ଟ
ଏଠାରୁ ସରିବ ମୋର ବନବାସ କଷ୍ଟ ।
କୋଇଲି ଲୋ
ଶୀଘ୍ରେ ରାମ ଲଙ୍କାରେ ପ୍ରବେଶ
ମୋତେ ଘେନି ଚଳି ଯିବେ ଅଯୋଧ୍ୟା ପ୍ରଦେଶ ।
କୋଇଲି ଲୋ
ହେବେ ମୋତେ ଘେନି ଅଭିଷେକ
ହରଷେ ଖଟିବେ ପାତ୍ର ମନ୍ତ୍ରୀ ଯେ ସେବକ ।

## କୋଇଲି ଢମାଳି

୮୮୧୫. କୋଇଲି ଲୋ
ମୋହ ପାଇଁ ଉଡ଼ି ଉଡ଼ି ଯିବୁ,

ମୋ ବୋଉ ନନାକୁ କହି, ମାନ ଉଦ୍ଧାରିବୁ ।
କୋଇଲି ଲୋ
ବୋଉ ଯେବେ ଜନ୍ମ କରିଥାନ୍ତା,
ସତେ ନ ଦେଖିଲେ ମୋରେ, ସପନେ ଦେଖନ୍ତା ।
କୋଇଲି ଲୋ
ସପନରେ କହନ୍ତା ନନାକୁ,
ବିକଳ ହେଉଛି ମନ,ଆଣନ୍ତି ଝିଅକୁ ।
କୋଇଲି ଲୋ
ନନା ଯେବେ ଜନ୍ମ କରିଥାନ୍ତେ,
କାନ୍ଧେ ଛତା, ହାତେ ବାଡ଼ି, ସଙ୍ଖୋଳି ଆସନ୍ତେ ।
କୋଇଲି ଲୋ
ଭାଇନା ମୋ ରାଢ଼ପଣ କଲା,
ଛ' ମାସକୁ କଣ୍ଟ କରି, ବରଷେ ରହିଲା ।
କୋଇଲି ଲୋ
ଭାଉଜ ଭଉଣୀଏ ତ ରାଢ଼ପଣ କଲେ,
ଭାଇ ସଙ୍ଗେ ପଡ଼ି ସେତ, ଜଣେ ଜଣେ ହେଲେ ।
କୋଇଲି ଲୋ
ପୋଡ଼ପାଡ଼ ପ୍ରାଣ ବୋଉ ଜନ୍ମ କରି ନାହିଁ,
ଜହର ନ ଦେଇ ସତେ, ରଖିଲା କି ପାଇଁ ।
କୋଇଲି ଲୋ
ଗାଁ ଝିଅ ବେଳେ ବେଳେ ବୁଲି ଆସୁଥିବ,
ସାନ ଝିଅ କୋଡ଼େ ପଶି, ଦୁଃଖ ପାଶୋରିବ ।
କୋଇଲି ଲୋ
ତାହା ଶୁଣି ବାପା ଆସୁଥିଲେ,
ନଈବଢ଼ି ପାଣି ଦେଖି,ଲେଉଟି ତ ଗଲେ ।
କୋଇଲି ଲୋ

ତାହା ଶୁଣି ଶାଶୁଏ ବୋଲନ୍ତି
ତୋର ପରା ବାପ ଭାଇ,ଜୀଇ ବସିଛନ୍ତି ।

## କଳି ଢ଼ମାଳି

୮୮୧୬ କୋପେ କ୍ଷତ୍ରି ବୋଲେ ବାଣୀ
ମାରିବି ଆଜି ମୁଁ ଯୋଡ଼ା କହୁଣୀ
କେତେ ହେଉଅଛୁ ଟାଣିଟୁଣି ।
ଖଳବୁଦ୍ଧି ତୁମ୍ଭେ କଲ
ଖରାପ ହୋଇ କଳିଲଗାଇଲ
ଦ୍ୱନ୍ଦ୍ୱ ଭିଆଇଲ
ଖିରି ସଙ୍ଗେ ଖାର ମିଶାଇଲ ।
ଗରବ କିମ୍ପାଇ କର,
ଗାଲ ଆଜି ଭାଙ୍ଗି ଦେବି ତୁମ୍ଭର
ଗେଲ ଲାଗ ମୋ ସାଙ୍ଗର ।
ଘଡ଼ିଏ ତୁ ଥାଆ ରହି
ଘଣ୍ଟିକା ଚିପି ତୋ ପ୍ରାଣ ନେବଇଁ
ଘର ନ ଦେଖିବୁ ତୁହି କି ।
ଉତପାତ ହେଉଅଛୁ
ଉତ୍ତର ତୁ ମୋତେ କେତେ ଦେଉଛୁ
ଊଣା ବୋଲିକି ମଣୁଛୁ,
ଛଟପଟିଆ ନିଲଠା
ନିଆଁଖୁଣ୍ଟା ଗାଲେ ଦେବି ସାତଠା
ଆଜି ଚେତ ତୁ ଗୋଲାମ ଧିଠା ।
ଛତରାମୁହଁ ମଦୁଆ
ଛେଳି ବେକିଆ ତୁ ହଂସ ପାଦିଆ
ମୋହ ଆଗରୁ ତୁ ଯାଆ ।
ଜଳଜଳା ତୁ ବଗଡ଼

ଯୋଗେ ଭେଟ ହେଲୁ ବୁଢ଼ା ମାଙ୍କଡ଼
ଯାହା ଜୀଇଛୁ ନ ମରି ମୂଢ଼ ।
ଝାଡ଼ିଦେବି ତୋର ଦାନ୍ତ
ବୁକୁଚିରି କାଢ଼ି ଆଣିବି ଅନ୍ତ
ଝିମିଟେ ସମ୍ଭାଳ ତୁ ତ ।
ନିଅଁସିଆ ବାରବୁଲା
ନିଶ୍ଚୟ ମରଣ ତୋତେ ଘଟିଲା
ଯମ ତ ପାଞ୍ଜି ପୋଛିଲା ।
ଟାଣ କରିଅଛୁ ତୁହି
ଟେକି କଚାଡ଼ିବି ଶିଳାରେ ନେଇ
ଟିକି ଟିକି କରିବଇଁ ।
ଠିକରେ କହୁଛି ଭଲେ
ପୋଢୁଆଁ ପୁଅ ତ ଶୂଳୀ ଚଢ଼ିଲେ
ଠିକେ ଗେଲ ଯିବ ଭଲେ ।
କେ କାହାକୁ ଚାହିଁ ଭଣେ
ଆମ୍ଭପରି ଜଣେ ଥିଲେ ଗହଣେ
ତୁମ୍ଭ ପରି କି ରହିବେ ପଣେ ।
ଖଳକଥା ପଟାର
ଖଣ୍ଡା ମୁଠାରେ ଦୃଷ୍ଟି ନାହିଁ ତୋହର
ତୁ ତ ଖଚୁଆଙ୍କ ସରଦାର ।
ଗରବ କରୁଛୁ ତୁହି
ଗାଲେ ଚୂନ କଳା ଦେବି  ଲଗାଇ
କେହି ଗୁହାରି ଶୁଣିବେ ନାହିଁ ।
ଘନ ଘନ ସିଂହ ରଡ଼ି
ଘଡ଼ିଏ ଗଲେ ଚେତା ଯିବ ବୁଡ଼ି
ଘଟ ମଧ୍ଯୁ ପ୍ରାଣ ଯିବ ଛାଡ଼ି ।
ଆଡ଼ଣ କାଡ଼ଣ ହେବ

ସରଳି ଯାଇ ପଛକୁ ଘୁଞ୍ଚିବ
ଏକା ମାଲ ବନ୍ଧର ସ୍ୱଭାବ ।
ଚରଣେ ଚାପିଲା ପରି
ଚେତା ବସୁନାହିଁ ଧରୁଛୁ ଫଡ଼ି
ଆଣ୍ଠୁ ଗଣ୍ଠି ତୋ ପଡ଼ିବ ଛିଡ଼ି ।
ଛାତିରେ ବସିବ କାତି
ବାହାରିବ ପିତ କରିବୁ ବାନ୍ତି
ଛିଣ୍ଡିଯିବ ତୋର ସବୁ ଅନ୍ତି ।
କୁନ୍ତୀର ଶତ ତନୟେ
ବ୍ୟାଘ୍ର ଜାତକଲା ପାଞ୍ଚ ଯେ ପୁଏ
ଏକା ସିଂହକୁ ସମାନ ନୁହେଁ ।
କପୋତ ଡିମ୍ବ ଫୁଟାଇ
ସଞ୍ଚାଣ ହେବାର ଦେଖଛ କାହିଁ
ତୁମ୍ଭେ ବୋଲାଅ ବଣ ବିଲେଇ ।
ପୂର୍ବ କଥାକୁ ବିଚାର
ତୁମ୍ଭ ପରି ହେଲେ କାହାଣେ ବୀର
କି କରି ପାର ଆମ୍ଭର ।
ପବନରେ ଉଡ଼ିଯାଅ
ସୋଲ ପରି ଗରୁ କିମ୍ପା ଦେଖାଅ
ଆଜି ଭାଙ୍ଗି ଦେବି ତୁମ୍ଭ ମୁହଁ ।

## କାନ୍ଦଣା ଢ଼ମାଳି

୮୮୧୭. କୁଢ଼ମାଟି ସିନା କୁଢ଼େ ଛାଟିବ,
ଗୋଡ଼ଧରା ବନ୍ଧୁ କିସ କରିବ ।
ନନାକୁ ପଠେଇ ମତେ ଆଣରେ,
ନନା ପହଞ୍ଚିବେ ଦିପହରେ ।
ଗୋଡ଼ ଧୋଇଦେବି ପାଚେରୀ ତଳେ,
ମୋ ଅକଳ କହିବି ନିଛଳ ବେଳେ ।

୮୮୧୮. କାଠିଆ କଦଳୀ ଫେଣିକି ପାଚେ
ବଡ଼ନନା ଡାକ ଶିରରେ ନାଚେ।
କେତେ ପ୍ରକାରେ ତ ବାଜେ ବାଜଣା
ଶୁଣି ଫାଟିଯାଏ ମୋ ଛାତି ସିନା।
ରାବଣ ଭଗାରି ସୀତାଙ୍କ ପାଇଁ
ଶାଶୁଘର ହେଲା ମୋହରି ପାଇଁ।
ଅଯୋଧ୍ୟା ଫେରିବାକୁ ହୋଇଛି ମନା,
ଲଙ୍କା ଗଡ଼େ ବନ୍ଦି ଜନକ ଯେମା।

୮୮୧୯. କହୁଥିଲେ ଲୋକେ ତୁମେ ମୋ ପାଇଁ
ସାତଖଣ୍ଡ ରାମାୟଣ ପାରିବ ଗାଇ।
ମୋ କରମକୁ  ସାତ ଅକ୍ଷର
ପୂର୍ଣ୍ଣ  ଯାହା ତୁମେ କରି ନ ପାରିଲ।
ପର ବୁଦ୍ଧିରେ ପ୍ରଳୟ ହେଲା
ମୋ ବେଳକୁ ବୁଦ୍ଧି କିଏ ହରିଲା।

୮୮୨୦. କଳାମେଘ ଦେଖି ଯେହୁ ନାଚନ୍ତି
ମୟୂର ମୟୂରୀ ଭାଙ୍ଗି ଦିଅନ୍ତି।
କାଗଜରେ କାଳି ଛପିଲା ପରି
ତୋ ମୁଖ କିଏ ସେ ଦିଅନ୍ତା ଛାପି।

୮୮୨୧. କପା ରୋଇଗଲେ ପଣି କାଟନ୍ତି
ତାଙ୍କ ବୋହୂଝିଏ ଖଳି ଚାଟନ୍ତି।
କଅଁଳା ବାଛୁରୀ ଲାଞ୍ଜ ହଲାଏ
ତା ବଡ଼ଝିଅ କାପ ହଲାଏ।

୮୮୨୨. କେଳା ଜାତିର ସେ ସାପୁଆ କେଳା,
ଢୀଇ ଥାଉ ଥାଉ କାଟିବେ ଗଳା
ଡ଼ିବି ଡ଼ିବି ବାଜେ ଯୋଡ଼ି ନାଗରା
ମୋ ପାଇଁ ଥୋଇବେ ନିଆଁ ଖପରା।

୮୮୨୩. କେତେ ଲୋକ କେତେ କଥା କହିବେ
ହାଡ଼ରୁ ମାଉଁସ ଝଡ଼େଇ ଦେବେ ।
କଅଁଳ ବଚନ କହନ୍ତି କେତେ
ମୁରୁ ମୁରୁ ହସ ହସନ୍ତି ଯେତେ ।

୮୮୨୪ କମଳ ଫୁଟିଲେ ଦେବାଳୟକୁ
ଝିଅଙ୍କ ଜନମ ପର ଘରକୁ ।

୮୮୨୫. କୋଇଲିର ମେଳ ଆମ୍ବ ତୋଟାରେ
ଝିଅଙ୍କ ମେଳନ ରଜ କୋଠାରେ ।

୮୮୨୬. କା ଭାଗ୍ୟରୁ କିଏ ସୁଖ ଭୋଗୁଛି,
ପର୍ବତ ଶିଖରେ ପଦ୍ମ ଫୁଟୁଛି
ମୋ ଭାଗ୍ୟ ସିନା ଭୋଗିବି ମୁହିଁ
ପଙ୍କ ନାଳେ କଇଁ ଫୁଟଇ ନାହିଁ ।
କାହା ଭାଗ୍ୟ କିଏ ସୁଖ ଭୋଗୁଛି
ଅମାସ୍ୟା ନିଶିରେ ଚାନ୍ଦ ଉଇଁଛି ।
ମୋ ଭାଗ୍ୟ ସିନା ମୁହିଁ ଭୋଗୁଛି
ପୁନିଅଁରେ ଚାନ୍ଦ ଛପି ରହିଛି ।
ଝିଅ ଡାକ ଆଝୁଁ ସପନ ହେବ
ବନସ୍ତେ କପୋତି ଝୁରି ମରିବ ।

୮୮୨୭. କିଏ ସେ ଆଉଁଶି ଘେନିବ କୋଳେ
ନ ଖାଇଲେ କିଏ ଖୁଆଇବ ବେଳେ ।
କେତେ ସ୍ନେହେ ନେତ୍ରେ କଜଳ ଦେଇ
ପୟରେ ଅଳତା ରଞ୍ଜନ୍ତି ନେଇ ।
କେତେ ସ୍ନେହ ଦେଇ ବଢ଼େଇ ଥିଲୁ
ମୁରୁଛି ତୋ ଝିଅକୁ ଯାହା ନ ଦେଖିଲୁ ।
ପଦ୍ମ ବନହସ୍ତି କରିଛି ଢୁର
ବେଶୀ ଅହନ୍ତା ମୋଠେଇଁ ଯମର ।

୮୮୨୮. କୁଆଁର ପୁନିଅଁରେ ମୋତେ ମନେରଖିବ
ମଲା ଗଲା ତଳେ ନିଶ୍ଚେ ଲେଖିବ ।
ଖୁଦୁରକୁଣି ଓଷାରେ ମତେ ମନେ ପକାଇବ
ମୋ ପାଇଁ ବାଲୁଙ୍କା ନେଇ ଜଳେ ମାଡ଼ିବ ।
ରଜ ମଜା ଆଉ କାହୁଁ ପାଇବି
ତୁମ ଲାଗି ଝୁରି ଝୁରି ମରିବି ।
ମୋ ପାଇଁ ଦୋଳିରେ ବସିବ ମିତ
ମୋ ପାଇଁ ଗାଇବୁ ତୁ ଦୋଳୀଗୀତ ।
କଉଡ଼ି ଖେଳିଲା ବେଳେ
ଆଗ ଟାଣି ନବ କାହାକୁ ବଳେ ।
ମିଛେ ଆମ ଘରେ ଆସି ଡାକିବ
ନ ଦେଖି ମରିଛି ବୋଲି ଜାଣିବ ।

୮୮୨୯. କିପାଁ କହୁ ଏଇ ଅମଙ୍ଗଳ କଥା ;
ଜୀଇଲା ଗଛକୁ କାଟି ଦେଉଛୁ
ବଞ୍ଚିଥିଲା ଜୀବ ମାରି ଦେଉଛୁ ।
ଜନମ ବେଳେ ଅନ୍ତୁଡ଼ି ଶାଳୁ
ତଣ୍ଟି କାଟି ଯାହା ମାରି ନ ଦେଲୁ ।

## ବୁଢ଼ାକଳସ ଢମାଳି

୮୮୩୦. କହୁଛନ୍ତି ସଖୀମାନେ ବାନ୍ଧବୀରେ ଯାଇ
ଭଲ ବର ଖୋଜି ପିତା ଆଣିଲେ ଗୋ ସହି ।
କେତେ କାଳୁ ସମ୍ପାଦିଣ ବରିଲେ ଏ ବର
ଜାମ୍ବବ (=ରାଜା ଜାମ୍ବବାନ) ପରାୟେ ସଖି ବୟସ ତାହାର
ବର ଆସିବାର ଶୁଣି ଦେଖିଲୁଁ ଗୋଡ଼ାଇ
ମଥା ପୋତି ବସି ବୁଢ଼ା ଚିରୁଅଛି ମହୀ ।
ଲଜ୍ଜା ଭରେ କାହାକୁ ସେ ନ କହେ ବଚନ
ଟାକୁଆ ଚେପେଟା ନାକ ବାଙ୍କ ଯେ ବଦନ ।

ନଡ଼ିଆ ଖୋଳ ପରାୟେ ଦିଶେ ତାର ଆଖି
ଡୋଳା ଦୁଇଗୋଟା ଢ଼ିମା ଭୟକଲୁଁ ଦେଖି ।
ଖଣା ଖାଲ ପ୍ରାୟେ ପେଟ ଯାଇଅଛି ପଶି
ଲମ୍ବ ଲମ୍ବ ହାତ ଗୋଡ଼ ଶିରମାନ ଦିଶି ।
ଝୋଟ ପ୍ରାୟେ ପାଚିଣ ଅଛଇ ନିଶ ଦାଢ଼ୀ
ଦାନ୍ତ ବଡ଼ ଓଷ୍ଠ କି ପ୍ରତ୍ୟକ୍ଷେ ବଡ଼ କୋଡ଼ି ।
କପାଳ ଅଟଇ ଉଚ୍ଚ, କର୍ଣ୍ଣ ବେନି ସାନ
କେନ୍ଦୁକାଠ ପରାୟେ ଦିଶଇ ରୂପ ବର୍ଣ୍ଣ ।
ଦେଖିବା ମାତ୍ରକେ ସଖୀ ଚକିତ ହୋଇଲୁଁ
ଗୋଦର ଗୋଡ଼ ଦେଖିଣ ଭୟେ ପଳାଇଲୁଁ ।
ଲାଜ ନାହିଁ ବୁଢ଼ା ପୁଣି ଘେନିଛି କମ୍ବଳ
ଯା ମସ୍ତକେ ବିରାଜଇ ଶ୍ୱେତ ବର୍ଣ୍ଣମାଳ ।
ଲାଉଫୁଲେ ମାଳା ରଚି ହୃଦେ ଲମ୍ବାଇଛି
ଲାଜ ନାହିଁ ପାକୁଆ ଯା ପାନ ଚୋବାଉଛି ।
ଦଶହାତ ଉଚ୍ଚ ଦିଶେ ବସିଲା ଭତାରେ
କାଇବସ୍ତ୍ର ଖଣ୍ଡେ ବୁଢ଼ା ବାନ୍ଧିଛି କଟିରେ ।
ଗୋଡ଼ ହାତ ଶୂନ୍ୟ, ଫୁଲା ପଡ଼ିଛି ନୟନେ
ନାସାରୁ ସିଙ୍ଗାଣି ବହିପଡ଼େ ଅନୁକ୍ଷଣେ ।
ଭଣ୍ଡାରି ଯେ ନ ମିଳିଲା ଏଡ଼େ ମଙ୍ଗଳରେ
ବାଙ୍କ କରି ବୁଢ଼ା ଜୁଡ଼ା ପାରିଛି ପଛରେ ।
ନିଶ ଦାଢ଼ି ବଢ଼ି ତାର ହୃଦରେ ଲାଗୁଛି
ପିଠିଆଡ଼େ କୁଜଟାଏ ଉଚ୍ଚ ଦିଶୁଅଛି ।
ବିଭା ମଣ୍ଡପେ ବସିବା ଶୋଭା ନ ଦିଶଇ
ପଦକଚଉକୀ (=ନୋଳି) ଲାଇ (=ବଂଶଉପାଧି) ଦଉଛି ହଲାଇ ।
ପାଗରେ ଗୋ ଖୋସିଅଛି ମୟୂରର ପକ୍ଷୀ
ବରଣ ବେଳକୁ ଲୋକେ ହସୁଛନ୍ତି ଦେଖି ।

ଘୋଡ଼ାରେ ବସି ନ ପାରି ଘୁମାଇଁ ପଡ଼ିଲେ
କାଖ କରି ଲୋକେ ତାକୁ ମଣ୍ଡପକୁ ନେଲେ ।
ସଙ୍ଗରେ ଗୋ ଆଣିଅଛି ଯେତେକ ବାଇଦ
କୁଲା ପିଟିଲା ପରାୟେ ଶୁଭୁଛି ଶବଦ ।
ବରଯାତ୍ରୀ ପଣେ ଆସିଛନ୍ତି ଯେତେ ଲୋକ
ତନ୍ତି ହଂସି ପାଟରା କେଉଟ ଭାଟ ରଙ୍କ ।
ଘର ତାର କନିକା ଗୋ କିଲ୍ଲା ଯେ ଅଟଇ
ଅତି ଅପ୍ରଛନ୍ନ ବଡ଼ ବୁଢ଼ା ଗୋ ଦିଶଇ ।
ଲୁଣିଆ କେଉଟର ତୁ ହୋଇବୁ ଘରଣୀ
କେଉଁ ତୀର୍ଥେ ତପ ବୁଢ଼ା କରିଥିଲା ପୁଣି ।
ଗୁପତ ହୋଇଣ ବୁଢ଼ା କେଉଁ ଦେଶେ ଥିଲା
ମଧ୍ୟସ୍ଥ ଲୋକର କିଗୋ ଆଖି କି ନ ଥିଲା ।
ବର ଆଣି ଗଲା ଯେହୁ ଅଟଇ ସେ ଅନ୍ଧ
ନ ଦେଖି ନ ବୁଝି ପିତା କଲେ ଗୋ ସମ୍ବନ୍ଧ ।

## ବୁଢ଼ୀକଳସ ଢ଼ମାଳି

୮୮୩୧. କହନ୍ତି କାମିନୀମାନେ ବର ଆଗେ ଯାଇ
ଏଡ଼େ ଅପାଣ୍ଡୁକ କନ୍ୟା କଲେ ବାପ ଭାଇ ।
କେଉଁ ଧାଇ ମୁହୁସୁଲୀ (=ପୋଇଲୀ) ଯାଇଥିଲେ ଦେଖି
ହୋଇଥିଲା ଅନ୍ଧ କି ତାଙ୍କର ବେନି ଆଖି ।
ଲାଞ୍ଚ ଖାଇ କନ୍ୟାକୁ ଯେ ଦେଖିଣ ଅଇଲେ
ସୁନ୍ଦର ହୋଇଛି କନ୍ୟା ଛାମୁରେ କହିଲେ ।
ଖଦି ଧୋବ ପରାୟେ ଦିଶଇ ମଥା କେଶ
ଖସି ପଡ଼ିଅଛି ଦାନ୍ତ କହିବି ମୁଁ କିସ ?
ଭ୍ରୂଲତାର ବାଳ ଯାଇ ଲାଗିଛି କପୋଳ
ନୂଆ ଖଡ଼ି ଧୋବ ପ୍ରାୟେ ଦିଶଇ ଶରୀର ।

ନୟନର ଶୋଭା ମୁଁ ଯେ ନ ପାରଇ କହି
ନାସିକା ତ ଦିଶୁଅଛି ଚୁଲିଝିଙ୍କା ଭୂଇଁ ।
ଉଚ୍ଚ ଦିଶେ ବେକ ପୁଣି ଦିଶେ ପକା ହାଡ଼
ହସ୍ତ ଲମ୍ବାଇଲେ ଗଳି ପଡୁଅଛି ଡାଡ଼ (=ବଙ୍କା) ।
ଚମ ପ୍ରାୟେ ତଳିପା ତା ପଡୁଛି ଅଞ୍ଜୁଳି
ଅଣ୍ଟା ବାଜେ ଠକ ଠକ କନ୍ୟା ଗଲେ ଚଳି ।
ଦାନ୍ତୁଡ଼ି ଉଚ୍ଚ କପାଳି ପାଚିଲାଣି ବାଳ
କେତେ କାଳୁ ବୁଢ଼ୀ କନ୍ୟା ରଖିଥିଲେ ଘର ।
ଖାଇ ଖୁଣ୍ଟି ଛେନା ଝିଣ୍ଟି କେଉଁ ଦେଶେ ଥିଲା
ଅନ୍ନ ନ ପାଇଣ ବୁଢ଼ୀ ଏଠାକୁ ଆସିଲା ।
ଢ଼ିଙ୍କିଶାଳେ ବସି ବୁଢ଼ୀ ଖୁଣ୍ଟୁ ଥିଲା ଖଇ
ପଦ୍ମନାଭ ହସ୍ତଧରି ହେଲେ ମହାଦେଇ ।
ଖୁଁ ଖୁଁ ଖାସେ ବୁଢ଼ୀ ଆଗେ ପେଲୁଥିଲା ଧଇଁ
ଖରତର ନିଶ୍ୱାସ ଯେ ମଥା ଲାଗେ ଭୂଇଁ ।
ଦେହଯାକ ବୁଢ଼ୀର ହେ ଯାଦୁ ହୋଇ ଅଛି
ଖପରା ଖଣ୍ଡକେ ବୁଢ଼ୀ କୁଣ୍ଡାଇ ହେଉଛି ।
ଗୋଦର ଗୋଡ଼ରେ ବୁଢ଼ୀ ଅଳତା ନାଇଛି
ପାକୁଆ ପାଟିରେ ବୁଢ଼ୀ ପାନ ଚୋବାଉଛି ।
ନୟନକୁ ନ ଦିଶେ କର୍ଣ୍ଣକୁ ନ ଶୁଭଇ
ନିଲଜୀ ହୋଇ ବେଦୀରେ ବସିଛି କିପାଇଁ ।
କନ୍ୟା ଆସିବାର ଶୁଣି ଦେଖିଲୁଁ ହେ ଯାଇ
ମଥା ପୋତି ବସି ବୁଢ଼ୀ ଚିରୁଅଛି ଭୂଇଁ ।
ଲାଜେଣ କାହାକୁ ବୁଢ଼ୀ ନ କହେ ବଚନ
ଟାକୁଆ ଚେପଟା ଗାଲ ବାଙ୍କ ଯେ ବଦନ ।
ନଡ଼ିଆ ଖୋଳପା ପ୍ରାୟ ଦିଶେ ବୁଢ଼ୀ ଆଖି
ଡୋଳା ଦୁଇ ଗୋଟି ଡ଼ିମା ଭୟକଲୁଁ ଦେଖି ।

ଖଣା ଖାଲ ପ୍ରାୟ ପେଟ ଯାଇଅଛି ପଶି
ଲମ୍ବ ଲମ୍ବ ହାତ ଗୋଡ଼ ଶିରାମାନ ଦିଶି ।
କପାଳ ଦିଶଇ ବଡ଼, କର୍ଣ୍ଣବେନି ସାନ
କେନ୍ଦୁକାଠ ପ୍ରାୟକ ଦିଶଇ ରୂପବର୍ଣ୍ଣ ।
ଦେଖିଲା ମାତ୍ରକେ ସଖୀ ଚକିତ ହୋଇଲୁ
ଗୋଦର ଗୋଡ଼ ଦେଖିଣ ଭୟେ ପଳାଇଲୁଁ ।
ଲାଜ ନାହିଁ ବୁଢ଼ୀକି ଗୋ ଘେନିଛି କଜ୍ଜ୍ୱଳ
ଦେଖିକରି କି ବୋଲିବେ ରାଜନ ଆମ୍ଭର ।
ତିନିହାତ ଉଚ୍ଚ ଦିଶେ ବସିଲେ ବେଦିରେ
କାଇ ବସ୍ତ୍ର ଖଣ୍ଡେ ବୁଢ଼ୀ ଭିଡ଼ିଛି କଟିରେ ।
ଗୋଡ଼ ହାତ ଶୂନ୍ୟ, ଫୁଲା ପଡ଼ିଛି ନୟନେ
ନାସାରୁ ସିଂଘାଣି ବୋହିପଡ଼େ ଅନୁକ୍ଷଣେ ।
ଖଣ୍ଡିଆ ଗୋଦରୀ ବୁଢ଼ୀ ବସିଛି ବେଦିର
ଖରତର ନିଶ୍ୱାସ ଗୋ ବୋହୁଛି ତାହାର ।
ଆଣ୍ଠରେ ଡାକିଲେ ତାକୁ ନ ଶୁଭେ କର୍ଣ୍ଣକୁ
ଆଣିକରି କେହୁ ବିହି ଭେଟାଇଲା ତାକୁ ।
କହିବା କାମିନୀମାନେ ଏହା ଥିବେ ଜାଣି
କରିଥିବା ଢ଼ମାଳି ଗୋ ବାଦରେ ପ୍ରମାଣି ।
କଉତୁକ ପରି ବିଭା ମଣ୍ଡପେ ଢ଼ମାଳି
ମେଳିବ ମଙ୍ଗଳ ତାନେ ନ କରିବ କଳି ।

## ଓଡ଼ିଆ ଯାତ୍ରା ସଂଳାପରୁ

୮୮୩୨. ଦୁଆରୀ ଓ ମୁଦୁସୁଲୀ (=ପୋଇଲି) ବୋଲା ବୋଲି
ଦୁଆରୀ- କିଏ କିଲୋ ମୋଟି
ଡାକୁଛୁ କୁହାଟି
ବେଳୁ ବେଳ ଯାଏ ଗଣ୍ଡିଫୁଲି
ମୁଦୁସୁଲୀ କିଲୋ ମୁଦୁସୁଲି ।

ମୁଦ୍ରୁସୁଲୀ- କିଏ ରେ ସୁକୁଟା ପୋଇଲା ଟୋକା
ଅଲାଯୁକ ମାରୁ ଆଖି ମିଟିକା,
ଖଡୁ ଭୁଷାରେ ତୋ ଭାଙ୍ଗିବି ଅଣ୍ଟା
ଭାରିକା ପାଖରୁ ଖାଇବୁ ଖୁଣ୍ଟା ।
ଦୁଆରୀ- କହନା ଆଉ
ଆଉ କଥା ସବୁ କାଲିକି ଥାଉ
ରଜାଘରକୁ ତୁ ହେବୁ ଲୋ ଟଣା
ମାଇପି ପଣିଆ ପଡ଼ିବ ଜଣା ।
ପୀରତି ପଥଟା ଖସଡ଼ା
ଖସିଯାଏ କେବେ ଅତଡ଼ା ।
ଯାହାକୁ ଯିଏତ ରସିଲା
କିଆ ଫୁଲପରି ବାସିଲା ।
ମୁଦ୍ରୁସୁଲୀ- କାହାକୁ ରସୁଛୁ ପୋଇଲା ଟୋକା
ଦିନୁ ଦିନୁ ହଉ ବଡ଼ ଛଟକା ।
ଦୁଆରୀ- ମତେ ଆଉ କିଏ ରସିବ
କାନେ ଚୁପଚୁପ ଭାସିବ ।
ମୁଦ୍ରୁସୁଲୀ- ହଇରେ ପୋଇଲା
ରସ ସାଗର, ନବ ନାଗର ।
କାହାକୁ କରୁଛୁ ପର ନିନ୍ଦା
ଭାରିକା ପାଖରୁ ଖାଇଣ ଖୁନ୍ଦା ।
ମୋ ଦେହ ବାସେ ଚନ୍ଦନ ଚୂଆ
ତୁ ତ ଦିଶୁ ସତେ କାଳିଆ ଭୁଆ ।
୮୮୩୩. ମୁଦ୍ରୁସୁଲୀ -କିଏ ରେ ସେଟା
ଧରି ଚୁମୁଟା
ମୁଣ୍ଡରେ ଗୁଡ଼ାଇ ପୁଳାଏ ଜଟା
ହାତରେ ଧରିଛି ବଡ଼ ବୀଣାଟା
ଢିଙ୍କିରେ ବସିଛି ଏଡ଼େ ନିଲଠା ।

ଦୁଆରୀ - ତା କଥା କହନା ତୁ ଆଉ ହସି
ସେ ପରା କଳିଆ ନାରଦଋଷି ।
କରିଦେବ ବସି ଏମତି ପେଞ୍ଚ
ନାଚୁଥିବୁ ତୁଲୋ ଓଡ଼ିଶୀ ନାଚ ।

୮୮୩୪. କର୍ମେ ଯାହା ଲେଖାଅଛି ତାହା ମୁଁ ଭୁଞ୍ଜିବି
ତୁମ୍ଭଠାରୁ ନେଇ କେତେ ଦିନ ସୁଖୀ ହେବି ।

୮୮୩୫. କ୍ରିୟା ଯୋଗୁ ଶ୍ରେଷ୍ଠ ସିନା ଅକ୍ରିୟାରେ ନଷ୍ଟ
କର୍ମହୀନ ହେଲେ ବଡ଼ ଲୋକେ ପାନ୍ତି କଷ୍ଟ ।

୮୮୩୬. କପଟ ଲମ୍ପଟ ଦୁଷ୍ଟ,ନାରୀ ରୂପରେ ଆକୃଷ୍ଟ
କରେ ସେ ସତୀତ୍ୱ ନଷ୍ଟ ।

୮୮୩୭. କିଏ କାହାର ବନିତା, କିଏ ସେ ଅଟଇ କାହାର ପିତା
ମାୟା କଲା ହତ ଚେତା ।

୮୮୩୮. କେଢ଼େ କଳଙ୍କ ହେଲା,
ସ୍ୱାରୀ ହେଇ ତୁ ହେଲୁ ଲଙ୍ଗଳା
ଛି ଲୋ ଲଙ୍ଗୁଳି, ବରବାଙ୍କ ଗନି
ଅମଙ୍ଗଳି ତୋ ସୁହାଣି, ଦୁଆର ବାରେଣୀ
ହେଲେ ତ ଉଜାଣି, ଉପରକୁ ଉଠେ ପାଣି ।

୮୮୩୯. କିଏ କିରେ ପୋଇଲା ପୁଅ
ତାହାକୁ ଅନେଇ ଭକୁଆ ହୁଅ ।

## ଶବର ଶବରୀ ବୋଲା ବୋଲି

୮୮୪୦. ଶବର- କହୁଛି ଲୋ ପ୍ରାଣେଶ୍ୱରୀ
କାଲି ମୁଁ ଯାଉଛି ବିଦେଶ କରି
କିସ ବିଚାରି
ନ ଦେବୁ ଗୋରୀ ଲୋ ମୋତେ ପାସୋରି
କହି ଯାଉଛି ଲୋ, ରହି ଆସିବି ମୁଁ ଦିନ ଚାରି ।

ଶବରୀ- ଖଡ଼ି ଧରି କଲେ ଗାର
ଖଟିବାର ହେବ ଦିନ ପନ୍ଦର
ଖୁରିଏ ମୋର
ପାଶୁ ଅନ୍ତର
ହେବ ନାଗର
କ୍ଷୀଣ ହେବଟି ହେ
ମୋର ପ୍ରୀତି ହେବ ନାରଖାର ।

୮୮୪୧. ଶବର- ଗେଲାଇ ଗଜଗମନା
ଗରିବ ରତନ ଗଣ୍ଠିର ସୁନା
ଗଲେ ମୁଁ ସିନା
ଗଳାକୁଚିନା
ଗଢ଼ାଇ ଆଣିବି ଆରେ ନବୀନା
ଗେଲ ବାଣୀରେ ଗୋ, ମୋତେ ହସି କହ ସୁଲୋଚନା ।

ଶବରୀ- ଘରେ ଛାଡ଼ି ଯୁବା ସ୍ତିରୀ
ଘରୁ ଯେବେ ଯିବ ବିଦେଶ କରି
ଘନର (=ମେଘର) ରଡ଼ି, ଘଡ଼ିକି ଘଡ଼ି
ଶୁଣି ପିଣ୍ଡୁ ପ୍ରାଣ ଯିବଟି ଛାଡ଼ି
ଘେନ ଗୁହାରି ହେ
ମୋର ମହତ ଯିବଟି ସରି ।

୮୮୪୨. ଶବର- ଝୁରିବୁ ନାହିଁ ଲୋ ତୁହି
ଝରାକାଠି ଆଣି ଦେବି ତୋ ପାଇଁ
ଝୁଣ୍ଟିଆ ଦେଇ, ଝରା ମଲକଡ଼ି ଦେବି ଗଢ଼ାଇ
ଝୁରା ଶିଙ୍କୁଳି ଲୋ ତୋର ମଥାରେ ଖୋସିବା ପାଇଁ

ଶବରୀ- ନିଶି ଦିନ ନ ସରିବ
ନିଶାରେ ମୋ ପାଶେ କିଏ ସେ ଥିବ

ନିଦାନ ଭାବ, ଲଗାଇ ଥିବ
ନାନା ରଙ୍ଗେ ତୁମ୍ଭ କିଏ ସେ ଦେବ
ନିଶି କାଳରେ ହେ, ମୋର ଦିନ କେମନ୍ତେ ସରିବ ?

## ଦାଣ୍ଡଧୁଆ ପଦମାଳ

୮୮୪୩. କହନ୍ତି ପାର୍ବତୀ ଆଗୋ ଶୂଳପାଣି
କାନ୍ଦଇ ଅଯୋଧ୍ୟାର କଉଶଲ୍ୟା ରାଣୀ
କଲେ ଯେ ଗମନ ରାମ ଅଗମ୍ୟ ବନମାର୍ଗେ
କମଳ ମୁଖୀ ସୀତା ମୋ ଗୋଡ଼େଇ ଗଲା ସଙ୍ଗେ ।

୮୮୪୪. କ୍ଷଣକେ ଛାଡ଼ିଲେ ରାମ ଅଯୋଧ୍ୟାର ଆଶ
ଖୋଳି କନ୍ଦମୂଳ ଯେ ତରୁତଳ ବାସ
ଖଟଣି ପାରୁଶେ ତ ଜନକ କୁମାରୀ
ଖଣ୍ଡେ ଦୂରେ ଜଗିଥାନ୍ତି ଯେ ଲକ୍ଷ୍ମଣ ଧନୁର୍ଦ୍ଧାରୀ ।

୮୮୪୫. କହଇ ଚଇତନ ଶୁଣ ହୋ ମନ
କର ତୁହି ଚିନ୍ତା ଶ୍ରୀଗୁରୁ ଚରଣ
କଳୁଷ ଖଣ୍ଡନ ହୋଇବ ତୋହର
କର ତୁହି ଚିନ୍ତା ଶ୍ରୀଗୁରୁ ଚରଣରେ ମନୁଆ
ଭବୁ ପାଇଯିବୁ ପାର ।

୮୮୪୬. କହଇ ସୁନ୍ଦରୀ ହୋ ଉତ୍ତମ ଭାବ ବହି
ଉଲଟ ତରୂମୂଳେ ସଦାନନ୍ଦ କହି
ଉଲଟ ତରୂମୂଳେ ତ୍ରିବେଣୀ ତିନିଧାର
ସତ, ରଜ, ତମ ଏ ତିନି ପ୍ରକାର
ଉଜାଣି କମଳ ଉପରକୁ କର
କେଶରେ ମୁଦ୍ରିତ ହୋଇଛି ଭ୍ରମର
କେଶରେ ମୁଦ୍ରିତ ହୋଇବ ଯେବେ
ମୃତ୍ୟୁ ହେବ ଛାର ହୋ ଯୋଗୀନ୍ଦ୍ର
ବିଛାଇ ହେବ ତେବେ ।

# ଶିଶୁ ଝରା

## କଳା, ଧଳା, ନାଲି, ପିତା, ମିଠା, ହିମ

୮୮୪୭. କାଉକଳା, କୋଇଲି କଳା
କାଳିଆର କଳା ବେଶ ।
ତାଠାରୁ ବେଶି କଳା, ଝିଅଲୋ, ତୋ ମୁଣ୍ଡର କେଶ ।

* * *

ବଗଧଳା, ବସ୍ତ୍ରଧଳା,
ଧଳା ରାଜ ହଂସ
ତା ଠାରୁ ବେଶିଧଳା, ଝିଅଲୋ, ତୋ ହାତର ଶଙ୍ଖ ।

* * *

ଜବା ନାଲି, କରବୀ ନାଲି,
ନାଲି କୁସୁମ ଫୁଲ
ତା ଠାରୁ ବେଶି ନାଲି, ଝିଅଲୋ, ତୋ ସିଁଥାର ସିନ୍ଦୁର ।

* * *

ନିମ ପିତା, କଲରା ପିତା,
ପିତା କଅଁଳା ଫଳ,
ତା ଠାରୁ ବେଶି ପିତା, ଝିଅଲୋ, ଭଗ୍ନି ସଉତୁଣୀ ଘର ।

* * *

ଆଖୁମିଠା, କୋରା ମିଠା,
ମିଠା 'ପିଲା ବୋଲ,
ତା ଠାରୁ ବେଶି ମିଠା, ଝିଅଲୋ, ତୋର କୋଳ ।

* * *

ହିମ ଜଳ, ହିମ ସ୍ଥଳ,
ହିମ ଶୀତଳ ପାଟି (=ଶୀତଳ ସ୍ପର୍ଶ ମସୃଣ ପତଳା ମଶିଣା)
ତା ଠାରୁ ଅଧିକ ହିମ, ଝିଅଲୋ, ତୋ ବୁକୁର ଛାତି ।

## ସତ୍ୟକେବଳ

୮୮୪୮. (୧) କଲମ କାଳି, ତେଲ କାଳି
ତାକୁ କି କୁହେ କାଳି ?
କାଳି ମଧ୍ୟରେ ସତ୍ୟ କେବଳ
ଭଦ୍ରକର **ଭଦ୍ରକାଳୀ ।**

(୨) ଆମ୍ବ ଚେଲା, ତେନ୍ତୁଳୀ ଚେଲା
ତାକୁ କି କୁହେ ଚେଲା ?
ଚେଲା ଭିତରେ ସତ୍ୟକେବଳ
**ସତ୍ୟ ପୀରଙ୍କ ଚେଲା ।**

(୩) ପର୍ବତ ଶେଖର, ମୟୂର ଶେଖର
ତାକୁ କି କୁହେ ଶେଖର ?
ଶେଖର ଭିତରେ ସତ୍ୟ କେବଳ
**ଜ୍ୟୋତିର୍ବିଦ ଚନ୍ଦ୍ରଶେଖର ।**

(୪) ଜ୍ଞାନ ହର, ଧନ ହର
ତାକୁ କି କୁହେ ହର ?
ହର ଭିତରେ ସତ୍ୟ କେବଳ
ଆମ **ଆଚାର୍ଯ୍ୟ ହରିହର ।**

(୫) ସୁଖର ବନ୍ଧୁ, ଦୁଃଖର ବନ୍ଧୁ
ତାକୁ କି କୁହେ ବନ୍ଧୁ ?
ବନ୍ଧୁ ଭିତରେ ସତ୍ୟ କେବଳ
ଥିଲେ ସେ **ଗୋପବନ୍ଧୁ ।**

(୬) ମାନର ଭଞ୍ଜ, ଧନର ଭଞ୍ଜ
ତାକୁ କି କୁହେ ଭଞ୍ଜ ?
ଭଞ୍ଜ ଭିତରେ ସତ୍ୟ କେବଳ
**କବି ସମ୍ରାଟ ଭଞ୍ଜ ।**

(୭) ପ୍ରେମର ଛନ୍ଦ, ବିଷାଦର ଛନ୍ଦ
ତାକୁ କି କୁହେ ଛନ୍ଦ ?

ଛନ୍ଦ ଭିତରେ ସତ୍ୟ କେବଳ
**ଉଗ୍ର କବି ବିଛନ୍ଦ ।**

(୮) ଧନର ଦାସ, ମନର ଦାସ
ତାକୁ କି କୁହେ ଦାସ ?
ଦାସ ଭିତରେ ସତ୍ୟ କେବଳ
ଶୁଦ୍ର ମୁନି **ସାରଳାଦାସ ।**

(୯) ରାଇଜର ଦେବ, ବିଶ୍ୱର ଦେବ
ତାକୁ କି କୁହେ ଦେବ ?
ଦେବ ଭିତରେ ସତ୍ୟ କେବଳ
ଉକ୍ତକବି **ଜୟଦେବ ।**

(୧୦) ପ୍ରାସାଦ ଚରଣ, ପର୍ବତ ଚରଣ
ତାକୁ କି କୁହେ ଚରଣ ?
ଚରଣ ଭିତରେ ସତ୍ୟ କେବଳ
**କବିଚନ୍ଦ୍ର କାଳିଚରଣ ।**

(୧୧) ଭକ୍ତିରେ ଆନନ୍ଦ, ମୁକ୍ତିରେ ଆନନ୍ଦ
ତାକୁ କି କୁହେ ଆନନ୍ଦ ?
ଆନନ୍ଦ ଭିତରେ ସତ୍ୟ କେବଳ
**ଗୁରୁ ହୃଦୟାନନ୍ଦ ।**

(୧୨) ଗରବେ ରୀସ, ଅହଙ୍କାରେ ରୀସ
ତାକୁ କି କୁହେ ରୀସ ?
ରୀସ ଭିତରେ ସତ୍ୟ କେବଳ
**ପଣ୍ଡିତ ଗୋଦାବରୀଶ ।**

## କାହିଁ-କିଏସେ-ହାସୀ-ପୁଷି

୮୮୪୯. **କାହିଁ ?**

ସର ଘରେ ଢାଙ୍କି ଦେଲି
ଚିନି ପକା ଦହି
ରାତି ରାତି ଉଭେଇ ଗଲା
ଭଜିଲି ଗୋସାଇଁ ।

**କିଏ ସେ ?**

ଝରକା ଡ଼େଇଁ ଚୁପଚୁପ
ଶୋଇଲା ଘରେ ପଶେ
ମୋତେ ଦେଖି ପଳାଇ ଯାଏ
ଏବେ ଦିବାଲୋକେ ।

**ହାସୀ !**

ଧରା ପଡ଼ିଗଲ ତୁମେ
ବିଲେଇ ମାଉସୀ
ସାଇ ବୁଲା ଧଳା ବିଲେଇ,
ତୁ ମୋର ପ୍ରେୟସୀ ।

**ପୁଷି,**

ଆସ ଆମର ଏଇ ଘରକୁ
ଯେବେ ତୁମର ଖୁସି
ଚୋରଙ୍କ ଭଳି ଲୁଚେଇ ଲୁଚେଇ
ଖାଅ ନା ରାକ୍ଷସୀ ।

## ବିଲେଇ ମାଉସୀ

୮୮୫୦. କିସ କରୁଛ ବିଲେଇ ମାଉସୀ
କିସ କରୁଛ ପୁଷି
ହାତ ଚାଟୁଛ ପାଦ ଚାଟୁଛ
ଚାଟି ଚାଟି ଖୁସି ।
ପୁସ ! ପୁସ ! ଲେବେନ୍‌ଝୁସ
ପୁସ ! ପୁସ ! ଲେବେନ୍‌ଝୁସ
ଆମେ ଯେମିତି ଲେବେନ୍‌ଝୁସ
ମନ ଖୁସିରେ ଚୁସି
ପିଠିରେ ଦେଲେ ବୁଲାଇ ହାତ
ଯାଅ କାହିଁକି ରୁସି ।

ହିମ ! ହିମ ! ଆଇସକ୍ରିମ
ହିମ ! ହିମ ! ଆଇସକ୍ରିମ
ଆଇସକ୍ରିମ ଚାଟିଲେ ଯେମିତି
ଆମର ମନ ଖୁସି
ଏମିତି କିଆଁ ଅନାଇରୁହ
ମିଷ୍ଟାସ ଖାନାରେ ବସି ।

## ଫଟାକପାଳ

୮୮୫୧. କରୁଣା ସାଗର ଗୋପ
କରୁଣା କର ହେ ଗୋପ,
ଘର କଣରେ ବସିଛ ତ
ଏମିତି କିଆଁ ଛକ ପକ ।
ହାୟରେ ମୋର ଫଟା କପାଳ
ହାୟରେ ମୋର ଫଟା କପ ।
ହୋଟେଲରୁ ଆଣି ଦେଇଗଲା
ଗଣ୍ଡା କେତେ ମଟନ ଚପ୍ ।
ବିଲେଇ ଆସି ଖାଇଗଲା
ଖପା ଖପ୍, ଖପା ଖପ୍
ହାୟରେ ମୋର ଫଟା କପାଳ
ହାୟରେ ମୋର ଫଟା କପ୍ ।

## ମଶା

୮୮୫୨. କିସ ହେଲା ବାଲେଶ୍ୱର ଦଶା
ରାତିରେ ମଶା, ଦିନରେ ମଶା
ମଶାର ଏଠାରେ ଶାସନ
କୁଆଡ଼େ କରିବି ଗମନ
କୁହ ଭାଇ,
କେଉଁଠି ମଶା ନାହିଁ

ସେଠିକି ଦଉଡ଼ି ଯିବି ମୁହିଁ ।
ମ୍ୟାଲେରିଆ ମହାମାରୀ,
ରକ୍ଷାକରେ କି ମଶାରୀ,
ସାଧ କାହାର କରିବ ଧ୍ୱଂସ,
ଆଦି କାଳର ମଶାର ବଂଶ ।
ମଶା କହେ ମୋର କିସ ?
ଜଣା ନାହିଁ ଚାଷ ବାସ ।
ଅଜାଣତରେ ବହି ଆଣେ
କାହାର ବୀଜାଣୁ କିଛି ନ ଜାଣେ ।

## କାହ୍ନୁ କହ୍ନେଇ

୮୮୫୩. କାହ୍ନୁ କାହ୍ନୁ କହ୍ନେଇ
ଲୁଗା ଦେବି ବୁଣେଇ
ତହିଁରେ ଥିବ ନୀଳ ଧଡ଼ି
ଜଳିବେ ସାଇ ଯାକର ବୁଢ଼ୀ ।
ତହିଁରେ ଥିବ ହୀରା ଟୋପ ।
ଜଳିବେ ସାଇ ଯାକର ଲୋକ ।
ତିହିଁରେ ଥିବ ଧଡ଼ିରେ ଜରି
ଜଳିବେ ସାଇଯାକର ନାରୀ ।

## କୁନାଯିବ

୮୮୫୪. (୧) କୁନା ଯିବ ନାଆରେ
ନାଲି ଜୋତା ପାଦରେ
ଲକ୍ଷେ ଟଙ୍କାର ମଲମଲ ଥାନ
ସୁନେଲୀ ପାଟ ଦେହରେ ।
ବୁକୁରେ ନାଲି ଗୋଲାପ ଫୁଲ
କୁନା ବାବୁ ଯିବ ନଈ କୂଳ ।

(୨) କୁନା ଯିବ ଗୋରୁ ଚରାଇ
ଖାଇ ଯିବ କି ?
(ଆମ) ଶିକାଉପରେ ଗରମ ରୁଟି
ତସଲା ଭରା ଘି ।

(୩) କୁନା ଯିବ ରଥଚଢ଼ି
ବେଙ୍ଗ ହେବ ସାରଥି
ମାଟି କଣ୍ଢେଇ ନଙ୍ଗର ପଙ୍ଗର
ପିମ୍ପୁଡ଼ି ଧରେ ଛତ୍ରୀ ।

## କଖାରୁ ନନ୍ଦ

୮୮୫୫. କାଖରେ କି ଏଟା କଖାରୁ-ନନ୍ଦ
ଦେଖାଅ ହେ ଖୋଲି ଭଲ କି ମନ୍ଦ ।
କଳା ନା ନେଳିଆ, ଥଣ୍ଡା ନା ଗରମ
ହାଲୁକା ନା ଭାରି, କଡ଼ା ନା ନରମ
ପତଳା ନା ଗୁରୁ, ଶସ୍ତା ନା ଦାମୀ
କଞ୍ଚା ନା ପାଚିଲା, ନାମୀ ନା ବେନାମୀ,
ମିଠା ନା ପିତା, ଖାସା ନା ବିଶ୍ରି
ଅଟା ନା ମଇଦା, ମୁଢ଼ୀ ନା ମିଶ୍ରି,
ଦେଖେ ଦେଖେ ଟିକେ ସେ ମହାବସ୍ତୁ
ଲୁଚେଇ ରଖିଛ ହେ ! କଖାରୁ-ବାସ୍ତୁ ।
ପୁଟୁଳିଟି ଖୋଲ ଥରୁଟିଏ ମାତ୍ର
ଦେଖିବି କି ଅଛି ଜନିଷ ପତ୍ର
କାଞ୍ଜୁ ମାଛ ମୁହିଁ କଖାରୁ-ନନ୍ଦ
ଖୋଲିଲା ପୁଟୁଳି ଘୁଞ୍ଚିଲା ଧନ୍ଦ (=ଦ୍ୱନ୍ଦ୍ୱ) ।
କାଙ୍କ -କାଙ୍କ-କାଙ୍କ - କଙ୍କଡ଼ା ! କଙ୍କଡ଼ା !
ଛତା ଜୋତା ଫିଙ୍ଗି ମାଇଲା ଦଉଡ଼ା ।

## ଲହୁଣୀ ଚୋର

୮୮୫୬. କୁନା ଯାଏ ଢ଼ଳି ଢ଼ଳି
ଗଉଡୁଣୀ ଗାଁ ଝାର,
ଗଉଡୁଣୀଏ ରଡ଼ି ଛାଡ଼ନ୍ତି
କାହିଁ ସେ ଲହୁଣୀ ଚୋର ।
ହାଣ୍ଡି ଭାଙ୍ଗିଛୁ, ଲହୁଣୀ ଖାଇଛୁ
ଯାଉଛୁ କୁଆଡ଼େ ଦୌଡ଼ି
କଦମ୍ବ ମୂଳେ ଦେଖା ମିଳିଲେ
ପ୍ରିୟ, ବଂଶୀ ନେବି କାଢ଼ି ।

## କୁନା କାନ୍ଦେ

୮୮୫୭. କିସ ପାଇଁ କାନ୍ଦୁ କୁନା
କିସ ନାହିଁ ଆମ ଘରେ,
ସୁନାବଳା ଗଢ଼ିଦେବି
ମୁକ୍ତା ଧାରେ ଧାରେ ।

## ଜଳପାଣି

୮୮୫୮. କିଏ କହେ ପାଣି ଦିଅ
କିଏ କହେ ଜଳ କାହିଁ
ଜଳ ପାଣି ପିଇ ଦେଖ
ବସ୍ତୁଟି ଗୋଟିଏ, ଭାଇ ।

## ଆର୍ତ୍ତନାଦ

୮୮୫୯. କିଏରେ କିଏରେ,ଅଇଲାରେ ଅଇଲାରେ
କିଏରେ କିଏରେ,କି ହେଲା ଭାଇରେ
କିଏ ରେ କିଏ ରେ
ଖାଇଲାରେ ଖାଇଲାରେ
କିଏ ଖାଇଲା,କିଏ ଖାଇଲା
ଖୋଲି କହ ଭାଇ ରେ।

ପିମ୍ପୁଡ଼ିଟି କାମୁଡୁଛି
ମୋତେ ଚାହିଁ ଚାହିଁ ରେ ।

## କୁନାସୁନା

୮୮୬୦. କିଏ ଧରିଛି କିଏ ମାରିଛି
କିଏ ଦେଇଛି ଗାଳି
କୁନା ସୁନାକୁ ସମ୍ପାତ ଦେଲେ
ମରିବ ସେ କାଲି ।

## କୁନାନାଚ

୮୮୬୧. କୁନୀ ନାଚି ଯାଆରେ
ସୁନା ନୁପୁର ପାଦରେ
ହାତରେ ଧରି ପଣସ କୋଷା
ଚୁଷି ଚୁଷି ଖାଆରେ ।
କୁନା ଫେରି ଫେରି ଚାହାଁରେ
ଆ ମୋର କୋଳକୁ ଆରେ ।

୮୮୬୨. କୁନା ନାଚଇ ଧରିଛି କାନି
ଢେ଼ଇଁ ଢେ଼ଇଁ ଗଲା ବେଙ୍ଗୁଲୀ ନାନୀ
ଆରେ ବେଙ୍ଗୁଲୀ ଫେରି ଚାହାଁ ।
କୁନାର ନାଚ ତୁ ଦେଖି୍ ଯା ।

## କାଳିଆ ସୁନା

୮୮୬୩. କାଳିଆ ସୁନା ଜହ୍ନ ରଙ୍କୁଣା
ପାଇଛି ମନ ମୋତେ
ନ ଜାଣି ନଈକୂଳରେ
ତପ କରିଛି କେତେ ।

## କୋଳପୁଅ

୮୮୬୪. କଅଁଳା ବାଛୁରି ଗୁହାଳର ଶୋଭା
ଗଗନର ଶୋଭା ଚାଁଦ ।
କୋଳର ଶୋଭା ପୁଅ ମାଆର
ହେଁସ ଉପରେ କାନ୍ଦ ।

## କୋଇଲି ଖେଳଢ଼ମାଳି

୮୮୬୫. କୋଇଲି, କୁକେଇଲା
କୋଇଲି କୁକେଇଲା ।
ପାଟ ମହାଦେଈ ଗାଧେଇ ଗଲେ
ସୁନା ଝିକ-ଝିକେଇଲା
ରୂପା ଝିକ-ଝିକେଇଲା ।

## ଶବ୍ଦ ଲହଡ଼ି (୧)

୮୮୬୬. କୂଳ ମୂଳ ଦଉଡ଼ି
ବାଘ ନେଲା ଘଉଡ଼ି
ତାଳ ଗଛରେ ଭଅଁର ପୋକ
ମୁଁ କି ଜାଣେ ପିଲା ଲୋକ ?
କଳା କଳା ବାଇଗଣ, ଧଳା ଧଳା କଉଡ଼ି
ନେଇ ଯା ତୋ ବାଇଗଣ, ଦେଇଯା ମୋ କଉଡ଼ି ।
୮୮୬୭. କୁଚ -କୁଚାଣି - ମାଆ ଲୋ,
ଯାଇଗା କୁଣୀ - ମାଆ ଲୋ,
ଯେଉଠି ଥିବୁ - ଥାଆଲୋ
ଚୁପ ଚାପ ମାଗୁର ମାଛ ।
୮୮୬୮. କାଆ ରବ ବଢ଼ିଆ
ଟିକି ଟିକି ଗଡ଼ିଆ
ନଡ଼ିଆ ପୁରରେ ମଣ୍ଡା କରିଥିଲି
ଝାମ୍ପି ନେଲା ଧଡ଼ିଆ ।

୮୮୬୯. କାଠିକି କାଠି, ଚନ୍ଦନ କାଠି ।
ଚନ୍ଦନ ବୋଲେ କା-କା,
ପରଜାପତି ଉଡ଼ି ଯାଆ
ପରଜାପତି ପୁଅ ମଲା,
ମୋ ଉପରେ ତାଳ ଛିଡ଼ିଲା
ରାମ ଜେନାଙ୍କର ଭାଇ ମଲା
ରକ୍ତ ହାଣ୍ଡିଏ ବୋହିଗଲା ।

## କୁନା ଶାଶୁଘର

୮୮୭୦. କୁନା ଶାଶୁଘର କାଥିଆପଡ଼ା
ବେଙ୍ଗ ବୋବାଉଛି ଅଠର ଯୋଡ଼ା
କାହିଁକିରେ ବେଙ୍ଗ ବୋବାଉଛି
ବେଙ୍ଗ ଶାଶୁ ମୁଣ୍ଡ ଚୋବାଉଛି
କୁନା ଶାଶୁଘର ବାଆଁ ବରଡ଼ା
କୁନା ନାଇବ ସୁନା ହରିଡ଼ା
କୁନା ଶାଶୁଘର ବାଉଁଶଝାଡ଼ି
ବାଇଦ ବାଜିବ ଧାଡ଼ିକି ଧାଡ଼ି
କୁନା ଯାଉଥିବ ପାଲିଙ୍କି ଚଢ଼ି ।

## କିଏରେ

୮୮୭୧. କିଏ ରେ, କିଏ ରେ, କିଏ ରେ,
ତପ୍ତ ଦୁଧରେ ଚିନି ପଣା
ମଣ୍ଡା ଚକଟି ଦେରେ ।

## କୁନା ଆମର

୮୮୭୨. କୁନା ଆମର କାହିଁ
ପାଣିରେ ଭାସେ ଖଇ
ଶୁଖିଲା ବଟାର ପାନ
ଆମ୍ବିଳ ହେଲା ଦହି ।

## କୁନାଡାକ

୮୮୭୩. କୁନା କୁନା ଡାକ ପଡ଼ିଛି
କୁନା କହେ, ମା' ଶାଗତୋଳୁଛି
ମରିଯାଉ ସେ ଶାଗ ପଟାଳି
କୁନା ଖାଇବ ଦୁଧ କଦଳୀ ।

## କୁନୁମୁନ

୮୮୭୪. କୁନୁମୁନ କୁନୁମୁନ କୁନୁମୁନା ।
କୁନୁ ଖରା ଦିନେ ବେଣା
କୁନୁ ବର୍ଷା ଦିନେ ଛତା
ଜାଡ଼ ଦିନେ କନ୍ଥା
କୁନୁ ବାଳ ବନ୍ଧା ଫିତା
ହୁକାକୁ ଦୋକତା
ପାରି ଶୋଇବାକୁ ହେଁସ ନାହିଁ
କୁନୁ ଧୂଳିରେ ହାଇଁ ପାଇଁ ।

## ଶିଶୁ ଖୁଆଇବା ଢ଼ମାଳି

୮୮୭୫. କକ ମିନାରେ ବାଇ ଚଢ଼େଇ
ବାଡ଼ି ପଲାରେ ଥାଆ
ରାଧିକା କାନ ମୋଚି ମୋଚି
କହ୍ନେଇ କାନ ଖାଆ ।

୮୮୭୬ ଖରା ମାଲୋ ଖରେଇ ଦେ
ଛାଗଳ ଖାଇବ ଦେ
ଛାଗଳୀର ମାଆବୁଢ଼ୀ
କାଠ କୁଢ଼େଇ ଗଲା
ଦିଖଣ୍ଡ ଲୁଗା ପାଇଲା
ଛଅ ବୋହୂଙ୍କୁ ଦେଲା ।

ନିଜେ ମରୁଛି ଜାଡ଼ରେ
କଦଳୀ ଗଛ ଆଡ଼ରେ ।
କଦଳୀ ପଡ଼େ ଦୁପ୍ ଦାପ୍
ବୁଢ଼ୀ ଖାଏ କୁପ୍ କାପ୍ ।
ଯାରେ ବୁଢ଼ୀ ଷଷ୍ଠୀଥାନ
ସେଠି ପାଇବୁ ଥାନ ମାନ ।
ଯାରେ ବୁଢ଼ୀ ସିଙ୍ଗଟିଆ
ସେଠି ଦେଖିବୁ ବାଡ଼ିଖିଆ ।
ଯାରେ ବୁଢ଼ୀ କଲିକତା
ସେଠି ପାଇବୁ ଛିଣ୍ଡାକନ୍ଥା ।
ଯାରେ ବୁଢ଼ୀ ମଧୁବନ
ସେଠି କରିବୁ ଜଳପାନ ।
ମଧୁବନର ରଙ୍ଗାମାଟି
ବୁଢ଼ୀକୁ ଧରି ଉତୁଙ୍ଗ କାଟି,
ଖାନନଗରର ମଇଦା, କନକପୁରର ଘିଅ
ବିଳମ୍ବରେ ପୁରୀ ଟିକେ ଟିକେ ଭାଜିଦିଅ ।
ଝିଅଯିବ ନାଆରେ
ଖରା ପଡ଼ିଲେ ଦେହରେ
ଲୋକେ କହିବେ କଳା
ପାଟଣାରୁ ହଳଦୀ ଆଣି
ଦେହ କରିଦିଅ ଧଳା ।

## ନିର୍ବାଚନ

୮୮୭୭. କେବେ ଆସିବ ନଭେମ୍ବର,
ନଭେମ୍ବର ନା ଡ଼ିସେମ୍ବର ।
ପୁଣି କେବେ ନିର୍ବାଚନ ?
ନିର୍ବାଚନ ନା ସ୍ୱୟଂବର,

ସମୟ ଥାଉଁ ଥାଉଁ କରିବେ ଘର ।
ପର ଘର କରି ନେ ନିଜର ଘର,
ସ୍ୱୟଂବରରେ ଜୟ ନ ହେଲେ
ଥିବ କି ଆଉ ତୋର ଆଦର ।

## ହାତୀପାଇଁ ଶୋକ

୮୮୭୮. କାନ୍ଦଇ ମୁହିଁ ହାତୀଟି ପାଇଁ
ହାତୀତ ଥିଲା ବଣରେ ଯାଇ ।
ଖୋରାକ ନାହିଁ ବଣରେ ତାର,
ମଣିଷ କରେ ବଣ ଉଝାଳ ।
ପେଟ ବିକଳରେ ବାହାରି ଥିଲା,
ଅଚିହ୍ନା ଗାଁରେ ଯାଇ ପଶିଲା ।
ହାତୀ ପୋଷିବା ସାଧ କାହାର
କିଏ ଯୋଗାଇବ ଖାଦ୍ୟ ତାହାର ।
ପୋଷା ମନାଇଲେ ମାନିଥାଆନ୍ତା,
ଦୋଷ କେହି ତାର ଧରି ନ ଥାଆନ୍ତା ।
କିନ୍ତୁ ହାତୀଟି ଭୋକିଲା ହୋଇ
ଚାଷୀ କ୍ଷେତରେ ପଶିଲା ଯାଇ ।
ଭାଙ୍ଗିଲା ଗଛ ଭାଙ୍ଗିଲା ଡାଳ,
ଗାଁର ଲୋକେ କରିଲେ ଗୋଳ ।
ରୋକିବାକୁ ଯାଇ ହେଲେ ଜଖମ୍,
କହିଲେ ହାତୀଟି ହେଉ ଖତମ୍ ।
ସିପେଇ ଆସି ନାଛିଲା ଗୁଳି,
ଉଡ଼େଇ ଦେଲା ମୁଣ୍ଡର ଖୋଳି ।
ଲୋକଙ୍କ ଦ୍ୱାରା ହୋଇଲା ମରା
ହାୟ ବିଚରା ! ହାୟ ବିଚରା ।

# ନିମନ୍ତ୍ରଣ

୮୮୭୯. କାହିଁ ଯାଉଛ ? କୁମ୍ଭାର କଛ ।
ଦରକାର କଅଣ ? ନିମନ୍ତ୍ରଣ ।
ବାହାଘର ଭୋଜୀ ? ନା, ବାବୁଜୀ ।
କଅଣ ହେବ ? ଭୋଜନ ହେବ ।
ଖାଲି ଭୋଜନ ? ପ୍ରସାଦ ସେବନ ।
କେମିତି ପ୍ରସାଦ ? ପାଟିକୁ ସୁଆଦ ।
କି ଚାହୁଁଛି ମନ ? କ୍ଷୀରି ପୁରୀ ମିଷ୍ଟାନ୍ନ ।
ଇଚ୍ଛା କଅଣ ଆଉ ? ଛେନାର ପଲାଉ ।

# ବାନ୍ତି ନିବାରଣ ମନ୍ତ୍ର

୮୮୮୦. କୋରାପୁଟ ଓ ଜୟପୁରକୁ ବିଜୟନଗରମ୍‌ରୁ ବସରେ ଗଲେ ସାଲୁର ଘାଟି ପଡ଼େ । ଯାତ୍ରୀମାନେ ବାନ୍ତି ଡ଼ରରେ ଔଷଧ ଖାଆନ୍ତି । ଜଣେ ଯାତ୍ରୀ ଔଷଧ ଖାଇଲେନାହିଁ । ସେ କହିଲେ ମୋ ସାଙ୍ଗରେ ବିଲେଇଟିଏ ଅଛି । ମୁଁ ବିଲେଇ ମନ୍ତ୍ର ଜପ କରିବି, ତାହାହେଲେ ବାନ୍ତି ହେବନାହିଁ । ତାହା ହିଁ ସତ୍ୟ ହେଲା । ଏପରି ପ୍ରତ୍ୟକ୍ଷ ଫଳପ୍ରଦ ମନ୍ତ୍ର ଅନ୍ୟମାନେ ମଧ୍ୟ ପରଖ କରନ୍ତୁ, ହେଲେ ସାଙ୍ଗରେ ଗୋଟିଏ ବିରାଡ଼ି ଥିବା ଦରକାର । ସେହି ମନ୍ତ୍ରଟି ନିମ୍ନରେ ପ୍ରଦତ୍ତ ହେଲା ।

କେହି ଦେଖିନି
ଏମିତି ବିଲେଇ
ବିଲେଇ ବିଲେଇ
କେମିତି ବିଲେଇ
ଏଇ ବିଲେଇ
ସେଇ ବିଲେଇ
ଏମିତିକା ଆଉ
ନାହିଁ ଯେ ବିଲେଇ ।
ଆରେ ବିଲେଇ
ହାୟରେ ବିଲେଇ

କୁଆଡ଼େ ଚାଲି
ଯାଉରେ ବିଲେଇ ।
ବିଲେଇ ବିଲେଇ
ଯେମିତି ବିଲେଇ
ସେମିତି ବିଲେଇ
ନୁହେଁ ସେ ବିଲେଇ
କେହି ଦେଖିନି
ଏମିତି ବିଲେଇ ।

## ବୁଢ଼ାବର

୮୮୮୧. କେତେ ବାଟେ ବର ରହିଲ,
ଢ଼ଳ ଢ଼ଳ ଫୁଲ ମନ୍ଦାର
ବର ଆସିଛି ତିର୍ତ୍ତୋଲ ।
ବର ମୁଣ୍ଡରେ ଚମ୍ପା ଫୁଲ,
କନିଆଁ ମୁଣ୍ଡରେ ଚୂଳ ।
ଏମିତି ବରକୁ ବାହା ଦେଲା
ନିଶ ଦାଢ଼ି ସବୁ ଧଳା ।
ଆଖି ଥାଉଁ ବାପା ମୋର
ଏମିତି ବରକୁ ବାହା ଦେଲ,
ଗୁଡ଼ାଖୁ ଟାଣେ ବୁଢ଼ାବର ।
ଗୁଡ଼ାଖୁ ଟଣା ବୁଢ଼ାବର
କଦଳୀ ବଣକୁ ଯାଏ
ଯେଉଁ କଦଳୀ ମର୍ତମାନ
ସେଇ କଦଳୀଟି ଖାଏ ।

## ଝଙ୍କାର

୮୮୮୨. କୁକୁର ବଜାଏ ଟୁମଟୁମି
ମାଙ୍କଡ଼ ବଜାଏ ଢ଼ୋଲ,

ଟୁନ ଟୁନ ଲୋ ଟୁନୁ ଟୁନି
ମୂଷିକ ବଜାଏ ଖୋଳ ।
ଡାରି-ଡୁରି ଡାରି-ଡୁରି
ବାଜୁଛିରେ ମହୁରି
ବେଙ୍ଗୁଲି ବଜାଏ ଭେରି ।
ସାପ ମୁଣ୍ଡରେ ବେଙ୍ଗ ନାଚେ
ଦଶକୋଶରେ ବାଇଦ ବାଜେ ।

## କଲମ କିଣେ କାହାପାଇଁ

୮୮୮୩. କଲମ କିଣେ ଚୋରକୁ ହିତ
ଚୋର ମୋହର ପରମ ମିତ ।
ଛାତି ପାକିଟିରେ ଝଅଟ ଯାଇ
କଲମ ଖୋସେ ଚୋରଙ୍କ ପାଇଁ ।
ନବାରେ ସମୟ ଲାଗେନି ତାକୁ
କି କହିବି ମୋ ପ୍ରାଣ ମିତକୁ,
କଲମ କିଣେ ସବୁ ମାସରେ
ବାଣ୍ଟି ଆସେ ଟ୍ରେନ ବସରେ ।
ଖିଆ ପିଆରେ କି ଯାଏ ଆସେ
କଲମ କିଣେ ପ୍ରତିଟି ମାସେ,
ଲୋକ ଭିଡ଼ରେ ରୁଦ୍ଧ ଶ୍ୱାସରେ
ବାଣ୍ଟି ଆସେ ଟ୍ରେନ ବସରେ ।
ବନ୍ଧୁମାନେ କହନ୍ତି (ଥଟ୍ଟା) ରେ
ଏଣିକି ଲେଖ ପେନସିଲରେ,
ପ୍ରେରଣାକି ଆସିବ ଏଥିରେ ?
ମୁଁ ବି କହେ ସଭିଙ୍କୁ ଥଟ୍ଟାରେ,
କଲମ ପଛେ ଯାଉ ଯେତେ
ପେନସିଲରେ ଲେଖିବି ନି କେବେ ।

## ରସ ଯା ଚାଲିଯା

୮୮୮୪. ଖରାବେଳ ଖରତରେ ଗଲି ନୀର ପାଇଁ
ଖର ଖର ଶ୍ରମଝାଳ ଯାଉଅଛି ବହି
ଖଗପତି ନାଥ ହୋଇ ଶ୍ରୀକୃଷ୍ଣ
ମୋ ଦୁଃଖ ଖଣ୍ଡିଲ କିମ୍ପା ନାଇଁ ।
କ୍ଷୀଣ ହୋଇଲାଣି ତନୁ ତୁମରି ବିହୁନେ
କନ୍ଦର୍ପ ପେଷି କଷଣ ଦେଉଛ ଆପଣେ
ଖଣ୍ଡ ପରି ଖଣ୍ଡ ତୁମେ ନାଗର, ବସିଛ ଆପଣେ
ରସା ଯା ଚାଲିଯାରେ ।

## ଶଶୁର ଘର

୮୮୮୫. କାଲି ଯିବି ଲୋ ଶଶୁର ଘର
ଅନ୍ନପୂର୍ଣ୍ଣା ଦୁଧର ସର ।
ପର ପୁଅ ଯେ ମାରେ ଚାପର (=ଚାପଡ଼)
କାନ୍ଦି କାନ୍ଦି ଯାଏ ଦାଦି ଘର
ଦାଦି ଦେଲେ ବୁଢ଼ାବର
ଦାଦି ହେ ତମ ଗୋଡ଼ ଧରୁଛି
ମାଆ ପାଖେ ଛାଡ଼ିଆସ କହୁଛି ।
ମାଆ ଦେଲେ ସରୁ ଶଙ୍ଖା
ବାପା ଦେଲେ ପାଟଶାଢ଼ୀ
ଚାଣ୍ଡେ ଚାଣ୍ଡେ ମା' ବିଦାୟ କର
ରଥ ଆସୁଛି ମାଡ଼ି ।
ମା' ତୁମେ ନିର୍ବୁଦ୍ଧିଆ କାନ୍ଦି କିଆଁ ମର,
ନିଜେ ନିଜେ ଭାବି ଦେଖ କାହାଘର କର ।

## କାନ୍ଦୁରୀ

୮୮୮୬ କାନ୍ଦୁରୀ ଲୋ କାନ୍ଦୁରୀ
କୁଳି ମୂଳରେ ବସା,

ପର ପିଲା କାନ୍ଦିବ ବୋଲି
ମନେ କରୁଛୁ ଆଶା ।

## ବିଲେଇ ଖୋଜେ ନରମ ମାଟି

୮୮୮୭. କେହିବା ଭୋଳେ ଚୁଲା ମଦରେ,
କେହିବା ଭୋଳେ ଖୋସାମଦରେ,
କେହିବା ଭୋଳେ ଟେକା ଟେକିରେ,
କେହିବା ଭୋଳେ ଟୋକି କୋଳରେ,
ରଖିବ ମନେ ଏହି କଥାଟି
ବିଲେଇ ଖୋଜେ ନରମ ମାଟି ।
କେହିବା ଭୋଳେ ମାଛ ଝୋଳରେ,
କେହିବା ଭୋଳେ କଞ୍ଚା ଟଙ୍କାରେ,
କେହିବା ଭୋଳେ ପଦ ମାୟାରେ
କେହିବା ଭୋଳେ ରାଜନୀତିରେ,
ଏହି କଥାଟି ଜାଣିବା ଖାଣ୍ଟି
ବିଲେଇ ଖୋଜେ ନରମ ମାଟି ।

## କୁତୁକୁତୁ

୮୮୮୮. କରେ ନାହିଁ ଭୟ ବାଘକୁ,
କରେ ନାହିଁ ଭୟ ସାପକୁ,
କରେ ନାହିଁ ଭୟ ଭୂତକୁ,
ଆଉକିଛି ଭୟ ନାହିଁ ମୋହର
ଭୟ ଖାଲି କୁତୁକୁତୁକୁ ।
ବଡ଼ବାପାଙ୍କ ଘର,
ଯମ ପରି ଡ଼ର,
ଦେଖିଲେ ଆସେ ଜର ।
ଭୂଲିପାରେ ନାହିଁ ମହାଶୟକୁ
ଭୟ ଖାଲି କୁତୁକୁତୁକୁ ।

## ଜାଣେନି

୮୮୮୯. କରି କହେ, କରିନି ।
ଖାଇ କହେ, ଖାଇନି ।
ପାଇ କହେ, ପାଇନି ।
ଯାଇ କହେ, ଯାଇନି ।
ଏମିତି ଝିଅ ଦେଖ ଯେବେ,
ତାକୁ କୁହ ଜାଣେ ନି ।
ରଖି କହେ, ରଖିନି ।
ଡାକି କହେ, ଡାକିନି ।
ରହି କହେ, ରହିନି ।
କହି କହେ, କହିନି ।
ଏମିତି ଝିଅ ଦେଖ ଯେବେ
ତାକୁ କୁହ ଜାଣେ ନି ।

## ଅଦାର ଅକାଳ

୮୮୯୦. କରି ନିଶା ଅଦା ଚାହା
ହେଲିଣି ବେହାଲ
ବଜାରରେ ଆଜି ପୁଣି
ଅଦାର ଅକାଳ ।
ଚାଳିଷ ଟଙ୍କା ଅଦା କେଜି
ତଥାପି ଉଧାଓ
ମିଳିବ ଯେବେ ହେବ
ଆହୁରୀ ବେଶୀ ଭାଉ ।

## ପରାମର୍ଶ

୮୮୯୧. କମ ଚାଉଳ ଖାଅ,
ନାଲି ଗହମ ଖାଅ ।
କମ ଚାଉଳ ଖାଅ,

ସାଲଗମ ଖାଅ ।
କମ ଚାଉଳ ଖାଅ
ଆଳୁ ଦମ ଖାଅ ।
କମ ଚାଉଳ ଖାଅ,
ଚମ ଚମ ଖାଅ ।

## ଶବ୍ଦଲହଡ଼ି (୨)

### ଆସରେ ଛୁଆଏ କହିବା କଥା

| | | |
|---|---|---|
| ୮୮୯୨. | କି କଥା ? | ବେଙ୍ଗ ଲଥା । |
| | କି ବେଙ୍ଗ ? | ଧୁଡ଼ା ବେଙ୍ଗ । |
| | କି ଧୁଡ଼ା ? | ବାଇଗଣ ପୋଡ଼ା । |
| | କି ବାଇଗଣ ? | ମୁଦୁ ବାଇଗଣ । |
| | କି ମୁଦୁ ? | ପିଠା ମୁଦୁ । |
| | କି ପିଠା ? | ତାଳ ଗଇଁଠା । |
| | କି ତାଳ ? | ରଜା ତାଳ । |
| | କି ରଜା ? | ଖଣ୍ଡି ଖଜା । |
| | କି ଖଣ୍ଡି ? | ଆଖୁ ଦଣ୍ଡି । |
| | କି ଆଖୁ ? | କନ୍ତାରୀ ଆଖୁ । |
| | କି କନ୍ତାରୀ ? | ବୁଢ଼ୀ ମନ୍ତାରୀ । |
| | କି ବୁଢ଼ୀ ? | ପାଚିଲା ବୁଢ଼ୀ । |
| | କି ପାଚିଲା ? | ଧାନ କେଣ୍ଡି କେଣ୍ଡି ପାଚିଲା । |

କେଉଟୁଣୀ ବୁଢ଼ୀ ଚୂଡ଼ା ମାଣେ ଧରି ନାଚିଲା ।

## କଥାଟିଏ କହୁଁ

| | | |
|---|---|---|
| ୮୮୯୩. | କିସ କଥା ? | ବେଙ୍ଗ କଥା । |
| | କି ବେଙ୍ଗ ? | ଠୁରା ବେଙ୍ଗ । |
| | କି ଠୁରା ? | ବ୍ରାହ୍ମଣ ମରା । |
| | କି ବ୍ରାହ୍ମଣ ? | କୁଜି ବ୍ରାହ୍ମଣ । |

କି କୁଜି ? କିଆ ବୁଜି ।
କି କିଆ ? ରଜା ଭିଆ ।
କି ରଜା ? ଖଣ୍ଡି ଖଜା ।
କି ଖଣ୍ଡି ? ମିରିଗ ଲଣ୍ଡି ।
କି ମିରିଗ ? ଝାଡ଼ ମିରିଗ ।
କି ଝାଡ଼ ? କଣ୍ଟା ବାଡ଼ ।
କି କଣ୍ଟା ? କାନ କୋଳି କଣ୍ଟା ।
ଯହିଁ ଲାଗିଯାଏ ଝଟାପଟା ।

## କହିବି ଗୋଟିଏ କଥା

୮୮୯୪ କି କଥା ? ବ୍ରାହ୍ମଣ କଥା ।
କି ବ୍ରାହ୍ମଣ ? ଶୁଦ୍ଧ ବ୍ରାହ୍ମଣ ।
କି ଶୁଦ୍ଧ ? ପିଠା ମଧ ।
କି ପିଠା ? ତାଳ ଗଇଁଠା ।
କି ତାଳ ? ସୋରିଷ ମାଳ ।
କି ସୋରିଷ ? ଅଣ ସୋରିଷ ।
କି ଅଣ ? କିଆ ବଣ ।
କି କିଆ ? ରଜା ଭିଆ ।
କି ରଜା ? ଲିଆ ଭଜା ।
କି ଲିଆ ? ଘଣା ଦିଆ ।
କି ଘଣା ? ତେଲି ଘଣା ।
କି ତେଲି ? ଖଣ୍ଡି ତେଲି ।
କି ଖଣ୍ଡି ? ଆଖୁ ଦଣ୍ଡି ।
କି ଆଖୁ ? ଦାନ୍ତୁରୀ ଆଖୁ ।
କି ଦାନ୍ତୁରୀ ? ବୁଢ଼ୀ ଦାନ୍ତୁରୀ ।

## ଆସରେ ପିଲେ କଥା କହେମା

୮୮୯୫. କାଁ କଥା ? — ବେଁଗ୍ କଥା ।
କାଁ ବେଁଗ୍ ? — ଢୁଁଡ଼ା ବେଁଗ୍ ।
କାଁ ଢୁଁଡ଼ା ? — ବାହ୍ମୁନ୍ ବୁଢ଼ା ।
କାଁ ବାହ୍ମୁନ୍ ? — ସୁଦ୍ ବାହ୍ମୁନ୍ ।
କାଁ ସୁଦ୍ ? — ପିଠା ଲୁଦ୍ ।
କାଁ ପିଠା ? — ତାଲ ଗଏଁଠା ।
କାଁ ତାଲ ? — ସୁର୍ଷୋ ମାଲ୍ ।
କାଁ ସୁର୍ଷୋ ? — ବନ ସୁର୍ଷ ।
କାଁ ବନ୍ ? — କିଆ ବନ୍ ।
କାଁ କିଆ ? — ରଜାର ବିହା ।
କାଁ ରଜା ? — ଖଣ୍ ଖଜା ।
କାଁ ଖଣ୍ — ଆଏଁଖ୍ ଡ଼ଣ୍ ।
କାଁ ଆଏଁଖ୍ ? — ଭାଲୁ ଆଏଁଖ୍ ।
କାଁ ଭାଲୁ ? — ପାଚଲା ଭାଲୁ ।

ଧାନ୍ ଖୋଡ଼େ ଖୋଡ଼େ ପାଚଲା ।
ଶିବର ଶଶୁର ନାଚଲା ।

## ଆସରେ ପିଲେ କହିବି କଥା

୮୮୯୬. କି କଥା ? — ବେଙ୍ଗ ଲଥା ।
କି ବେଙ୍ଗ ? — ଟୁରୀ ବେଙ୍ଗ ।
କି ଟୁରୀ ? — ପିଠା ପୁରୀ ।
କି ପିଠା ? — ତାଳ ପିଠା ।
କି ତାଳ? — ହାଣ୍ଡିଆ ତାଳ ।
କି ହାଣ୍ଡିଆ ? — ବଳଦ ଖଣ୍ଡିଆ ।
କି ବଳଦ ? — ଡ଼ିଆଁ ବଳଦ ।
କି ଡ଼ିଆଁ ? — ଚିଙ୍ଗୁଡ଼ି ଡ଼ିଆଁ ।

| | |
|---|---|
| କି ଚିଙ୍ଗୁଡ଼ି ? | ପାଣିଚିଙ୍ଗୁଡ଼ି । |
| କି ପାଣି ? | ରାଜା ପାଣି । |
| କି ରାଜା ? | ବିରି ଭଜା । |
| କି ବିରି ? | ଟାନ ବିରି । |
| କି ଟାନ ? | ଖେଡ଼ିଆ କାନ । |
| କି ଖେଡ଼ିଆ ? | କୁକୁଟୁ ଖେଡ଼ିଆ । |
| କି କୁକୁଟୁ ? | ବାଡ଼ି ହୁକୁଟୁ । |
| କି ବାଡ଼ି ? | ତେଲି ବାଡ଼ି । |
| କି ତେଲି ? | ଛୁଆ ବେଲି । |
| କି ଛୁଆ ? | କୁଟୁରୀ ଛୁଆ । |
| କି କୁଟୁରୀ ? | ବୁଢ଼ୀ ମନ୍ତାରି । |

## କାହାଣୀ ଶେଷର ଶବ୍ଦ ଲହଡ଼ି

୮୮୯୭. ମୋ କଥାଟି ସଇଲା - ଫୁଲ ଗଛଟି ମରିଲା ।
ହଇରେ ଫୁଲ ଗଛ, ତୁ କାହିଁକି ମଲୁ ?
ମୋତେ କାଳୀ ଗାଈ ଖାଇଗଲା ।
ହଇରେ କାଳୀ ଗାଈ, ତୁ କିଆଁ ଖାଇଲୁ ?
ମତେ ଗଉଡ଼ ଜଗିଲା ନାହିଁ ।
ହଇରେ ଗଉଡ଼, ତୁ କାହିଁକି ଜଗିଲୁ ନାହିଁ ?
ମତେ ବଡ଼ବୋହୂ ଖାଇବାକୁ ଦେଲା ନାହିଁ ।
ହଇଲୋ ବୋହୂ, ତୁ କିଆଁ ଖାଇବାକୁ ଦେଲୁ ନାହିଁ ?
ପୁଅ କାନ୍ଦିଲା ।
ହଇରେ ପୁଅ, ତୁ କିଆଁ କାନ୍ଦିଲୁ ?
ମତେ ଧୂଳିଆ ଜନ୍ଦା କାମୁଡ଼ିଲା ।
ହଇରେ ଧୂଳିଆ ଜନ୍ଦା, ତୁ କିଆଁ କାମୁଡ଼ିଲୁ ।

ଭୂଇଁ ତଳେ ତଳେ ଥାଏ,
କଅଁଳ ମାଉଁସ ଟିକିଏ ପାଇଲେ
ରୁଟ୍ କିନେ କାମୁଡ଼ି ଦିଏ ।

# ଦନାଇ ବଚନ

## (ଏହି ଗ୍ରନ୍ଥର ୧ମ ଖଣ୍ଡର ପରିଶିଷ୍ଟାଂଶ କ ଓ ଖ ଅକ୍ଷର କ୍ରମରେ)

୮୮୯୮. କଟା ହୋଇଥିବା ହରଡ଼ ବିଲରେ
ଯେଉଁ ଟରଟର ଦଉଡ଼ (=ବିଲରେ ଖୁଣ୍ଟିଥିବାରୁ ସାବଧାନତା ଆବଶ୍ୟକ)
ଆକଟ ପହଞ୍ଚା ବେଭାର ଭାରକୁ
ଯେଉଁ ପେଟମରା ଗଉଡ଼
ପାଦେ ପକାଇଲେ ଖିଲ ଖସିଯାଏ
ସେ ଯେଉଁ ରୂପାର ପାହୁଡ଼
ପଣାସଂକ୍ରାନ୍ତିର ଦୁଇପହରରେ
ସେ ଯେଉଁ ସାପର ଘାଉଡ଼ (=ମାରାତ୍ମକ ସର୍ପାଘାତ)
ଗଛରୁ ପଡ଼ିଲେ ଛତରଛାନ
ସେ ଯେଉଁ ନଡ଼ିଆ ପଇଡ଼
କହଇ ମୁରୁଖ ଦନାଇ ଦାସ
ଯେ ଏଥିରେ ପରମାଦ ବଡ଼ ।

୮୮୯୯. କଟା ଘାଆରେ ଲାଗେ ଲଙ୍କା ବଟା
ଟାଙ୍ଗରୀ ମୁଣ୍ଡରେ ଯେ ଗୋଜୀ କଣ୍ଟା ।
ଆମ ଝାଡ଼ାରେ ଯେ ଖାଏ ଓଉ ଖଟା
ଅପଟ ବେହେରା ଜଖମ ଅଣ୍ଟା ।
ଗାଧୁଆ ପୋଖରୀ ନିଇତି ଘଣ୍ଟା
କହେ ଦନାଇ ଏ କରମ ତଣ୍ଟା ।

୮୯୦୦. କଣନଖା ଯେବେ ହୁଏ ଚଷାର
କାଠି ଘସରା ହୋଇଲେ ପଶାର
ଓଠରେ ଲାଗିଲେ ଆମ୍ବ ଲସାର
ଅଭ୍ୟାସ କରେ ଯେ ଗୋଡ଼ ଘଷାର
ବେପାର କରି ନ ବଢ଼େ ପ୍ରସାର
ଢ଼ମଣା ପଶିଲେ କୁଆ ବସାର
ବୋଲେ ଦନାଇ କୋଳାହଳ ସାର ।

୮୯୦୧. କଳାଚିତି ଯେବେ ମାରେ ଗାମୁଛା
ବ୍ରାହ୍ମଣ ହୋଇ ରଖେ ଗାଲମୁଛା (=ନିଶ)
ଶୁଖିଲା ଭାତକୁ ଖାଅଣ ତୁଛା
କ୍ଷେତକୁ ନ ଯାଇ ବାରତା ପୁଛା
କୁଳନାରୀ ଯେବେ ନ ମାରେ କଛା
ଯୋଗୀ ହୋଇ ଯାର ରମଣ ଇଚ୍ଛା
କହେ ଦନାଇ ଏ ବଡ଼ ନିକୁଛା ।

୮୯୦୨. କଲୁଅ ବଲୁଅ ଚଲୁଅ ବାଇ
ଖଲୁଆ କଳିଆ ନୋଳିଆ ସାହୀ
ବୋଲେ ଦନା ପାଖ ମାଡ଼ିବ ନାହିଁ ।

୮୯୦୩. କାଗିଜି ଆଚାର ଜରକୁ
ଆଦର ଗୌରବ ବରକୁ
କଅଁଳ ବଚନ ପରକୁ
ଗରୁଆ ଲଦନ ଖରକୁ (=ଗଧକୁ)
ସମଦର୍ଶୀ ଲୋକ ଘରକୁ
ବନ୍ଧନକାଠ ଯେ ଅରକୁ (=ଚକ)
ଜପାମାଳା ଦନା କରକୁ ।

୮୯୦୪. କାତ ନ ଥାଇ ନଉକା ବାହିବା
ଭାତ ନ ଥାଇ ଯାତ ଦେଖିଯିବା
ଛାତ ଦଦରା ପକାରେ ଶୋଇବା
ବାତ ରୋଗରେ କଇଁଆ ଖାଇବା
ଗାତ ନ ଖୋଳି ଗଛ ଲଗାଇବା
ତାତି ନ ଥାଇ ଲୁହା ବାଡ଼େଇବା
ପର-ନାତୁଆ ଗାଈକୁ ଦୁହିଁଇ
ଦନା କହେ, ପ୍ରାଣେ ପୀଡ଼ା ଲୋକହସା ହୁଅଇ ।

୮୯୦୫. କାର୍ତ୍ତିକରେ ପାଣି କଖାରୁ ଦାନ
ଛାଇ ଲେଉଟାରେ ଯେଉଁ ସ୍ନାହାନ

ଆଷାଢ଼ ମାସରେ ଯେ ବୁଣେ ଧାନ
କୁଅକୁ ଦଉଡ଼ି ହୋଇଲେ ସାନ
ଗୀତ ଥାକରେ ନ ଛିଣ୍ଡିଲେ ତାନ
କହେ ଦନାଇ ବଡ଼ ହିନିମାନ ।

୮୯୦୬. କାମ ସାରି ଦେଇ ବସିବ
ଶତ୍ରୁ ମାରି ପଛେ ହସିବ
ଅପମାନ ଥାନୁ ଖସିବ
ବୈଶାଖ ଜ୍ୟେଷ୍ଠରେ ଚଷିବ
ଗୁରୁଙ୍କ ଆଗରେ ଲସିବ
ପରଘରେ ଡାକି ପଶିବ
ହରିଙ୍କ କଥାରେ ରସିବ
ଦନାଇ ମନକୁ ଆସିବ ।

୮୯୦୭. କାମ କରିବାକୁ କାଢ଼େ ଯେ ଆଳ
ଦୁଇ ଓଳି ଖାଏ ବାସି ପଖାଳ
ଭିକ ନ ଦେଇ ଯେ ଭାଙ୍ଗଇ ଥାଳ
ଚତୁର୍ମାସ୍ୟାକୁ ନ ସାଇତେ ଜାଳ
ଅଛୁଆଁ ରଖେ ଯେ ଘରର ଚାଳ
ଘରର ଦକ୍ଷିଣେ ରଖେ ଗୁହାଳ
ନାରୀ ହୋଇ ଯାର ଉଞ୍ଚ କପାଳ
ଗାଧୋଇ ପଡ଼େ ଯେ ନ ମରୁ ଝାଳ
ଭାତରୁ ଯାହାର ବାହାରେ ବାଳ
ବୋଲେ ଦନାଇ ଏ ବଡ଼ ଜଞ୍ଜାଳ ।

୮୯୦୮. କାମିନୀ ହୋଇଣ ଥିଲେ ମାନିନୀ
ପୁତ୍ରହରା ହୋଇଥିଲେ ଜନନୀ
ଧନହରା ଯେବେ ହୁଅଇ ରଙ୍କ
ସତୀ ନାରୀର ରଟିଲେ କଳଙ୍କ

ଭୋକ ଶୋଷରେ ଯେ ହୁଏ ଆକୁଳ
ରୋଗରେ କଷ୍ଟ ପାଏ ଯେହୁ ନର
ଅପାଠୁଆ ଚାଟ ଗୁରୁ ଆଗରେ
ନିତି ମୂଲିଆ ଯେ ଝଡ଼ି ପାଗରେ
ଏମାନଙ୍କ ମୁଖେ ହରଷ ନାହିଁ
ପହଲି ପ୍ରବନ୍ଧେ ଦନାଇ କହି ।

୮୯୦୯. କାଳିଆ ବଳଦ, ବାଳିଆ ମାଛ
ଆଳିଆ (=ଡଙ୍ଗାପାଲ) ବାନ୍ଧିବ, ମାଳିଆ (=ବଣୁଆ) ନାଛ (=ନାସ)
ବୋଲେ ଦନାଇ କେଉଁ ଗୁଣ ବାଛ ।

୮୯୧୦. କୁଆ ହାଣିଲେ ଗୋରୁଙ୍କ ଠେଙ୍ଗରୁ
ବରକୁ କନ୍ୟା ବଳିଲେ ଢେ଼ଙ୍ଗରୁ (=ଢେ଼ଙ୍ଗା)
ତେଲ ବୋହି ପଡ଼େ ଯାର ମାଙ୍ଗରୁ (=ସୁନ୍ଥାରୁ)
ଚେଲା ପଳାଏ ବୈଷ୍ଣବ ସଙ୍ଗରୁ
ଆଖି ବୁଜୁ ବୁଜୁ ମାରେ ଘୁଙ୍ଗୁରୁ (=ଘୁଙ୍ଗୁଡ଼ି)
ପୂଜ ପଡ଼ଇ ଯାହାର ଲିଙ୍ଗରୁ
ବୋଲେ ଦନାଇ ଏ ସବୁ ଭଙ୍ଗୁରୁ ।

୮୯୧୧. କୁକୁଡ଼ାକୁ ଯେ ଜଟ ସୁନ୍ଦର
ବଡ଼ ଘରକୁ ଖଟ ସୁନ୍ଦର
ଗହୀର ମଝିରେ ବାଟ ସୁନ୍ଦର
କେଳାମାନଙ୍କୁ ହାଟ ସୁନ୍ଦର
ବାବାଜିଙ୍କ ମୁଣ୍ଡେ ଜଟ ସୁନ୍ଦର ।
ଦନାଇକୁ ଯେ ପଟ (=ଠାକୁର ଫଟୋ) ସୁନ୍ଦର ।

୮୯୧୨. କୁରାଢ଼ିଆକୁ ଯେ ଧଇଲେ କାଶ
ଫୁଲାଣିଆ ଯେବେ ହୁଏ ନରେଶ
ଫନ୍ଦା କରି ଯେହୁ କରଇ ହେଳା
ବୋଲେ ଦନାଇ ବୁଡ଼େ ତାଙ୍କ ଭେଳା ।

୮୯୧୩. କେଳାଙ୍କ ବାକ୍ୟେ ଯେ କରେ ବିଶ୍ୱାସ
ଦଣ୍ଡ ବଇଠକେ ଛାଡ଼େ ନିଃଶ୍ୱାସ
ନିତି ମୂଳିଆକୁ ଧରଇ ଶ୍ୱାସ
ବୋଝେଇ ଶଗଡ଼ ଝୁରା (=ଶଗଡ଼ ଯୁଆଳିର ମଧ୍ୟଭାଗ) ଉଶ୍ୱାସ
ବୋଲେ ଦନାଇ ଏ ନୁହେଁ ଆଶ୍ୱାସ ।

୮୯୧୪. କ୍ରୋଧୀ ଲୋକ ବାରେ କି ଆପଣା ପର
ଯବନ ବାରଇ କି ଘର ଅଘର
ଶୋଷିଲା ବାରଇ କି ଅଛୁଆଁ ପାଣି
ଘଇତା ବାରଇ କି ଫଟା କାଲୁଣୀ
ଭୋକିଲା ବ.ରଇ କି ଶୁଖିଲା ଭାତ
ଦନାଇ ବାରଇ କି ମୂର୍ଖ ପଣ୍ଡିତ ।

୮୯୧୫. କୋମଳ ହୋଇ ଯେ ମୂଳା ବାର୍ତ୍ତାକି (=ବାଇଗଣ)
ରୂପ କଣ୍ଠ ଥାଉଁ ଯେଉଁ ନର୍ତ୍ତକୀ
କନ୍ଦଳ ସମୟେ ଭାଇ କତିକି
ଭୀତିରେ ଯେ ଦମ୍ଭ କରେ ଛାତିକି
ନବ ବନିତା ହେଲେ କଉତୁକୀ
ସାଙ୍ଗେ ସାଙ୍ଗେ ଧନ ଦେବା ଗହକି
ବୋଲେ ଦନାଇ ଏ କଥା ବହକି ।

୮୯୧୬. ଖଇର ନ ଥାଇ ପାନ
ହାକିମି ନ ଥାଇ ଟାନ
ସନିଅ (=ସ୍ନେହ) ନ ଥାଇ ଆନ (=ରାଣ)
ପାଣି ନ ଥାଇଣ ଧାନ
ଭୂଷଣ ନ ଥାଇ କାନ
ବୋଲେ ଦନା ହିନିମାନ ।

୮୯୧୭. ଖଟା ଖାଇଲେ ଗଡ଼ଇ ନାଡ଼ା
ମିଠା ଖିଆ ଯେ ବେମାରି ବଡ଼ା

ପିତା ଖାଇଲେ ଶୁଖଇ ବୀଜ
ରାଗ ଖାଇଲେ ମଉଳେ ତେଜ
ଲୁଣ ଖାଇଲେ ଉଠଇ ଶୋଷା (=ଶୋଷ) ।
ଛାତି ଧରଇ ଖାଇଲେ କଷା (=ଅଧିକ କଷା ଖାଇଲେ)

୮୯୧୮. ଖଣ୍ଡାଇତ ଯେବେ ହୁଏ ନିର୍ଦ୍ଦୟ
ରାଜା ଯେବେ ନ ଦିଅଇ ଅଭୟ
ଯୋଗୀ ହୋଇ ଯାର ନଥାଏ ଲୟ
ବୃଥା ବିବାଦେ ଧନ ହେଲେ କ୍ଷୟ
ଦାରୀ ଦାସୀରେ ବିତ୍ତ ହେଲେ ବ୍ୟୟ
ବୃଦ୍ଧ ବୟସେ ନ ମିଳେ ଆଶ୍ରୟ
ନୁପୁର ବଜା ଯେବେ ହୁଏ ହୟ (=ଘୋଡ଼ାର ଗୋଡ଼କୁ ଗୋଡ଼ ବାଜିବା)
ବୋଲେ ଦନାଇ ଏ ବଡ଼ ଅଥୟ ।

୮୯୧୯. ଖରା ଡ଼ବୁଆ ଘର ଛୁଆଣିଆ
ମାଗିବାକୁ ଆସେ ଯେଉଁ କୁଣିଆ
ସାବତ ଦିଅର ଖଣ୍ଡି ଗଣିଆ
ସାହୁପୁଅ ଯେବେ ହୁଏ ମାଣିଆ (=ଏକବାଗିଆ)
ମିଛ କହି ଠକେ ଯେଉଁ ଗୁଣିଆ
ପୋକ ବିନ୍ଧା ଯେ ଘୁଷୁରି ମାଣିଆ (=ଏକ ପ୍ରକାର ମିଠା ଆଖୁ)
କୁଅ ପାଣି ଯେବେ ହୁଏ ଲୁଣିଆ
ମଝି ପୋଲ ଯେବେ ହୁଏ ଟିଣିଆ (=ଶିରିଷ କାଠ)
ମେଘ ବରଷିଲେ ଏକପାଣିଆ
ବଡ଼ିବସା ବିରି ନୁହେଁ ଫେଣିଆ
ଭଜା ମୁଗଜାଇ ହେଲେ କଣିଆ
ବୋଲେ ଦନାଇ ଏ ଅକାରଣିଆ ।

୮୯୨୦. ଖାପ ନ ଥାଇ ଖଣ୍ଡା
ପୁର ନ ଥାଇ ମଣ୍ଡା

ବଳ ନ ଥାଇ ଭେଣ୍ଡା
ଟଳ ଟଳିଆ ତେଣ୍ଡା
ନିରିବାଳୁଆ ମେଣ୍ଢା
ଅଗାଡ଼ିଆ ଧାନ କେଣ୍ଡା
ଗୁଣ ଛେଦରା କଣ୍ଡା (=ତନ୍ତୀ)
ମଝି ଚଡ଼କା ଦଣ୍ଡା (=ଶଗଡ଼ର)
ବ୍ରାହ୍ମଣ ପୁଅ ନଣ୍ଡା,
କହେ ଦନାଇ ଏ ତଣ୍ଡା ।

୮୯୨୧. ଖାରିଆ କଖାରୁ ଗାରିଆ ପୋଥି
ଦାରିଆ ବ୍ରାହ୍ମଣ, ମାରୁଆ ପଥି
କାରୁଆ ପୁଜାରୀ ଭାରୁଆ ଖଞ୍ଜ (=ଛୋଟା)
ପୁରିଆ କରିଆ ଚୋରିଆ ଖଞ୍ଜ (=ବଜାରର କ୍ରୟ ବିକ୍ରୟ ସ୍ଥାନ)
ଛେରୁଆ ଛାଟିଆ, ବର୍ଷୁଆ ସଞ୍ଜ
ବୋଲେ ଦନାଇ ବଡ଼ ଦହଗଞ୍ଜ ।

୮୯୨୨. ଖାଲରେ ନଳିତା, ଢ଼ିପରେ ଲଙ୍କା
ବାଉଁଶ ବାଡ଼ି ମୁଠା ଥିଲେ ବଙ୍କା
ବାଟ ଚାଲିବୁ ପେଟ ଥିଲେ ଖଙ୍କା
ଖରଚ ପାଇଁ ହାତେ ଥିଲେ ଟଙ୍କା
ଡାଲି ଘୋରିବାକୁ ସଢ଼େଇ ଡଙ୍କା
ବୋଲେ ଦନାଇ ଏଥେ ନଥାଇ ଶଙ୍କା ।

୮୯୨୩. ଖୋସାମତିଆ ହୁଏ ଯେବେ ସାଙ୍ଗ
ଦୁଦୁରା ମଞ୍ଜି ମିଶା ହେଲେ ଭାଙ୍ଗ
କିଣା ଚାକର କାଢ଼େ ଯେବେ ଆଙ୍ଗ (=ଅହଙ୍କାର)
ବିଧବା ମୁଣ୍ଡରେ କାଟିଲେ ମାଙ୍ଗ
ଦନାଇ କହେ, ଏହି ସବୁ କଥା ଭଙ୍ଗ ।



# ରଢ଼ି ପ୍ରୟୋଗ (କ)

୮୯୨୪. 'କ' 'ଖ' ପଢ଼େଇବା-ପ୍ରାରମ୍ଭିକ ଶିକ୍ଷା ଦେବା ।

୮୯୨୫. କ-ଖ-ଗ- ଜାଣିବା-ପ୍ରାରମ୍ଭିକ ବା ସାଧାରଣଜ୍ଞାନ ହେବା ।

୮୯୨୬. କ-ବ-ଚ କରି ପଢ଼ିବା-ଅସଂଲଗ୍ନ ଭାବରେ ପଢ଼ିବା ।

୮୯୨୭. କଅଁଳା କଅଁଳି କରିବା (କଅଁଳାଇ କହିବା) ।

ଫୁସୁଲା ଫୁସୁଲି କରିବା ଓ ନାନା ଭାବରେ କୋମଳ କଥା କହି ସନ୍ତୁଷ୍ଟ ହେବା ।

୮୯୨୮. କଉଡ଼ିକର ମୂଲ୍ୟ ।-ଅତି କମ ଦାମ, ତୁଚ୍ଛ ପଦାର୍ଥ ।

୮୯୨୯. କଙ୍କଣ ଛଡ଼େଇବା

କଞ୍ଚାବଟା ହଳଦୀ ସହିତ ସୋରିଷ ତେଲ ସମ୍ମିଶ୍ରଣରେ ପ୍ରସ୍ତୁତ ଲେପ । ମାଙ୍ଗଳିକ କର୍ମରେ ବର ଓ କନ୍ୟା ଦେହରେ ଲଗାଯାଇଥାଏ । ଏହି ଲେପକୁ ଛଡ଼ାଇବା ।

୮୯୩୦. କଙ୍କନା କଣ ।-ବାୟୁକୋଣ, ଉତ୍ତର-ପଶ୍ଚିମ କୋଣ ।

୮୯୩୧. କଙ୍କର (=ବାଲି ଗରଡ଼ା )ଚୁରିବା ।-ବ୍ୟର୍ଥ କାର୍ଯ୍ୟ କରିବା ।

୮୯୩୨. କଙ୍କଣ୍ ପର୍ କପଟା ।

ପଶ୍ଚିମ ଓଡ଼ିଶା ସ୍ତ୍ରୀଲୋକ ପିନ୍ଧିବା ଏକପ୍ରକାର ଚଉଡ଼ା ଧଡ଼ିଆ ଖଦୀ ।

୮୯୩୩. କଙ୍କଣ ପଇତା ।-ବିବାହ ସମୟରେ ବରର ହାତଗଣ୍ଠିରେ ଗୁଡ଼ାଯିବା ସୂତା ।

୮୯୩୪. କଙ୍କା (=ବଗ/ହାଡ଼ଗିଳା ପକ୍ଷୀ) ହେବା । - ଲୋଭାତୁର ହେବା ।

୮୯୩୫. କଙ୍ଗନ (=କଙ୍କଣ ) ବୋହିବା । - ଜଣେ ଅନ୍ୟର ବଳ କଳିବା ।

୮୯୩୬. କଖାରୁଆ କରିବା ।-ମାଡଦେଇ ଖଣ୍ଡିଆ ଓ ଘାଇଲା କରିଦେବା ।

୮୯୩୭. କଟକଟେଇବା ।-କସ୍‌କରି ତଥା ଶକ୍ତକରି ଧରିବା ବା ବାନ୍ଧିବା ।

୮୯୩୮. କଟର କଟର କରିବା (କଟକଟ କରିବା) ।-ବିରକ୍ତ କରିବା ।

୮୯୩୯. କଟର କଟର ଖାଇବା ।-ସବୁବେଳେ କିଛି ନା କିଛି ଖାଉଥିବା ।

୮୯୪୦. କଟର କଟର କରି ଖାଇବା ।

ଖୁବ୍ ପେଟପୁରେଇ ଖାଇବା । ପୁରୀ ବୋଲିରେ 'ଗାଣ୍ଡି କଟି ଖାଇବା' କହନ୍ତି ।

୮୯୪୧. କଟର କୁଟ କଟରା କୁଟ କରିବା ।

ନିର୍ଘୁମ ବାଡ଼େଇବା ଏବଂ ଦଳି ପକେଇବା । ଅନ୍ୟଅର୍ଥରେ - ସ୍ୱଇଚ୍ଛା ଭୋଜନ ।

୮୯୪୨. କଟର ପଟର ହେବା ।-କାଦୁଅ ପଙ୍କରେ ପଚ ପଚ ବା କର୍ଦ୍ଦମାକ୍ତ ହେବା ।

୮୯୪୩. କଚା (କଞ୍ଚା) କାମ ।-ଅସମ୍ପୂର୍ଣ୍ଣ କାମ ଯାହା କ୍ଷଣସ୍ଥାୟୀ ।

୮୯୪୪. କଚା ଖାନା ।-ସାଧାସିଧା ନିରାମିଷ ଖାଦ୍ୟ, ଓ ସିଝା ପଦାର୍ଥ ।

୮୯୪୫. କଚା ଖାତା । -ଚିଠା ଖାତା ।

୮୯୪୬. କଚା ଯିବା ।-ଗର୍ଭପାତ ହେବା ।

୮୯୪୭. କଚା ପଡ଼ିଯିବା ।-କାଇଲ୍ ହେବା ବା ଲଜ୍ଜିତ ହେବା ।

୮୯୪୮. କଚା ବଚା (=ଶିଶୁ) ।-ନିର୍ଦ୍ଧାରିତ ସମୟ ପୂର୍ବରୁ ଜନ୍ମିତ ଶିଶୁ ।

୮୯୪୯. କଚା ହାଲ ।-ପୁରା ଏବଂ ସଠିକ ଖବର, ସତ କଥା ।

୮୯୫୦. କଚା ପଇସା ।-ଅଚଳ ପଇସା ବା ଟଙ୍କା ।

୮୯୫୧. କଚା ଉମର । -ବାଲ୍ୟାବସ୍ଥା ଅପରିପକ୍ୱ ଅବସ୍ଥା ।

୮୯୫୨. କଚା ଗୋଟି ଖେଳିବା । -ଅନାଡ଼ି ପଣ ଦେଖେଇବା ।

୮୯୫୩. କଚାଖେଳ ଖେଳିବା ।

ମାମୁଲି ଖେଳ ଖେଳିବା କିମ୍ବା ବେକୁଫି ବା ବୋକାମୀ କରିବା ।

୮୯୫୪. କଚ୍ଚା ପକ୍କା କରିବା ।

କଥା ବା କାମକୁ ସଠିକ ଭାବରେ ନ କରି । ଅସମ୍ପୂର୍ଣ୍ଣ ରଖି ବିଗାଡ଼ି ଦେବା ।

୮୯୫୫. କଚେ୍ବାର ପଡ଼ିବା । -ଖୁବ୍ ସୁବିଧା ପଡ଼ିବା

୮୯୫୬. କଛି କାଛି ହେବା ।-ଦୁଇଟି ପଦାର୍ଥକୁ ଠିକ୍‌ରୂପେ ପରସ୍ପର ସଙ୍ଗେ ମିଳେଇବା ।

୮୯୫୭. କଚ୍ଛାରେ ହଗିବା (କଛା ମୁଠିରେ ଝାଡ଼ା ଫେରିବା) ।-ଭୀରୁପଣିଆ ।

୮୯୫୮. କଚ୍ଛାଧରା । -ପରମୁଖାପେକ୍ଷୀ ତଥା ଖୋସାମତିଆ ।

୮୯୫୯. କଚ୍ଛା ଢ଼ିଲା (କଚ୍ଛା ଖୋଲା) ।-ଶୀଥିଳ ବା ବୋକା ପ୍ରକୃତିର ବ୍ୟକ୍ତି ।

୮୯୬୦. କଚ୍ଛା ଖୋଲିବା । - ଅପଦସ୍ଥ କରିବା ।

୮୯୬୧. କଚ୍ଛା ଗଇଣ୍ଠି ଗଇଣ୍ଠି ।

ପୂର୍ବକାଳରେ ଦୁଇ ଅପରାଧୀ ବ୍ୟକ୍ତି ପ୍ରତି ଦିଆଯାଇଥିବା ଦଣ୍ଡ ବିଶେଷ, ଦୁଇଜଣ ବ୍ୟକ୍ତି ପରସ୍ପର ବିପରୀତ ଦିଗକୁ ମୁହଁକରି ଠିଆ କରାଇ ଦୁହିଁଙ୍କ କଚ୍ଛାକୁ ଗଣ୍ଠି ପକେଇ ଦେବା ରୂପକ ଦଣ୍ଡ ।

୮୯୬୨. କଛିମର କାମୁଡ଼ା ।-ଯାହାର ଚୋଟ ସହଜରେ ଛାଡ଼େ ନାହିଁ ।

୮୯୬୩. କଜ ମଜ ଜବାନ ।-ଚେତା ମେତା କଥା ।

୮୯୬୪. କଜ୍‌ଲା କଜ୍‌ଲା ଆଖି ।-ଚିଲା ଆଖିଆ ।

୮୯୬୫. କଟା ଆଙ୍ଗୁଳିରେ ନ ମୁତିବା ।

ଟିକିଏ ବି ଭଲ କାମ ନ କରିବା । କଟା ସ୍ଥାନରେ ମୁତ ଲଗାଇଲେ ତାହା ସେପଟିକ୍ ହୁଏ ନାହିଁ ଏବଂ ଘା ଚଞ୍ଚଳ ଭଲ ହୁଏ । ତେଣୁ ଯେଉଁ ବ୍ୟକ୍ତି ଏହି ନଗଣ୍ୟ କାମଟି କରେ ନାହିଁ ତା ପ୍ରତି ଏହି ଉକ୍ତିଟି ପ୍ରଯୁକ୍ତ ।

୮୯୬୬. କଟୁ କଟାକ୍ଷ କରିବା ।-ତୀବ୍ର ପ୍ରତିବାଦ କରିବା । କଟୁ ବଚନ କହିବା ।

୮୯୬୭. କଠା ପଡ଼ିଯିବା । -ହାତର ମୁଠା ଦୃଢ଼ବନ୍ଧନ ଦ୍ୱାରା ଜାବୁଡ଼ି ହୋଇ ରହିଯିବା ।

୮୯୬୮. କଡ଼ ବଡ଼ି ଦାଢ଼ି । -ଅଧା କଳା ଅଧା ଧଳା ଦାଢ଼ି, ଦରପାଚିଲା ଦାଢ଼ି ।

ଏ ସମ୍ପର୍କରେ ପ୍ରବାଦ - ମିଆଁଜୀଙ୍କ କଡ଼ବଡ଼ି ଦାଢ଼ି,

ଅଧା ଉଜଳା (=ଧଳା) ଅଧା କାଳି ।

୮୯୬୯. କଡ଼ାକର ମୂଲ୍ୟ । - ଅତି ଅଳ୍ପ ଦାମ ।

୮୯୭୦. କଡାକର କରିଦେବା । -ଲଜ୍ଜିତ କରିଦେବା ।

୮୯୭୧. କଡ଼ା କଲିଜା ।-ଚିତ୍ତ ଦୃଢ କରିବା ।

୮୯୭୨. କଡ଼ାକୁ ଦିକଡ଼ା କରିବା । -ବୁଦ୍ଧି ବଳରେ ଧନ ଉପାର୍ଜ୍ଜନ କରିବା ।

୮୯୭୩. କଡ଼ାଗଣ୍ଡା ବୁଝିନେବା ।-ତନ୍ନତନ୍ନ କରି ବୁଝିନେବା ।

୮୯୭୪. କଡ଼ି କାଠ (ବରଗା) ଗଣିବା ।-ଅଳସୁଆମି ।

୮୯୭୫. କଢ଼ ଫୁଲ ଭାଙ୍ଗିବା ।-ଅପ୍ରାପ୍ତ ବୟସ୍କା କୁମାରୀର ସତୀତ୍ୱ ଭଙ୍ଗ କରିବା ।

୮୯୭୬. କଢ଼ାଇ ଆଣିବା ।-ବାଟ ଦେଖାଇ ଚଲାଇବା ।

୮୯୭୭. କଣାର ଆଖି ରଙ୍ଗେଇବା । -ଅକର୍ମା ଲୋକ ପ୍ରତି କଟାକ୍ଷ ।

୮୯୭୮. କଣୁଆ ଉଣୁଆ । -ଅନାବାଦି ଜମି ।

୮୯୭୯. କଣ୍ଟକିତ ମୁକୁଟ ।-ବିପଦ ସଙ୍କୁଳ ପଦ ପଦବୀ ।

୮୯୮୦. କଣ୍ଟକିତ ଜୀବନ (ମାର୍ଗ) ।-କଷ୍ଟମୟ ଜୀବନ, ସଂକଟମୟ ଦିନ ।

୮୯୮୧. କଣ୍ଟ କରିବା / କଣ୍ଟ ଦେବା ।

କୌଣସି କାମ ପାଇଁ ଆଗରୁ ସମୟ ନିର୍ଦ୍ଧାରଣ ବା ନିରୂପଣ କରିବା ।

୮୯୮୨. କଣ୍ଟକ ହେବା । - ବିଘ୍ନ ରୂପେ ଉଭାହେବା ।

୮୯୮୩. କଣ୍ଟା ପକେଇବା । - ବାଧା ବିଘ୍ନ ସୃଷ୍ଟି କରିବା ।

୮୯୮୪. କଣ୍ଟା ପକେଇ ବସିବା । - ଆଘାତ ଦେବା ।

୮୯୮୫. କଣ୍ଟା ଗଛ ତଳେ ବାସ କରିବା ।-ବିପଦ ସଂକୁଳ ସ୍ଥାନରେ ବସା କରିବା ।

୮୯୮୬. କଣ୍ଠ କୋଇଲିର ମଳଦ୍ୱାର -ଅତ୍ୟନ୍ତ କର୍କଶ କଣ୍ଠସ୍ୱର ।

୮୯୮୭. କଣ୍ଠ ଖୋଲିବା । - ସ୍ୱର ଶବ୍ଦ ବାହାରିବା ।

୮୯୮୮. କଣ୍ଠ ଫୁଟିବା । - ଅକ୍ଷର ବର୍ଣ୍ଣର ସ୍ପଷ୍ଟ ଉଚ୍ଚାରଣ ଆରମ୍ଭ କରିବା ।

୮୯୮୯. କଣ୍ଠ ଫୁଟି ଢ଼ୋଲ ହେବା ।-ଫଟା ଆୱାଜ ବାହାରିବା ।

୮୯୯୦. କଣ୍ଠ ଗତ ପ୍ରାଣ/କଣ୍ଠା ଗତ ପ୍ରାଣ ।-ମରଣାସନ୍ନ ହେବା ।

୮୯୯୧. କଣ୍ଠରେ କଫ ଅଟକି ଯିବା ।-ମରଣାସନ୍ନ ହେବା ।

୮୯୯୨. କଣ୍ଠ ରସୁଆ ହେବା ।-କର୍ଣ୍ଣ ପ୍ରିୟ ସ୍ୱର ହେବା ।

୮୯୯୩. କଣ୍ଠ ଲଗେଇବା ।-ଗଳା ସହିତ ଗଳା ମିଳାଇ ଆଲିଙ୍ଗନ କରିବା ।

୮୯୯୪. କଣ୍ଠ ଭିଜେଇବା । -ସାମାନ୍ୟ ଶୋଷ ମେଣ୍ଟାଇବା ।

୮୯୯୫. କଣ୍ଠର ହାର (=ଗଳାମାଳି) । - ଅତ୍ୟନ୍ତ ପ୍ରିୟ ।

୮୯୯୬. କଣ୍ଟାଲ (=ପଣସ) ଭାଙ୍ଗିବା ।

ବ୍ୟଙ୍ଗାର୍ଥରେ ବ୍ୟବହୃତ, ପଣସ ଭାଙ୍ଗିବା ଅର୍ଥହୀନ କାର୍ଯ୍ୟ ତେଣୁ ବ୍ୟର୍ଥ କାମ କରୁଥିବା ବ୍ୟକ୍ତି ପ୍ରତି ଏହା ପ୍ରଯୁକ୍ତ ।

୮୯୯୭. କଣ୍ଠି ଛୁଇଁବା । - କଣ୍ଠି ମାଳି ଛୁଇଁ ନିୟମ କରିବା ।

୮୯୯୮. କଣ୍ଠି ଛାଡ଼ିବା । -ସନ୍ୟାସୀ ବ୍ରତ ତ୍ୟାଗ କରିବା ।

୮୯୯୯. କଣ୍ଠି ଭାଙ୍ଗିଲା । -ପୁଣି ଆମିଷ ଭୋଜନ ଆରମ୍ଭ କରିବା ।

୯୦୦୦. କଣ୍ଠି ବାନ୍ଧିବା । -ଅନ୍ଧଭାବରେ ସମର୍ଥନ ପାଇବା, ଅନ୍ଧ ସମର୍ଥନ ।

୯୦୦୧. କଣ୍ଠି ନେବା । -ଚେଲା ସାଜିବା ବା ରହିବା ।

୯୦୦୨. କଣ୍ଠି ଘେନିବା (ଦେବା) ।

ଗୁରୁଙ୍କ ଠାରୁ ବୈଷ୍ଣବ ଧର୍ମ ଦୀକ୍ଷା ସହିତ ତୁଳସୀ କଣ୍ଠି ଗ୍ରହଣ କରିବା ଏବଂ ଲୋକକୁ ବୈଷ୍ଣବ ଧର୍ମରେ ଦୀକ୍ଷିତ କରାଇ ତୁଳସୀ କଣ୍ଠି ପ୍ରଦାନ କରିବା ।

୯୦୦୩. କଣ୍ଠି ଧାରି । -ବୈଷ୍ଣବ ଧର୍ମରେ ଦୀକ୍ଷିତ ସାଧୁ ବା ବୈରାଗୀ ।

୯୦୦୪. କଣ୍ଡୁ କରିବା । - କାମନା ଉଦ୍ରେକ ଯୋଗୁ ଉତ୍ପାତ କରିବା ।

୯୦୦୫. କଣ୍ଡୁ ମରିବା । -କାମନା ଶାନ୍ତ ହେବା ।

୯୦୦୬. କଣ୍ଡମ କରିଦେବା । -ନଷ୍ଟ ବା ରଦ୍ଦି କରିଦେବା, ତିରସ୍କାର ବା ନିନ୍ଦା କରିବା ।

୯୦୦୭. କଣ୍ଠା ବିନା ଲକ୍ଷ୍ମୀ । - ନାମ ଅନୁସାରେ ଗୁଣ ନ ରହିବା ।

୯୦୦୮. କଣ୍ଠା ହେବା । - ଅତି ଦୁର୍ବଳ ହେବା ।

୯୦୦୯. କଣ୍ଠାର ନିଆଁ - ଘଷି ନିଆଁ ।

୯୦୧୦. କର୍ଣ୍ଣ କଟୁ । - ବିରକ୍ତିକର ।

୯୦୧୧. କର୍ଣ୍ଣ ପରଂପରା ।-ଜଣକ ଠାରୁ ଅନ୍ୟଜଣେ ଶୁଣିବା ଧାରା ।

୯୦୧୨. କର୍ଣ୍ଣ ଗୋଚର (କର୍ଣ୍ଣଗତ କରିବା) । -କାନରେ ପଡ଼ିବା, ଶୁଣାଯିବା ।

୯୦୧୩. କର୍ଣ୍ଣକଣ୍ଡୁ ।-ପରନିନ୍ଦା ଶୁଣିବାର ଇଚ୍ଛା ।

୯୦୧୪. କର୍ଣ୍ଣକୁହର ହେବା ।-ଶୁଣିବାକୁ ପାଇବା ।

୯୦୧୫. କର୍ଣ୍ଣ ପିଶାଚ ।

ଦେବୀ ସାଧନା ଦ୍ୱାରା ସର୍ବଜ୍ଞ ହେବାପାଇଁ ଅଭ୍ୟାସ କରାଯିବା ବିଦ୍ୟା ।

୯୦୧୬. କର୍ଣ୍ଣୀ ରଥ । -କାନ୍ଧବୁହା ଯାନ, ପାଲିଙ୍କି ।

୯୦୧୭. କତରା ଲଗା । -ମନ୍ତ୍ର ଯନ୍ତ୍ର ଦ୍ୱାରା ଶତ୍ରୁକୁ ଶଯ୍ୟାଗତ କରାଇବା ।

୯୦୧୮. କଥକ ନାଚିବା ।-ମଉଜ ମଜଲିସ କରିବା ।

୯୦୧୯. କଥା କାଢ଼ିବା । - ଦୋଷ ବାଛିବା ।

୯୦୨୦. କଥା ଚାନ୍ଦିଆ । - କଅଁଳ କଥା କହି କାର୍ଯ୍ୟ ହାସଲ କରୁଥିବା ବ୍ୟକ୍ତି ।

୯୦୨୧. କଥାଦେବା । - ପ୍ରତିଜ୍ଞା କରିବା, ପ୍ରତିଶ୍ରୁତି ଦେବା ।

୯୦୨୨. କଥା ସରିବା । - ସର୍ବନାଶ ଘଟିବା ।

୯୦୨୩. କଥା ପାଳିବା । - ଆପଣା ଜବାବ ରକ୍ଷାକରିବା ।

୯୦୨୪. କଥା ଫିଟିବା(ବାହାରିବା ) । - ଗୁପ୍ତ ରହସ୍ୟ ପ୍ରଘଟିତ ହେବା ।

୯୦୨୫. କଥା ମାଜିବା । - ବାରମ୍ବାର ସମାଲୋଚନା କରି କଥା ବଢ଼ାଇବା ।

୯୦୨୬. କଥାର କଥା । - ଅନାବଶ୍ୟକ, ଅସାର କଥା ।

୯୦୨୭. କଥାର ସନ୍ଧି ।

କୌଣସି ବିଷୟର ରହସ୍ୟ ବା ମର୍ମ । ପ୍ରବାଦରେ ପ୍ରୟୋଗ - ''କଥାର ସନ୍ଧି, କୁଆନେଇଗଲା ବୋହୂକୁ ବାନ୍ଧି'' ।

୯୦୨୮. କଥାରେ କିଣିବା । - ମନ ମୋହିନେବା ।

୯୦୨୯. କଥାରେ ଜିଣିବା । - ଯୁକ୍ତି ବା ତର୍କରେ ପରାସ୍ତ କରିବା ।

୯୦୩୦. କଥାରେ ବହକିବା । - ଅଭଦ୍ରଚିତ କଥା କହିବା ।

୯୦୩୧. କଥୁଁ କଥା । - କଥା ପ୍ରସଙ୍ଗ, ଉଲ୍ଲେଖ ଯୋଗ୍ୟ ବିଷୟ ।

୯୦୩୨. କଥୁଁ କଥାହେବା ।-ସାଧାରଣ କଥାବାର୍ତ୍ତା ।

୯୦୩୩. କଥା ଛିଣ୍ଡେଇବା, ଛିଣ୍ଡାଇବା, ତୁଟେଇବା ।-ଶେଷ ନିଷ୍ପତ୍ତି ନେବା ।

୯୦୩୪. କଥା ଦେହରେ ନ ଯିବା ।-ଅସହ୍ୟ ହେବା ।

୯୦୩୫. କଥା କଥାକେ ଗୋଛି କାଟିବା ।-ଅନିଷ୍ଟ କରିବା ।

୯୦୩୬. କଥା ଉପରେ କଥା ।

କଥାଉପରେ କଥା କହିବା ଅନୁଚିତ ଓ ଅଭଦ୍ରତା । ଅନ୍ୟପକ୍ଷରେ କଥା ବଢିଚାଲେ ତେଣୁ ପ୍ରବାଦରେ କୁହାଯାଇଛି-'କଥାମାଜିଲେ ମୋଟା' । ସମ୍ପୂର୍ଣ୍ଣ ପ୍ରବାଦ । କଥା ମାଜିଲା ମୋଟା, ସୂତା ମାଜିଲେ ସରୁ ।

୯୦୩୭. କଥା ଦେଇ କଥା ନେବା ।-ବିଶ୍ୱାସଜନ୍ମାଇ ମନର କଥା ବାହାର କରିନେବା ।

୯୦୩୮. କଥା ପଙ୍କରେ ପୋତିବା (ପୋତି ରଖିବା) ।

କୌଣସି ବିଷୟକୁ ପ୍ରଘଟ ନ କରିବା ।

୯୦୩୯. କଥା ବିକି ଖାଇବା ।-ବେଶ୍ୟା, ଦଲାଲ, ଓ ଓକିଲମାନଙ୍କ ପ୍ରତି ପ୍ରଯୁଜ୍ୟ ।

୯୦୪୦. କଥାର ଖିଅ ବାହାର କରିବା (କଥାର ହାତ ପାଦ ବାହାର କରିବା) ।

ଅସଲ କଥା ବିସ୍ତୃତ କରି କହିବା ।

୯୦୪୧. କଥାର ମୁଣି ।

ଯାହାକୁ ଅନେକ କଥା ଜଣା ଅଛି । ପୁରାଣ ପ୍ରସିଦ୍ଧ ନାରଦ ମୁନୀଙ୍କୁ କୁହାଯାଏ ।

୯୦୪୨. କଥାରେ ମାରପେଞ୍ଚ । -ମନରେ ଗୋଟିଏ କଥା ଭାବି , ଅନ୍ୟଥା କରିବା ।

୯୦୪୩. କଦର ଉଣ୍ଡିବା । -ସୁବିଧା ସୁଯୋଗ ଖୋଜିବା ।

୯୦୪୪. କଦର କାଦର । - ଛକାପଞ୍ଝା ।

୯୦୪୫. କଦର ଦାନ୍ । -ଗୁଣଗ୍ରାହକ । ଯିଏ ନିଜ ଦୋଷ ବା ତ୍ରୁଟି ସ୍ୱୀକାର କରେ ।

୯୦୪୬. କଦର କରିବା । -କୌଶଳ ପ୍ରୟୋଗ କରିବା ।

୯୦୪୭. କଦଳୀ ଭେଳାରେ ସମୁଦ୍ର ପାରିହେବା ।-ଅବାସ୍ତବ ଓ ଅସମ୍ଭବ କାର୍ଯ୍ୟ ।

୯୦୪୮. କଦଳୀ ଦେଇ ପିଲା ଭୁଲେଇବା । -ଅଳ୍ପରେ ଲୋକଙ୍କୁ ବଶ କରାଇବା ।

୯୦୪୯. କଦଳୀ କାଟି ଖୋସାରେ ବାନ୍ଧିବା ।-ଅବାସ୍ତବ କଥା, ଅକରଣୀୟ ।

୯୦୫୦. କଦଳୀ ଦେଖେଇବା (ଖୁଆଇବା) । -ଅଙ୍ଗୀକାର କରି ଧୋକ୍କା ଦେବା ।

୯୦୫୧. କଦଳୀ ବାଞ୍ଝ ।

କଦଳୀ ଗଛ ଗୋଟିଏ ମାତ୍ର ପେଣ୍ଡା ପକାଇଲା ପରି ଯେଉଁ ସ୍ତ୍ରୀ ଗୋଟିଏ ସନ୍ତାନ ଜନ୍ମ କରିଥାଏ ତାକୁ 'କାକବନ୍ଧ୍ୟା' ମଧ ବୁହାଯାଏ ।

୯୦୫୨. କଦମ ବଢ଼େଇ ଚାଲିବା ।

କ୍ଷିପ୍ରତାର ସହିତ ଅଗ୍ରସର ହେବା । ଉନ୍ନତି ମାର୍ଗରେ ଧାବିତ ହେବା ।

୯୦୫୩. କଦମ ଲଡ଼ ଖଡ଼େଇବା ।

ସାହାସ ହରାଇ ବସିବା, ବିଚାର ବଦଳେଇ ଦେବା, ଚରିତ୍ରରେ ବିକାର ଆସିବା ।

୯୦୫୪. କଦମ୍ବ ଗୋଲକ ।

କଦମ୍ବ କଢ଼ି ଓ ତା ଚାରିପାଖରେ ଥିବା ଫୁଲ ସବୁ ସମଭାବରେ ଗୋଲ ହୋଇ ବଢ଼ନ୍ତି । ସେହିପରି କୌଣସି ବସ୍ତୁର କିଛି ପରିବର୍ତ୍ତନ ନହୋଇ ଗତାନୁଗତିକ ଭାବରେ ଚାଲିଥିଲେ ଏହା କୁହାଯାଏ ।

୯୦୫୫. କଦମ୍ବଗଛର କାହ୍ନୁ । -ଲମ୍ପଟ ପ୍ରକୃତି ବ୍ୟକ୍ତି ପ୍ରତି ବ୍ୟଙ୍ଗ ।

୯୦୫୬. କଦାଚାର ।-ମନ୍ଦ ଆଚରଣ ।

୯୦୫୭. କଦାଚାରୀ । -ଅସତ୍ ମାର୍ଗ ଆଚରଣ କାରୀ ।

୯୦୫୮. କନ କନ ହେବା । -ବ୍ୟାକୁଳ, ଚଞ୍ଚଳ ହେବା ।

୯୦୫୯. କନଡ଼ା ଗତି । -ଫୁଲ ଗୁନ୍ଥିବାର କୌଶଳ ବିଶେଷ ।

୯୦୬୦. କନକନିଆ । -ତୀବ୍ର ଶୀତ ବା ପବନ ।

୯୦୬୧ କନକନ ହେଇ ଚାହିଁବା, (କନେଇ କନେଇ ଚାହିଁବା) ।

ସନ୍ଦେହ ବା ବିପଦ ଆଶଙ୍କାରେ ତର ବର ହୋଇ ଏଣେ ତେଣେ ଚାହିଁବା ।

୯୦୬୨. କନା ମୁଠିଆ ଭଣ୍ଡାରୀ । -ନିମ୍ନଶ୍ରେଣୀର ଭଣ୍ଡାରୀ ।

୯୦୬୩. କନା କନି । -ପରସ୍ପର ଫୁସ୍ ଫୁସ୍ ହୋଇ କଥାହେବା ।

୯୦୬୪. କନାର ବାଡ଼ । -ବସ୍ତ୍ର ନିର୍ମିତ ପରଦା ।

୯୦୬୫. କନ୍ଥା ଘୋଡ଼େଇବା (ଉଡ଼େଇବା) ।-ଗୃହତ୍ୟାଗୀ ବା ସନ୍ୟାସୀ ହେବା ।

୯୦୬୬. କନ୍ୟା ଦୂଷକ । - ଅବିବାହିତା ବାଳିକାକୁ ରମଣକାରୀ ପୁରୁଷ ।

୯୦୬୭. କନ୍ୟା ଦୂଷଣ ।

ଅବିବାହିତା କନ୍ୟାକୁ ବଳତ୍କାର ରମଣ । କୁମାରୀର ଅପବାଦ ରଟନା କରିବା ।

୯୦୬୮. କନ୍ୟା ସନ୍ଧିକାଳ । - ବାଳିକାର ରଜସ୍ୱଳା ହେବାର ଠିକ ପୂର୍ବକାଳ। The time of a girl just before she attains puberty / maturity.

୯୦୬୯. କନ୍ଦମୂଳ ଆହାର । -ଫଳାହାର ବା ସାଧାରଣ ଭୋଜନ ।

୯୦୭୦. କନ୍ଦର୍ପ ଜ୍ୱାଳା ।-କନ୍ଦର୍ପ ଜ୍ୱର A fever of sexual appetite, desire.

୯୦୭୧. କଞ୍ଚା ଗୁହକୁ ଟେକା ମାରିବା, ଗୁହକୁ ଟେକା ଫୋପାଡ଼ିବା ।

ଖରାପ କାମ କରିବା ।

୯୦୭୨. କଞ୍ଚା ଖାଇଯିବା (ଚୋବାଇବା) ।

ମାରି ପକେଇବା, କଞ୍ଚାଖାଇ ଡାହାଣୀ ବିଶେଷ ।

୯୦୭୩. କଞ୍ଚା ଦିହ ।

ରୋଗରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ନଥିବା ଶରୀର, ପ୍ରସୁତୀର ଦୁର୍ବଳ ଶରୀର ।

୯୦୭୪. କଞ୍ଚା ବୁଦ୍ଧି । - ବାଳକ ଓ ଯୁବକଙ୍କ ଅପରିପକ୍ୱ ବୋଧ ଶକ୍ତି ।

୯୦୭୫. କଞ୍ଚା ମିଛ (ଡାହାମିଛ)-ସମ୍ପୂର୍ଣ୍ଣ ମିଛକଥା ।

୯୦୭୬. କଞ୍ଚା ଲେଖା । -ବୁଦ୍ଧି ନଥିବା ବ୍ୟକ୍ତିର ରଚନା, ଅନଭ୍ୟସ୍ତ ହସ୍ତଲିପି ।

୯୦୭୭. କଞ୍ଚା ହିସାବ । - ଅସମ୍ପୂର୍ଣ୍ଣ ହିସାବ, ଭୁଲହିସାବ ।

୯୦୭୮. କଞ୍ଚା ମାଠିଆ ।-ଯେଉଁ ବସ୍ତୁ ପୁନର୍ବାର କାମରେ ଲଗାଯାଇ ପାରିବ ନାହିଁ ।

୯୦୭୯. କଞ୍ଚାଚିତ୍ତ (କଞ୍ଚା ମନ) ।- ଅପରିପକ୍ୱ ମନ ।

୯୦୮୦. କଞ୍ଚା ମାଲ ।-ଯେଉଁଥିରୁ ଅନ୍ୟ ପଦାର୍ଥ ତିଆରି ହୋଇଥାଏ ।

୯୦୮୧. କଞ୍ଚା ହାତ (ପକ୍କାହାତ) ।

ହୋଇନଥିବା କାରିଗର ଯିଏ ସୂକ୍ଷ୍ମକାମ ପାଇଁ ଅକ୍ଷମ ବିପରୀତ ଅର୍ଥରେ ସିଦ୍ଧ ହସ୍ତ ।

୯୦୮୨. କଞ୍ଚା କଥା ।-ଅଶ୍ଲୀଳ ବୋଲି ।

୯୦୮୩. କଞ୍ଚା (କଚା) ଘୋଡ଼ାରେ (ଘଡ଼ାରେ) ଚଢ଼ିବା ।

ମଦ କିମ୍ବା ତାଡ଼ିପିଇ ମାତାଲ ହେବା ।

୯୦୮୪. କଞ୍ଚା ଘଡ଼ାରେ ପାଣି ଭରିବା ।

ଅତ୍ୟନ୍ତ କଠିଣ କାମ କରିବା ଓ ଅସମ୍ଭବ କାମ କରିବାକୁ ଚେଷ୍ଟା କରିବା ।

୯୦୮୫. କଞ୍ଚା ଧାଗାରେ (=ସୂତା ବା ଡୋରି) ବନ୍ଧା ହୋଇ ଆସିବା ।

ଅଚ୍ଚକେ ଆକୃଷ୍ଟ ଓ ମୁଗ୍ଧ ହୋଇ ପହଞ୍ଚି ଯିବା ।

୯୦୮୬. କଞ୍ଚା ସୂତା ପରି ଛିଣ୍ଡେଇ ଦେବା ।-ଅନାୟାସରେ ସମ୍ବନ୍ଧ ତୁଟେଇବା ।

୯୦୮୭. କଞ୍ଚା ବାଉଁଶରେ ଘୁଣ ଧରିବା ।

କଞ୍ଚା ବାଉଁଶରେ ଘୁଣ ଧରିଲେ ତାହା ଭାର ସହି ନପାରି ଅକର୍ମଣ୍ୟ ହୋଇଯାଏ । କେବଳ ମାତ୍ର ଚୁଲିରେ ଜାଳ ହୁଏ । ସେହିପରି ଯୁବକ ଅବସ୍ଥାରେ କେହି ବିପଥଗାମୀ ହେଲେ ତାର ସର୍ବନାଶ ଘଟେ ।

୯୦୮୮. କଣ୍ଡକେ କଣ୍ଡ ।-ମାପ ମୁତାବକ ଠିକ୍ ସମାନ । ବେଶି ନୁହେଁ କି କମ୍ ନୁହେଁ ।

୯୦୮୯. କଣ୍ଡା ବୁଣିବା । - ଅହିତ, ଅନିଷ୍ଟ କରିବା ।

୯୦୯୦. କପସେଇ ଯିବା । -ମାଡ଼ଖାଇ କାକୁସ୍ଥ ବା କାବୁ ହୋଇଯିବା ।

୯୦୯୧. କପଡ଼ାରେ ନିଆଁ ଡାଙ୍କିବା । - ଅପ୍ରିତିକର କାର୍ଯ୍ୟ କରିବା ।

୯୦୯୨. କପଡ଼ା ଉତାରିଦେବା । -ସମସ୍ତ ଲୁଟି ନେବା ।

୯୦୯୩. କପଡ଼ାରେ ହେବା ।

ରଜସ୍ଵଳା ହେବା, ଅତରଚ୍ଛାରେ ଝାଡ଼ା ଫେରି ପକାଇବା ।

୯୦୯୪. କପାଳ ଆମ୍ପୁଡ଼ି ସଲାମ କରିବା ।-ତୋଷାମଦ କାରି ବ୍ୟକ୍ତିଙ୍କ ପ୍ରତି ପ୍ରଚ୍ଛନ୍ତ ।

୯୦୯୫. କପାଳରେ କାଉ ଉଡ଼ିବା ।-ଭାଗ୍ୟ ଖରାପ ପଡ଼ିବା ।

୯୦୯୬. କପାଳ ଶ୍ରାଦ୍ଧ କରିବା ।-କୌଣସି ପଦାର୍ଥକୁ ସମ୍ପୂର୍ଣ୍ଣ ନଷ୍ଟ କରିଦେବା ।

୯୦୯୭. କପାଳ ପଡ଼ିବା । -ସୌଭାଗ୍ୟ ଉଦୟ ହେବା ।

୯୦୯୮. କପାଳ ଫାଟିବା । - ଦୁର୍ଦ୍ଦଶା ଘଟିବା ।

୯୦୯୯. କପାଳ ଲେଉଟିବା । - ଭାଗ୍ୟ ଫେରିବା ।

୯୧୦୦. କପାଳରେ କର ମାରିବା । -ଦୁଃଖରେ ମୁଣ୍ଡକୁ ହାତରେ ବାଡ଼େଇବା ।

୯୧୦୧. କପିଳାସିଆ ମେଘ (ମାନଗଡ଼ିଆ ମେଘ) ।

ଉତ୍ତର ପଶ୍ଚିମ କୋଣରୁ ଉଠାଇବା ମେଘ-ଏହି ମେଘରୁ ଶୀଘ୍ର ବର୍ଷାହୁଏ ।

୯୧୦୨. କପିଳାସିଆ ଛତା ।

ଢେଙ୍କାନାଳରେ ପ୍ରସ୍ତୁତ ଏକପ୍ରକାରଚିତ୍ରିତ ତାଳପତ୍ର ଛତା ।

୯୧୦୩. କପୋତ ପାଳିକା । -ପାରାଭାଡ଼ି, ପକ୍ଷୀଶାଳା, ଚିଡ଼ିଆଖାନା ।

୯୧୦୪. କପୋତ ବ୍ରତ ପାଳିବା ।

ବିନା ବିରୋଧରେ ଅତ୍ୟାଚାର ନିର୍ବିବାଦରେ ସହିବା ।

୯୧୦୫. କପୋତ ଉଡ଼େଇବା ।-ବ୍ୟର୍ଥ କାର୍ଯ୍ୟ କରିବା ।

୯୧୦୬. କଫିନ ଚୋର ।-ସର୍ବସ୍ଵ ହରଣ କରିବା ବ୍ୟକ୍ତି ।

୯୧୦୭. କଫିନ ନ ପାଇବା ।-ଅନ୍ତିମ କ୍ରିୟାକର୍ମ ଠିକ୍ଭାବରେ ନ ହେବା ।

୯୧୦୮. କଫିନ ଫାଡ଼ି ଉଠିବା ।-ମରୁ ମରୁ ବଞ୍ଚିଯିବା ।

୯୧୦୯. କବଚ ପତ୍ର । - ଭୂର୍ଜପତ୍ର ।

୯୧୧୦. କବଚିବା । - ମନ୍ତ୍ର ଯନ୍ତ୍ର ଦ୍ଵାରା ଦେହକୁ କିଳିବା ବା ସୁରକ୍ଷିତ କରିବା ।

୯୧୧୧. କବଜି ଧରିବା । - ଜୋର କରି ଧରିବା, ଆଣ୍ଡି କରି ଧରିବା ।

୯୧୧୨. କବର ମୁହଁରେ ଉଙ୍କି ମାରିବା ।-ମରୁ ମରୁ ବଞ୍ଚିଯିବା ।

୯୧୧୩. କବର ଭିତରୁ ମୁର୍ଦାର ଉଠେଇବା ।-ପୁରୁଣା କଳିକୁ ଉଜ୍ଜିବିତ କରିବା ।

୯୧୧୪. କବର ଖୋଳିବା ।-ସର୍ବନାଶ ପାଇଁ ଉପାୟ ପାଞ୍ଚିବା ।

୯୧୧୫. କବର ପର୍ଯ୍ୟନ୍ତ ପହେଞ୍ଚେଇବା ।-ମରିବା ପର୍ଯ୍ୟନ୍ତ ହଇରାଣ କରିବା ।

୯୧୧୬. କବାଟ ଖୋଲିଯିବା ।-ଅଜ୍ଞାନ ଦୂର ହେବା ।

୯୧୧୭. କବାଟ କୁଣିଆ । -ଘର ଭିତରେ ଲୁଚି ରହିଥିବା ବ୍ୟକ୍ତି ।

୯୧୧୮. କବାବ ମେ ହାଡ଼ି (=ହାଡ଼) ।

ଲୁହା ଖଡ଼ିକାରେ ଗୁନ୍ଥି, ରଡ଼ନିଆଁରେ ଧରି ସିଝେଇବା ମାଂସଖଣ୍ଡ କୁ କବାବ କହନ୍ତି । ଅର୍ଥାତ୍ ନ ଚାହୁଁଥିବା ବିଷୟ ସମ୍ପର୍କରେ ଅବତାରଣା । ଆନନ୍ଦ ଦେଉ ନ ଥିବା ପଦାର୍ଥ ବା ବ୍ୟକ୍ତିର ଉପସ୍ଥିତି ।

୯୧୧୯. କମଣ କରିବା । - ବାରମ୍ବାର ଚାଷ କରିବା, ହଳ ଚଲେଇବା ।

୯୧୨୦. କମର କଷିବା । - କୌଣସି କଷ୍ଟକର କାର୍ଯ ନିମନ୍ତେ ଅଣ୍ଟା ଭିଡ଼ିବା ।

୯୧୨୧. କମର ଢ଼ିଲା (ଢ଼ିଲା କମର)-ମରଦ ପଣିଆ ନଥିବା ବ୍ୟକ୍ତି-କର୍ମଚୋଢ଼ି ।

୯୧୨୨. କମର ଫିଟେଇବା ।-ସଂକଳ୍ପ ତ୍ୟାଗ କରିବା ।

୯୧୨୩. କମର ଝୁଙ୍କିବା (ଝୁକିବା) ।-କ୍ଲାନ୍ତ ହେବା ।

୯୧୨୪. କମଳରେ କଣ୍ଟକ ।-ଭଲ କାମରେ ବ୍ୟାଘାତ ଉପୁଜାଇବା ।

୯୧୨୫. କମଳ (=ପଦ୍ମଫୁଲ) ପରି ହେବା ।-ନିର୍ଲିପ୍ତ ରହିବା ।

୯୧୨୬. କମାଣି ଧମାଣି । - ଧନ ଅର୍ଜନ କରିବା ପାଇଁ ନାନା ଉଦ୍ୟମ ।

୯୧୨୭. କମାଲ ହାସିଲ କରିବା ।-ଅସମ୍ଭବ କାର୍ଯ୍ୟକୁ କରିପାରିବା ।

୯୧୨୮. କର୍ମ ଅବଳ । - ଦୁର୍ଭାଗ୍ୟ ।

୯୧୨୯. କର୍ମ କୀଳକ - ରଜକ, ଧୋବା ।

୯୧୩୦. କର୍ମରେଖା ମୁଠାରେ ରହିବା ।-ନିଜ ଭାଗ୍ୟ ନିଜ ବଶରେ ରହିବା ।

୯୧୩୧. କରଣ ମର୍ଯ୍ୟାଦା । - ବାହ୍ୟାଡମ୍ବର ।

*(ଏହାର ଅବଶିଷ୍ଟାଂଶ ଷଷ୍ଠ ଖଣ୍ଡରେ)*





ଲେଖକ - ଶ୍ରୀ ବିନୋଦବିହାରୀ ଦାସ
ଜନ୍ମ - ବାରିପଦା (୨୩-୦୮-୧୯୩୧)
ଆଦି ବାସସ୍ଥଳୀ - ଗ୍ରାମ-ବାଗଲପୁର,
ପୋଷ୍ଟ-ଅଠାନ୍ତର-୭୫୨୧୦୨,
ଭାୟା-ଭୁବନେଶ୍ୱର-ବାଲିପାଟଣା
ଜିଲ୍ଲା-ଖୋର୍ଦ୍ଧା ।
ଶିକ୍ଷାଗତ ଯୋଗ୍ୟତା - ବି.ଏସ୍.ସି, ଏଲ.ଏଲ.ବି.
ବୃତ୍ତି - ଆଡ୍‌ଭୋକେଟ(ଟିକସ ଆଇନ ପରାମର୍ଶଦାତା)

*ଅନ୍ୟାନ୍ୟ କାର୍ଯ୍ୟାବଳୀ-*

❖ ଓଡ଼ିଶା ରାଜ୍ୟ ବାରକାଉନସିଲର ପୂର୍ବତନ ଉପସଭାପତି ।
❖ ନିଖିଳ ଭାରତ ଟିକସଆଇନ ପରାମର୍ଶଦାତା ମହାସଂଘର ଜାତୀୟ କାର୍ଯ୍ୟକାରୀ କମିଟୀର ସଦସ୍ୟ ।
❖ ଅନ୍ତର୍ଜାତିକ ବାର ଆସୋସିଏସନ ସଦସ୍ୟ ।
❖ ଭାରତୀୟ ବାର କାଉନସିଲ ତରଫରୁ ଆଇନଜୀବୀ ପ୍ରତିନିଧି ଦଳର ନେତୃତ୍ୱ ନେଇ ୧୯୮୦ ରୁ ୧୯୮୮ ମଧ୍ୟରେ ପାଞ୍ଚଥର ଅନ୍ତର୍ଜାତୀୟ ଆଇନ ମହାସଭାମାନଙ୍କରେ ଯୋଗଦାନ ଏବଂ ଆଇନ ଅନୁଧ୍ୟାୟୀ ଭାବରେ ୟୁରୋପ, ଆମେରିକା, କାନାଡ଼ା ପ୍ରଭୃତି ଦେଶ ଓ ମହାଦେଶର ବିଭିନ୍ନ ସ୍ଥାନକୁ ଗସ୍ତ ।
❖ ବିପିନବିହାରୀ ଏଜୁକେସନାଲ ଆଣ୍ଡ ପବ୍ଲିକ ଚେରିଟେବୁଲର ଟ୍ରଷ୍ଟର ସ୍ଥାପୟିତା ।
❖ ତ୍ରିଭାଷୀ ଏକତା ସ୍କୁଲ, ବାରିପଦାର ପୃଷ୍ଠପୋଷକ ।
❖ ଓଡ଼ିଆ ଓ ଇଂରାଜୀ ସମ୍ବାଦପତ୍ର, ପତ୍ରିକା, ସ୍ମରଣିକା ପ୍ରଭୃତିର ପ୍ରବନ୍ଧକାର ।
❖ 'ସାରଳା ରତ୍ନଭଣ୍ଡାର ରସସାଗର' ଗ୍ରନ୍ଥର ୧ମ, ୨ୟ, ୩ୟ ଓ ୪ର୍ଥ ଖଣ୍ଡମାନଙ୍କର ସଙ୍କଳୟିତା ।

ପ୍ରକାଶକ

